# ଉତ୍ସର୍ଗ



ପୂଜନୀୟ ନନା ୰ନୀଳମଣି ଆଚାର୍ଯ୍ୟ

ପୂଜନୀୟା ବୋଉ ୰ ହାରାମଣୀ ଦେବୀ

ତୁମ ଜୀବଦଶାରେ କିଛି ଦେଇ ପାରିଲି ନାହିଁ । ଆଜି ଏହି ଅଧମ ସନ୍ତାନ ତୁମ୍ଭର ଅମର ସ୍ମୃତିରେ ଭକ୍ତି ଓ ଶ୍ରଦ୍ଧାର ସହ ଏହି ପୁସ୍ତକଟି ଉତ୍ସର୍ଗ କରୁଛି ।

ବିନୀତ

ସିନୁ (ଶ୍ରୀନିବାସ)

ପୁତ୍ର

# ଶ୍ରୀପୁରୁଷୋତ୍ତମ ପ୍ରସଙ୍ଗ

ଲେଖକ :
ଶ୍ରୀନିବାସ ଆଚାର୍ଯ୍ୟ
ରଟିଲୋ, ନିମାପଡ଼ା, ପୁରୀ

ଯୋଗାଯୋଗ :
ଦୁର୍ଗାମାଧବ ନଗର,
ଲେ.ନଂ.-୮, ଶ୍ୟାମପୁର
ଭୁବନେଶ୍ୱର -୭୫୧୦୨୯
ଫୋନ୍ - ୯୦୪୦୪୬୦୩୦୭

ପ୍ରକାଶିକା :
ନିରୁପମା ପ୍ରକାଶନୀ
ଶ୍ରୀମତୀ ନିରୁପମା ଆଚାର୍ଯ୍ୟ
ଦୁର୍ଗାମାଧବ ନଗର,
ଲେ.ନଂ.-୮, ଶ୍ୟାମପୁର
ଭୁବନେଶ୍ୱର -୭୫୧୦୨୯

ମୁଦ୍ରଣ :
ସଂଗୀତା ପ୍ରିଣ୍ଟର୍ସ, ନୂଆପଲ୍ଲୀ,
ଭୁବନେଶ୍ୱର

ପ୍ରଚ୍ଛଦପଟ : ଅପୂର୍ବା, ଭୁବନେଶ୍ୱର

ପ୍ରକାଶନର ସମୟ ତା୧୪-୦୭-୨୦୧୮
( ରଥଯାତ୍ରା )

ମୂଲ୍ୟ : ଟ. ୧୫୦/-
(ଏକଶତ ପଚାଶଟଙ୍କା) ମାତ୍ର

# Shree Purusottam Prasanga

Written by :
**Srinibash Acharya**
Ratilo, Nimapada, Puri

Contact :
Durgamadhab Nagar,
Lane- 8, Syamapur,
Bhubaneswar -751029
Ph. : 9040460307

Publisher :
**NIRUPAMA PRAKASANI**
**Smt. Nirupama Acharya**
Durgamadhab Nagar,
Lane- 8, Syamapur,
Bhubaneswar -751029

Printed at :
**Sangeeta Printers**
**Nayapalli, Bhubaneswar**

Cover Design : Apurba,
Bhubaneswar

First Edition 14.07.2018
**( RATHAYATRA )**

Price : Rs. 150/-
(One Hundred Fifty) only

# ଅଭିମତ

ପୁରୁଷୋତ୍ତମ କ୍ଷେତ୍ର ବହୁଦିଗରୁ ଅତ୍ୟନ୍ତ ରହସ୍ୟମୟ । ପୁରୁଷୋତ୍ତମ ହିଁ ଶ୍ରୀଜଗନ୍ନାଥ । ଜଗନ୍ନାଥ ଧାମ ପୁରୀ ମୂଳତଃ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର । ଓଡ଼ିଶାର ସାମୁହିକ ଚିତ୍ତ ଉପରେ ଯେଉଁ ସଂସ୍କୃତିର ପ୍ରଭାବ ସର୍ବାଧିକ ତାହାହିଁ ଶ୍ରୀ ଜଗନ୍ନାଥ ସଂସ୍କୃତି । ସର୍ବଧର୍ମର ସମନ୍ୱୟାତ୍ମକ ଦେବତା ରୂପେ ଶ୍ରୀ ଜଗନ୍ନାଥ ସର୍ବାଦୌ ପୂଜିତ ଓ ବନ୍ଦିତ ।

ଶ୍ରୀ ଜଗନ୍ନାଥ ଧାମ ଭାରତର ପୁଣ୍ୟ ଚତୁର୍ଦ୍ଧାମ ମଧ୍ୟରୁ ଅନ୍ୟତମ । ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଶ୍ରୀମନ୍ଦିର ଓଡ଼ିଶା ସ୍ଥାପତ୍ୟର ଏକ ପୂର୍ଣ୍ଣ ପରିପ୍ରକାଶ । ମେଘନାଦ ପ୍ରାଚୀର ପରିବେଷ୍ଟିତ ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ପୂଜା ପାଉଥିବା ଦେବାଦେବୀ ଓ ବେଢ଼ା ମଧ୍ୟରେ ନିର୍ମିତ ପାବଚ୍ଛ ଶ୍ରେଣୀ, ରୋଷଶାଳା, କୋଇଲି ବୈକୁଣ୍ଠ ପ୍ରଭୃତି ସ୍ଥାନଗୁଡ଼ିକ ଓଡ଼ିଶାର ଧର୍ମ ଓ ପରମ୍ପରା ଦୃଷ୍ଟିକୋଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏ ପ୍ରସଙ୍ଗରେ ବିଶିଷ୍ଟ ପ୍ରାବନ୍ଧିକ ଶ୍ରୀନିବାସ ଆଚାର୍ଯ୍ୟ "ପୁରୁଷୋତ୍ତମ ପ୍ରସଙ୍ଗ" ପୁସ୍ତକରେ ସବିଶେଷ ଆଲୋଚନା କରିଛନ୍ତି ।

ଶ୍ରୀଯୁକ୍ତ ଆଚାର୍ଯ୍ୟ ଜଣେ ସୁଲେଖକ ଓ ଗବେଷକ, ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ ଉତ୍କଳ ପ୍ରସଙ୍ଗରେ ସେ ଜଣେ ନିୟମିତ ଲେଖକ । ସେ ଜଣେ ଅଦ୍ୟମ ଅନୁସନ୍ଧିତ୍ସୁ । ଅନେକ ପତ୍ର ପତ୍ରିକାରେ ପ୍ରକାଶିତ ତାଙ୍କର ପ୍ରବନ୍ଧଗୁଡ଼ିକ ଅନୁସନ୍ଧାନ ମୂଳକ ତଥ୍ୟରେ ଭରପୂର । ବିଭିନ୍ନ ଅନାଲୋଚିତ ପ୍ରସଙ୍ଗକୁ ଲୋକଲୋଚନକୁ ଆଣିବାପାଇଁ ତାଙ୍କର ନିରନ୍ତର ଉଦ୍ୟମ ବେଶ୍ ପ୍ରଶଂସନୀୟ । ଅଦୂର ଅତୀତରେ ତାଙ୍କଦ୍ୱାରା ଲିଖିତ ଓ ନିରୁପମା ପ୍ରକାଶନୀଦ୍ୱାରା ପ୍ରକାଶିତ 'ନିମାପଡ଼ା ସୌରଭ' ପୁସ୍ତକଟି ନିମାପଡ଼ା ଅଞ୍ଚଳର ଐତିହ୍ୟ, ପରମ୍ପରା ଉପରେ ପର୍ଯ୍ୟବେସିତ । କହିବା ବାହୁଲ୍ୟ ପୁସ୍ତକଟି ଯଥେଷ୍ଟ ପାଠକୀୟ ଶ୍ରଦ୍ଧା ଓ ସ୍ୱୀକୃତି ଲାଭ କରିଛି ।

ଆଶା ଓ ବିଶ୍ୱାସ ତାଙ୍କ ରଚିତ 'ଶ୍ରୀପୁରୁଷୋତ୍ତମ ପ୍ରସଙ୍ଗ' ପୁସ୍ତକଟି ସୁଧି ପାଠକବୃନ୍ଦଙ୍କ ଦ୍ୱାରା ଆଦୃତି ଲାଭ କରିବ ।

ଜୟ ଜଗନ୍ନାଥ

**ପ୍ରଫେସର ଯୋଗେନ୍ଦ୍ର ଚନ୍ଦ୍ର ମିଶ୍ର,**
ଅବସର ପ୍ରାପ୍ତ ଅଧ୍ୟକ୍ଷ,
ନିମାପଡ଼ା ସ୍ୱୟଂଶାସିତ ମହାବିଦ୍ୟାଳୟ,
ନିମାପଡ଼ା, ପୁରୀ

# ଲେଖକଙ୍କ ଅଭିମତ........

ସର୍ବପ୍ରଥମେ ଶ୍ରୀଜଗନ୍ନାଥଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ।

ଶ୍ରୀକ୍ଷେତ୍ରସ୍ଥିତ ବଡ଼ଦେଉଳର ରତ୍ନ ସିଂହାସନରେ ବିରାଜିତ ଅନନ୍ତକୋଟି ବ୍ରହ୍ମାଣ୍ଡର ପତି ତଥା ଦାରୁମୂର୍ତ୍ତି ମୁରାରୀ ଶ୍ରୀଜଗନ୍ନାଥ ଓଡ଼ିଶାର ଘରେ ଘରେ ପୂଜନୀୟ, ବନ୍ଦନୀୟ ଓ ଆଦରଣୀୟ । ସେ ଅବତାରୀ । ତାଙ୍କଠାରୁ ଅନେକ ଅବତାର ଜନ୍ମ ନେଇଛନ୍ତି । ବିଶ୍ୱଶାନ୍ତି ଓ ଜନତାଙ୍କ ମଙ୍ଗଳପାଇଁ ସେ ଲୀଳାମୟ, କ୍ରୀଡ଼ାମୟ ଓ ଭାବମୟ । ସେ ଦେବତା ହେଲେ ମଧ୍ୟ ତାଙ୍କର ଦୈନ୍ୟନ୍ଦିନ ରୀତିନୀତି, ଜନ୍ମମୃତ୍ୟୁ, ଖାଦ୍ୟପେୟ, ବେଶଭୂଷା, ମେଳା ମହୋତ୍ସବ ଇତ୍ୟାଦି ମାନବୀୟ ଧର୍ମର ପ୍ରତୀକ । ସେ ପତିତମାନଙ୍କର ପରମବନ୍ଧୁ, ଦୟାକ୍ଷମାର ସାଗର, ଆଶୀର୍ବାଦର ଭଣ୍ଡାର, ଭକ୍ତବତ୍ସଳ ତଥା ଜନତା ଜନାର୍ଦ୍ଦନର ନାଥ ଇତ୍ୟାଦି ଗୁଣରେ ଅସୀମ, ଅମାପ ଓ ଅତୁଳନୀୟ । ତାଙ୍କ ପବିତ୍ରପୀଠରେ ଥିବା ସମସ୍ତ ମନ୍ଦିର, ଆଶ୍ରମ ଓ ମଠ ଇତ୍ୟାଦି ଗୋଟିଏ ଗୋଟିଏ ଧାର୍ମିକତତ୍ତ୍ୱଦ୍ୱାରା ଆଧାରିତ । ବେଦବେଦାନ୍ତରେ ବର୍ଣ୍ଣିତ ଅଛି ତାଙ୍କୁ ଦର୍ଶନ ଓ ଉପାସନା କରିବାପାଇଁ ସ୍ୱର୍ଗରୁ ବ୍ରହ୍ମାଙ୍କ ସମେତ ସମସ୍ତ ଦେବଦେବୀ, ଗନ୍ଧର୍ବ, କିନ୍ନର, ଯକ୍ଷ ଇତ୍ୟାଦି ଅପେକ୍ଷାରେ ରହିଥାନ୍ତି । ଏହାଛଡ଼ା ବହୁ ମୁନିଋଷି, ସାଧୁସନ୍ଥ ଓ ଶ୍ରଦ୍ଧାଳୁ ଭକ୍ତବୃନ୍ଦ ଏହି ପରମପୀଠକୁ ଆଗମନ କରିଥାନ୍ତି । ବହୁ କବି, ଲେଖକ ଓ ଗବେଷକମାନେ ତାଙ୍କ ସମ୍ପର୍କରେ ଜାଣିବା, ଲେଖିବା ଓ ବୁଝିବା ପାଇଁ ଚେଷ୍ଟା କରି ମଧ୍ୟ ସମ୍ପୂର୍ଣ୍ଣରୂପେ ଜାଣିପାରିନାହାନ୍ତି, ଲେଖିପାରିନାହାନ୍ତି, କି ବୁଝି ପାରିନାହାନ୍ତି । ସେହିପରି ଅଧମ ବହୁବର୍ଷ ଧରି ତାଙ୍କ ସମ୍ପର୍କରେ ଦୁଇ ପଦ ଲେଖିବା ପାଇଁ ଉଦ୍ୟମ ଜାରି ରଖିଥିଲେ ମଧ୍ୟ ଲେଖିପାରିନାହିଁ । ଯାହାକିଛି ଲେଖିଛି ତାହା ସମୁଦ୍ରକୁ ଶଙ୍ଖେ ସଦୃଶ ।

ଭଗବତ୍‌କୃପା ପାଇବା ମାନବ ପାଇଁ ପରମ ସୌଭାଗ୍ୟ । ଫଳରେ ମାନବ ଜୀବନ ସାର୍ଥକ ହେବା ସହ ମୁକ୍ତି ଲାଭ କରିଥାଏ । କିନ୍ତୁ ଆଜିର ସମାଜରେ ଲୋଭ, ମୋହ, କାମନା, ବାସନା ଓ ଆସକ୍ତି ଆଦି ଏତେ ବ୍ୟାପକ ଯେ, ମାନବ ଭଗବତ୍ ପ୍ରେମକୁ ଭୁଲି ଯାଉଛନ୍ତି । ଫଳରେ ଅନ୍ୟାୟ, ଅତ୍ୟାଚାର, ଅସତ୍ୟ, ଦୁର୍ନୀତି, ଭ୍ରଷ୍ଟାଚାର ଆଦି ବୃଦ୍ଧିପାଇ ଏକ କଳୁଷିତ ସମାଜ ସୃଷ୍ଟି ହେଉଅଛି । ଏଥିରୁ ମୁକ୍ତି ପାଇବା ପାଇଁ ଆଧ୍ୟାତ୍ମିକବାଣୀ ତଥା ଶ୍ରୀଜଗନ୍ନାଥଙ୍କ ପ୍ରେମ ପ୍ରଚାର ଓ ପ୍ରସାର ହେବା ଏକାନ୍ତ

ଆବଶ୍ୟକ । ତେଣୁ ତାଙ୍କରି ଚରଣାରବିନ୍ଦରେ ମାନବଜାତି ଶରଣାପନ୍ନ ହେବା ପ୍ରଧାନ କର୍ତ୍ତବ୍ୟ । କାରଣ ସେ (ଶ୍ରୀଜଗନ୍ନାଥ) ହେଉଛନ୍ତି ସର୍ବଧର୍ମ ସମନ୍ୱୟର ପ୍ରତୀକ । ତେଣୁ ଏହି ବହିଟି ଲେଖିବାର ମୂଳ ଉଦ୍ଦେଶ୍ୟ ହେଲା, ଶ୍ରୀଜଗନ୍ନାଥଙ୍କର ପ୍ରେମ ସମାଜରେ ପ୍ରଚାର ଓ ପ୍ରସାର କରିବା, ଯାହାଦ୍ୱାରା ସମାଜରେ କଳୁଷିତ ପରିବେଶ ଅପସରି ସୃଷ୍ଟି ହେବ ସତ୍ୟ, ନ୍ୟାୟ, ଆଦର୍ଶ, ଶୃଙ୍ଖଳିତ ପରିବେଶ । ଏଥି ସହିତ ଭବିଷ୍ୟତ ନାଗରିକ ତଥା ଯୁବପିଢ଼ିଙ୍କ ମଧ୍ୟରେ ଆଧ୍ୟାତ୍ମିକ ସଚେତନତା ଉଦ୍ରେକ ହେବ । ସେମାନେ ଧର୍ମୀୟ ଭାବନାରେ ଅନୁପ୍ରାଣିତ ହୋଇ ଭଲ ମଣିଷଟିଏ ହୋଇପାରିବେ ବୋଲି ଆଶା ଓ ବିଶ୍ୱାସ ।

ଏହି ଅକିଞ୍ଚନ ଲେଖକ ଦୀର୍ଘ ଦଶବର୍ଷଧରି ପୁସ୍ତକଟି ଲେଖିବାକୁ ଉଦ୍ୟମ ଜାରି ରଖିଥିଲେ ମଧ୍ୟ ଲେଖିବାକୁ ସମର୍ଥ ହୋଇପାରି ନଥିଲେ । ଯାହା ଲେଖା ହୋଇଅଛି ତାହା କେବଳ ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦ ବଳରେ ସମ୍ଭବ ହୋଇଅଛି । କାରଣ ତାଙ୍କର ମାହାତ୍ମ୍ୟ, ସଂସ୍କୃତି, ପରମ୍ପରା, ତତ୍ତ୍ୱ ଓ ଦର୍ଶନ ତ ଏକ ରତ୍ନଗର୍ଭା ମହାସମୁଦ୍ର ତଥା ଅସରନ୍ତି ଭଣ୍ଡାର । ସେହି ଅସରନ୍ତି ଭଣ୍ଡାରରୁ ଏହି ପୁସ୍ତକଟି କାଣିଚାଏ ନୁହେଁ ମାତ୍ର । ଏହା ସତ୍ୟ ଯେ ସେ ନ'ଚାହିଁଲେ ଗଛରୁ ପତ୍ରଟିଏ ମଧ୍ୟ ଦୋହଲେ ନାହିଁ । ତେଣୁ ସେ ଚାହିଁ ନଥିଲେ ଏହି ପୁସ୍ତକଟି ଲେଖିବା ସମ୍ଭବପର ହୋଇନଥାନ୍ତା । ଏଠାରେ ଲେଖକ ତାଙ୍କ ଦାସାନୁଦାସ ପଦବାଚ୍ୟ ହୋଇ ନ ପାରନ୍ତି । କେବଳ ତାଙ୍କରି କୃପା ବଳରେ ପୁସ୍ତକଟି ଲେଖା ହୋଇପାରିଛି ।

ଏହି ପୁସ୍ତକଟି ମୋର ପରମ ପୂଜ୍ୟ ନନା ସ୍ୱର୍ଗତଃ ନୀଳମଣି ଆଚାର୍ଯ୍ୟ ଓ ମାତା ସ୍ୱର୍ଗତଃ ହାରାମଣୀ ଦେବୀଙ୍କର ସମ୍ପୂର୍ଣ୍ଣ ଆଶୀର୍ବାଦ ବଳରେ ଲେଖିବା ସମ୍ଭବପର ହୋଇଛି । ଏଥି ସହିତ ମୋର ପ୍ରଥମ ପ୍ରେରଣାଦାୟୀ ଥିଲେ ପିତୃପ୍ରତିମ କକେଇ ମହାନ୍ ଶିକ୍ଷାବିତ୍ ସ୍ୱର୍ଗତଃ ଚିନ୍ତାମଣି ଆଚାର୍ଯ୍ୟ । ମୁଁ ତାଙ୍କ ପରାମର୍ଶକୁ ନମ୍ରତାର ସହ ଗ୍ରହଣ କରି ପୁସ୍ତକଟିକୁ ଲେଖିବାପାଇଁ ପ୍ରୟାସ କରିଥିଲି । ମୋର ପରମବନ୍ଧୁ ଶ୍ରୀ ତ୍ରିଲୋଚନ ପଣ୍ଡା, ଶ୍ରୀ ବୀରକିଶୋର ବାରିକ, ଶ୍ରୀ ଗୋବିନ୍ଦଚନ୍ଦ୍ର ମଲ୍ଲିକ୍ ପୁସ୍ତକଟି ପ୍ରକାଶ କରିବାରେ ଉତ୍ସାହ ଓ ପ୍ରେରଣା ପ୍ରଦାନ କରିଥିବାରୁ ସେମାନଙ୍କୁ ଅଶେଷ ଧନ୍ୟବାଦ । ମଳିପଡ଼ା ନିବାସୀ ଶ୍ରୀ ରମେଶ ଚନ୍ଦ୍ର ପଟ୍ଟନାୟକ ଓ ଶ୍ରୀଯୁକ୍ତ ବ୍ରଜକିଶୋର ସାହୁ କେନ୍ଦ୍ର ସରକାରଙ୍କର ଅବସରପ୍ରାପ୍ତ ଅଧିକାରୀ ବହୁମୂଲ୍ୟ ସମୟ ଉତ୍ସର୍ଗ ସହ ପୁସ୍ତକ ରଚନାରେ ସହଯୋଗ କରିଥିବାରୁ ତାଙ୍କୁ ଅଶେଷ ଧନ୍ୟବାଦ ନଦେଇ ରହିପାରୁନାହିଁ ।

ଏଥି ସହିତ ନିମାପଡ଼ା ମହାବିଦ୍ୟାଳୟର ପ୍ରାକ୍ତନ ଅଧ୍ୟକ୍ଷ ତଥା ଶିକ୍ଷାବିତ୍ ପ୍ରଫେସର ଯୋଗେନ୍ଦ୍ର ଚନ୍ଦ୍ର ମିଶ୍ର ବହିଟି ସଫଳ ରୂପାୟନ ପାଇଁ ବହୁମୂଲ୍ୟ ସମୟ, ଶକ୍ତି, ସାମର୍ଥ୍ୟ ସହ ସୁଚିନ୍ତିତ ମତାମତ ପ୍ରଦାନ କରିଥିବାରୁ ମୁଁ ତାଙ୍କ ପାଖରେ ଚିର ଋଣୀ । ସେ ମହାନୁଭବଙ୍କର ଅକୁଣ୍ଠ ସହଯୋଗ ମୋପାଇଁ ପ୍ରେରଣାର ଉତ୍ସ ହୋଇ ରହିବ । ସେହିପରି ଏହି ନିବନ୍ଧମାଳାରେ ଶ୍ରୀକ୍ଷେତ୍ରସ୍ଥିତ ପ୍ରଭୁ ଶ୍ରୀଜଗନ୍ନାଥ ସଂସ୍କୃତି ମହାବିଦ୍ୟାଳୟର ଗବେଷଣା କେନ୍ଦ୍ରର ପ୍ରାକ୍ତନ ଗବେଷକ ଡଃ ସୁରେନ୍ଦ୍ର କୁମାର ମିଶ୍ର ମହାଶୟଙ୍କର ଅବଦାନ ଚିର ନମସ୍ୟ । ଏହି ଗ୍ରନ୍ଥ ପ୍ରକାଶନ ପାଇଁ ମତେ ଦିଗ୍‌ଦର୍ଶନ ଓ ଉତ୍ସାହ ପ୍ରଦାନ କରିଥିବାରୁ ମୁଁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁ ଅଛି ।

ଏହି ପୁସ୍ତକଟି ଡିଟିପି ଓ ମୁଦ୍ରଣ କରିଛନ୍ତି, ଶ୍ରୀ ଦେବରାଜ ମହାପାତ୍ର, ସଙ୍ଗୀତା ପ୍ରିଣ୍ଟର୍ସ ଓ ପ୍ରଚ୍ଛଦପଟ କରିଛନ୍ତି ଶ୍ରୀ କ୍ଷୀରୋଦ ଚନ୍ଦ୍ର ପତି, ଅଧ୍ୟକ୍ଷ, ଅପୂର୍ବା, ଭୁବନେଶ୍ୱର । ତେଣୁ ସେମାନଙ୍କୁ ମୁଁ ମୋର ଅନ୍ତରରୁ କୃତଜ୍ଞତା ଜ୍ଞାପନ କରୁଅଛି ।

ମୋର ସହଧର୍ମିଣୀ ଶ୍ରୀମତୀ ନିରୁପମା ଆଚାର୍ଯ୍ୟ ସର୍ବଦା ସାହାଯ୍ୟ ଓ ସହଯୋଗର ହାତ ବଢ଼ାଇ ଆଗ୍ରହକୁ ଦ୍ୱିଗୁଣିତ କରିଛନ୍ତି । ସେହିପରି ମୋର ପୁତ୍ର ବିଭୁଦତ୍ତ ଓ ଦେବଦତ୍ତ, ପୁତ୍ରବଧୂ ରାଜଶ୍ରୀ ଓ ସୁନିତା, ପୌତ୍ର ଆଶୁତୋଷ ଓ ପୌତ୍ରୀ ଇଷିତାର ଶ୍ରଦ୍ଧା ଓ ସହଯୋଗ ବଳରେ ବହିଟି ସଫଳ ରୂପାୟନ ହୋଇପାରିଛି ।

ସର୍ବଶେଷରେ ପାଠକ, ପାଠିକାମାନଙ୍କୁ ଅନୁରୋଧ ବହିରେ ଥିବା ତଥ୍ୟ ଭିତ୍ତିକ ଓ ମୁଦ୍ରଣଜନିତ ତ୍ରୁଟି ମାର୍ଜନା କରି ଶ୍ରୀଜଗନ୍ନାଥଙ୍କ ନାମ, ରୂପ, ତତ୍ତ୍ୱରେ ବିମୁଗ୍ଧହୋଇ ଆନନ୍ଦ ଲାଭ କଲେ ଶ୍ରମ ସାର୍ଥକ ମଣିବି ।


ଶ୍ରୀନିବାସ ଆଚାର୍ଯ୍ୟ

ଜନ୍ମସ୍ଥାନ :
ସା/ପୋ- ରଟିଲୋ,
ନିମାପଡ଼ା, ଜିଲ୍ଲା- ପୁରୀ

ଶ୍ରୀନିବାସ ଆଚାର୍ଯ୍ୟ
ଲେଖକ

**ଯୋଗାଯୋଗ:**
ସା- ଦୁର୍ଗାମାଧବ ନଗର, ଲେନ୍ ନଂ - ୮,
ଭୁବନେଶ୍ୱର - ୭୫୧୦୨୯
ମୋ: ୯୦୪୦୪୬୦୩୦୭

# ସୂଚୀପତ୍ର

# ଅରୁଣ ସ୍ତମ୍ଭ



ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀମନ୍ଦିରକୁ ସିଂହଦ୍ୱାର ଦେଇ ଯିବା ବାଟରେ ଆଗ ପଡ଼ିଥାଏ ଉତ୍କଳୀୟ କଳା ସ୍ଥାପତ୍ୟରେ ନିର୍ମିତ ଅରୁଣସ୍ତମ୍ଭ । ଏହି ଦ୍ୱାର ଦେଇ ମନ୍ଦିରକୁ ଯାଉଥିବା ଜଗନ୍ନାଥପ୍ରେମୀ ଭକ୍ତ ସମାଜ ଏହାକୁ ପ୍ରଥମେ ଦର୍ଶନ କରିବା ସଙ୍ଗେ ସଙ୍ଗେ ପ୍ରଣିପାତ କରିଥାନ୍ତି । ସେହିପରି ସେହି ବାଟ ଦେଇ ମନ୍ଦିରରୁ ଫେରୁଥିବା ସମୟରେ ମଧ୍ୟ ଆଉଥରେ ପ୍ରଣିପାତ କରିଥାନ୍ତି । କିନ୍ତୁ ମନ୍ଦିର ଭିତରେ ଥିବା ସମସ୍ତପୀଠ, ମଣ୍ଡପ, କୁଞ୍ଜ, କୁଣ୍ଡ ଓ ଦେବଦେବୀମାନଙ୍କୁ ଥରେ ମାତ୍ର ପ୍ରଣିପାତ କରୁଥିବା ବେଳେ ଅରୁଣସ୍ତମ୍ଭକୁ ଦୁଇଥର ପ୍ରଣିପାତ କରିବା ସ୍ୱତନ୍ତ୍ର ଅଟେ । ତେଣୁ ଅରୁଣ ସ୍ତମ୍ଭଟି ଶ୍ରୀମନ୍ଦିର ପରମ୍ପରାରେ ବିଶେଷ ଗୁରୁତ୍ୱ ବହନ କରିଅଛି ।

ବେଳେବେଳେ ସ୍ୱତଃ ମନରେ ପ୍ରଶ୍ନ ଆସେ, କାହିଁକି ରହିଛି ବିଷ୍ଣୁ ମନ୍ଦିରର ସମ୍ମୁଖରେ ଏକ ସୁଉଚ୍ଚ ଅରୁଣସ୍ତମ୍ଭ ? ଅରୁଣ ବିଷ୍ଣୁଙ୍କ ବାହନ କିମ୍ବା ସାରଥି ନୁହନ୍ତି, ସେ ଅଟନ୍ତି ସୂର୍ଯ୍ୟଦେବଙ୍କର ସାରଥି, କିପରି ଏଠାରେ ରହିଲା ? ପ୍ରକୃତରେ ଏହା କୋଣାର୍କସ୍ଥିତ ସୂର୍ଯ୍ୟମନ୍ଦିର ସମ୍ମୁଖରେ ଥିଲା । ନରସିଂହ ଦେବଙ୍କ ରାଜୁତି ସମୟରୁ କୋଣାର୍କ ସୂର୍ଯ୍ୟ ମନ୍ଦିରର ବାହନ ରୂପେ ଅରୁଣ ପ୍ରତିମାଟି ଅରୁଣସ୍ତମ୍ଭ ଉପରେ ରହି ପୂଜା ପାଉଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସୁରକ୍ଷା ଅବହେଳା ଓ ବହିଃଶତ୍ରୁଙ୍କ ଆକ୍ରମଣ ଫଳରେ ମନ୍ଦିରର ଅଧୋପତନ ହୋଇଥିଲା । ତେଣୁ ଏହାର ନିରାପତ୍ତାପାଇଁ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଭୋଇ ବଂଶର ରାଜାଙ୍କ ସମୟରେ ଜନୈକ ମରହଟ୍ଟା କର୍ମଚାରୀ ଜୟଗୁରୁ ବ୍ରହ୍ମଚାରୀଙ୍କ ଦ୍ୱାରା ଅଣାଯାଇ ଶ୍ରୀଜଗନ୍ନାଥଙ୍କ ସିଂହଦ୍ୱାର ସମ୍ମୁଖରେ

ସ୍ଥାପନ କରାଯାଇଥିଲା । ଶାସ୍ତ୍ରୀୟ ମତବାଦରେ ନଥିଲେ ମଧ୍ୟ ଲୋକାଚାରର ମତରେ ଅରୁଣ ଶ୍ରୀଜଗନ୍ନାଥଙ୍କର ଦ୍ୱାରପାଳ ରୂପେ ରହି ପୂଜା ପାଉଛନ୍ତି । ଆଉ ମଧ୍ୟ କେହି କେହି କୁହନ୍ତି ଅରୁଣ ସୂର୍ଯ୍ୟଙ୍କର ସାରଥି ହୋଇଥିବାରୁ ସୂର୍ଯ୍ୟଙ୍କର ପ୍ରଚଣ୍ଡ ଗ୍ରୀଷ୍ମତାପକୁ ଅରୁଣ ଆଦରି ନେଇ, ଶ୍ରୀଜଗନ୍ନାଥଙ୍କୁ ସୂର୍ଯ୍ୟଙ୍କ ତାପରୁ ସୁରକ୍ଷା ଦେଇଥାନ୍ତି । କୋଟି କୋଟି ଦର୍ଶନାର୍ଥୀ ତଥା ପର୍ଯ୍ୟଟକମାନଙ୍କୁ ଏହାର ଗଠନ ଶୈଳୀ ଓ ସୂକ୍ଷ୍ମ କାରୁକାର୍ଯ୍ୟର ସୌନ୍ଦର୍ଯ୍ୟ ଆକୃଷ୍ଟ କରିପାରିଛି ।

ଏହି ସ୍ତମ୍ଭଟି ବଡ଼ଦାଣ୍ଡ ଓ ସିଂହଦ୍ୱାର ମଝିରେ ତଥା ସିଂହଦ୍ୱାରଠାରୁ ପ୍ରାୟ ୨୦ ଫୁଟ ଦୂରରେ ଦଣ୍ଡାୟମାନ । ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ତଥ୍ୟ ଅନୁସାରେ ଶ୍ରୀମନ୍ଦିରର ପ୍ଲଟ ନଂ- ୧୬୧ରେ ଏହା ଅବସ୍ଥିତ । ଏହି ପୀଠକୁ "ଅରୁଣସ୍ତମ୍ଭ ଚକଡ଼ା" କୁହାଯାଏ । ଅରୁଣସ୍ତମ୍ଭଟି ଗୋଟିଏ ବର୍ତ୍ତୁଳାକାର ମୁଗୁନି ପଥରଦ୍ୱାରା ଗଠିତ । ଏହି ଅଂଶଟି ପୀଠ ଠାରୁ ଅରୁଣ ଶିଖା ପର୍ଯ୍ୟନ୍ତ ପ୍ରାୟ ୨୫ଫୁଟ ୨ ଇଞ୍ଚ ଉଚ୍ଚତା ବିଶିଷ୍ଟ । କିନ୍ତୁ ଏହାର ନିମ୍ନରେ ଯେଉଁ ଅଂଶଟି ଏହି ସ୍ତମ୍ଭକୁ ଧରି ରଖିଅଛି, ତାହାର ଉଚ୍ଚତା ପ୍ରାୟ ୪ଫୁଟ ୩ ଇଞ୍ଚ । ଏହା ଚତୁଷ୍କୋଣୀ ଆକାରର ଅଟେ । ଏହି ଚତୁଷ୍କୋଣୀ ପୀଠଟିର ଲମ୍ବ ଓ ଓସାର ୭ଫୁଟ ୯ଇଞ୍ଚ । ମୁଖ୍ୟସ୍ତମ୍ଭ ତୁଳନାରେ ଏହି ପୀଠଟିର ରଙ୍ଗ ଅଧିକ କଳା । ଏଥିରେ ପଦ୍ମପାଖୁଡ଼ା, ଗଜ, ସିଂହ ଓ ଅନ୍ୟାନ୍ୟ ମୂର୍ତ୍ତି ପ୍ରଭୃତି ସୂକ୍ଷ୍ମ କାରୁକାର୍ଯ୍ୟରେ ଖଚିତ ହୋଇ ଅତ୍ୟନ୍ତ ଶୋଭା ବର୍ଦ୍ଧନ କରୁଅଛି । ଏହା ଚତୁଃପାର୍ଶ୍ୱରେ ବର୍ଗାକାରରୂପେ ଲୁହା ରେଲିଂଦ୍ୱାରା ଆବଦ୍ଧ ହୋଇ ପୀଠଟିକୁ ସୁରକ୍ଷା ପ୍ରଦାନ କରୁଅଛି । ଏହି ପୀଠର ନିମ୍ନ ଅଂଶରେ ଅର୍ଥାତ୍ ମାଟିତଳେ ପୋତି ହୋଇ ରହିଥିବାର ଉଚ୍ଚତା ପ୍ରାୟ ତିନିଫୁଟ ଅଟେ ।

ମୁଖ୍ୟ ତଥା ପ୍ରକୃତ ସ୍ତମ୍ଭ ଯାହାର ଉଚ୍ଚତା ୨୫ଫୁଟ ୨ଇଞ୍ଚ, ତାହାର ଆକାର ଗୋଲାକାର ଓ ୧୬କୋଣିଆ ବିଶିଷ୍ଟ । ଏହାର ପରିଧି ତଥା ଗୋଲାକାର ୬ଫୁଟ ସାଢ଼େ ୩ଇଞ୍ଚ, ସ୍ତମ୍ଭଟିର ବ୍ୟାସ ପ୍ରାୟ ୨ଫୁଟ । ଏଥିରେ ଷୋହଳଟି କୋଣ ଅଛି । ପ୍ରତି ପାଗ ଗୁଡ଼ିକର ଓସାର ସମାନ । ସ୍ତମ୍ଭର ଗାତ୍ର ଗୁଡ଼ିକରେ ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ଅନେକ କମନୀୟ ମୂର୍ତ୍ତି ଶୋଭା ପାଉଛନ୍ତି । ଏହି ସ୍ତମ୍ଭର ଅଗ୍ରଭାଗରେ ଏକ ଚତୁଷ୍କୋଣୀ ଭିତରେ ସୂର୍ଯ୍ୟଦେବଙ୍କ ସାରଥି ଅରୁଣ ଯୋଡ଼ ହସ୍ତରେ ବିରାଜିତ । ଏହି ଅରୁଣ ମୂର୍ତ୍ତିଟି କ୍ଷୁଦ୍ରାକାର ଓ ଉଚ୍ଚତା ୧ ଫୁଟ ୩ ଇଞ୍ଚ । ସର୍ବମୋଟ ତଥା ନିମ୍ନସ୍ତରଠାରୁ ଅରୁଣ ବସିଥିବା ସ୍ତମ୍ଭଟିର ଉଚ୍ଚତା ପ୍ରାୟ ୩୩ଫୁଟ ୮ଇଞ୍ଚ ।

ଆଜକୁ ପ୍ରାୟ ଏକଶତରୁ ଅଧିକ ବର୍ଷତଳେ ରାଜ୍ୟ ବାହାରର ଗବେଷକ ଅରୁଣସ୍ତମ୍ଭ ଉପରେ ବସିଥିବା ମୂର୍ତ୍ତିଟି ମର୍କଟ ବୋଲି କହିଥିଲେ । ପ୍ରକୃତରେ ଏହି ମୂର୍ତ୍ତିଟି ମର୍କଟ ନୁହେଁ କିନ୍ତୁ ଅରୁଣ । ଶାସ୍ତ୍ରୀୟ ମତରେ ଏହି ଅରୁଣ ସ୍ତମ୍ଭ ଚକଡ଼ା ଭିତରେ ଜୋତା, ଛତା, ମୋବାଇଲ ଓ

କ୍ୟାମେରା ଇତ୍ୟାଦି ରଖିବା ନିଷିଦ୍ଧ ଅଟେ । ରଥଯାତ୍ରା ସମୟରେ ଏହି ବାଟଦେଇ ଚତୁର୍ଦ୍ଧାମୂର୍ତ୍ତି ରଥ ଉପରକୁ ଯାଇଥାନ୍ତି ଓ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଏତଦ୍‌ବ୍ୟତୀତ ପୂଜାପଣ୍ଡାମାନେ ଏହି ପୀଠ ଉପରେ ଉପସ୍ଥିତ ରହି ରଥାରୂଢ଼ ଠାକୁରମାନଙ୍କୁ ଭୋଗ, ନୈବେଦ୍ୟ ସମର୍ପଣ କରିଥାନ୍ତି । ତେଣୁ ଏହି ପୀଠର ପବିତ୍ରତା ଅତ୍ୟନ୍ତ ମହାନ । ଶ୍ରୀମନ୍ଦିର ସ୍ୱତ୍ୱଲିପି ନଂ -୬୪ରେ ଲିଖିତ ଅଛି ଯେ, ଚୂନରା ବା ଗରୁଡ଼ଙ୍କର ସେବକମାନେ ଅରୁଣଙ୍କ ପୂଜାର୍ଚ୍ଚନା କରିଥାନ୍ତି । ଭକ୍ତମାନଙ୍କଠାରୁ ଯେଉଁ ଅର୍ଥ ଆଦାୟ ହୁଏ, ତାହାକୁ ସେବକମାନେ ନେଇଥାନ୍ତି । ଅନେକବର୍ଷ ତଳୁ ଅରୁଣସ୍ତମ୍ଭ ଚକଡ଼ାର ଚାରିପାଖରେ ଭାରତ ସରକାରଙ୍କର ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ବିଭାଗ ତରଫରୁ ଲୁହା ଗ୍ରୀଲ ଲଗାଯାଇଅଛି । ଏହାର ରକ୍ଷଣାବେକ୍ଷଣ ଓ ମରାମତି କାର୍ଯ୍ୟ ମଧ୍ୟ ସେହି ବିଭାଗ କରିଥାଏ ।

ଏହି ସୁଉଚ୍ଚ କଳାମୁଗୁନି ପଥରରେ ଗଢ଼ା ସ୍ତମ୍ଭଟି ପ୍ରାଚୀନ ଉତ୍କଳୀୟ ସ୍ଥପତିମାନଙ୍କର ସୂକ୍ଷ୍ମ କାରୁକାର୍ଯ୍ୟର ନିଦର୍ଶନ । ଏଥିପାଇଁ ଓଡ଼ିଶା କାହିଁକି ସମଗ୍ର ଭାରତ ବିଶ୍ୱ ସ୍ତରରେ ଗର୍ବିତ ଓ ଗୌରବାନ୍ୱିତ ।

* * * * * * *

# ବାଇଶ ପାହାଚ



ଯେଉଁ ପଥର ପାହାଚରେ ପିଣ୍ଡଦାନ ଦେଲେ ପୂର୍ବପୁରୁଷମାନେ ମୁକ୍ତିଲାଭ କରିଥାନ୍ତି, ସ୍ପର୍ଶକଲେ ଭକ୍ତମାନଙ୍କର ଶତ ଜନ୍ମର ପାପ କ୍ଷୟ ହୋଇ ଧର୍ମ ଅର୍ଜନ ହୋଇଥାଏ ଓ ସକଳ ଦେବଦେବୀମାନଙ୍କର କେନ୍ଦ୍ରସ୍ଥଳୀରୂପେ ଶାସ୍ତ୍ରାନୁମୋଦିତ ହୋଇ ପୃଥିବୀରେ ପ୍ରସିଦ୍ଧି ଲାଭ କରିପାରିଛି, ସେହି ପଥର ପାହାଚ ଅନ୍ୟ କୌଣସି ନୁହେଁ, ତାହା କେବଳ ଶ୍ରୀକ୍ଷେତ୍ରସ୍ଥିତ ପରଂବ୍ରହ୍ମ ପ୍ରଭୁ ଶ୍ରୀଜଗନ୍ନାଥ ପୀଠର ବାଇଶି ପାହାଚ ଅଟେ । ସେହି ପବିତ୍ର ପୀଠର ରତ୍ନସିଂହାସନରେ ଅଧିଷ୍ଠିତ ଜଗତରନାଥ ଶ୍ରୀଜଗନ୍ନାଥ, ବଡ଼ଭାଇ ଶ୍ରୀବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କର ମହିମା ଓ ଗୁଣଗାରିମା ଯେପରି ସର୍ବଜନାନୁମୋଦିତ, ସେହି ପୀଠରେ ଥିବା ସମସ୍ତ ଅନ୍ୟ ଦେବଦେବୀଙ୍କର ପୀଠ, ମଠ, ଆଶ୍ରମ, ମନ୍ଦିର, ବୃକ୍ଷ, କୁଣ୍ଡ, ମଣ୍ଡପ, ପାହାଚ ମଧ୍ୟ ସେପରି ଗୁରୁତ୍ୱ ବହନ କରିଥାନ୍ତି । ଆଉ ମଧ୍ୟ ଏହି ପୀଠର ପ୍ରତ୍ୟେକ ଭାଗକୁ "ବଡ଼" ଶବ୍ଦ ଆଖ୍ୟାରେ ନାମିତ ହୋଇଛି । ଏପରି ଆଖ୍ୟା ପୃଥିବୀର ଅନ୍ୟ କୌଣସିଠାରେ ଦେଖିବା ବିରଳ । ସେଠାକାର ଠାକୁରଙ୍କୁ ବଡ଼ ଠାକୁର, ଦାଣ୍ଡକୁ ବଡ଼ଦାଣ୍ଡ, ସେହିପରି ବଡ଼ ଦେଉଳ, ବଡ଼ମଠ, ବଡ଼ଧ୍ୱଜା, ବଡ଼ପଣ୍ଡା, ଇତ୍ୟାଦି ପରି ବାଇଶି ପାହାଚ ମଧ୍ୟ ବଡ଼ ପାହାଚ ଆଖ୍ୟାରେ ଭୂଷିତ ହୋଇ ଗୌରବ ମଣ୍ଡନ କରିଛି । ଏହି ପୀଠାଧୀଶ ବଡ଼ ଠାକୁରଙ୍କର ଉପାସନା, ସଂସ୍କୃତି ଓ ପରମ୍ପରା ସହିତ ବାଇଶି ପାହାଚର ନିବିଡ଼ ସମ୍ପର୍କ ମଧ୍ୟ ଅଙ୍ଗାଙ୍ଗୀଭାବେ ଜଡ଼ିତ । ତେଣୁ ଏହି ପାହାଚର ତତ୍ତ୍ୱ, ମହନୀୟତା, ତଥା ପବିତ୍ରତାର ପଟାନ୍ତର ନାହିଁ ।

ଆବହମାନ କାଳରୁ ଭାରତ କାହିଁକି ସମଗ୍ର ପୃଥିବୀର କୋଣଅନୁକୋଣରୁ ବିଭିନ୍ନ ଧର୍ମ ସମ୍ପ୍ରଦାୟର ଶତ ଶତ ସାଧୁ, ସନ୍ଥ, ମୁନି ଋଷିଙ୍କ ସମେତ ଲକ୍ଷ ଲକ୍ଷ ଭକ୍ତ ଅଶେଷ ଆଶୀର୍ବାଦର ଭଣ୍ଡାର ତଥା କରୁଣାସାଗର ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ସମବେତ ହୋଇଥାନ୍ତି । ତେଣୁ ଏହି ପୀଠ ସମଗ୍ର ପୃଥିବୀର ଆଧ୍ୟାତ୍ମିକ ଜଗତର ସର୍ବଧର୍ମ ସମନ୍ୱୟର ଏକ କେନ୍ଦ୍ରସ୍ଥଳୀ ରୂପେ ସୁବିଦିତ । ଏହି ପୀଠଟି ଶ୍ରୀମନ୍ଦିରର ପୂର୍ବଦିଗରେ ଥିବା ସିଂହଦ୍ୱାର ସଂଲଗ୍ନରେ ଅବସ୍ଥିତ । ସିଂହଦ୍ୱାର ଓ ବଡ଼ଦାଣ୍ଡର ମଝିରେ ଏକ ବିଶାଳକାୟ ଅରୁଣସ୍ତମ୍ଭ ବିଦ୍ୟମାନ । ପ୍ରଥମେ ଭକ୍ତମାନେ ଅରୁଣ ସ୍ତମ୍ଭକୁ ସାଷ୍ଟାଙ୍ଗ ପ୍ରଣିପାତ କରି ସିଂହଦ୍ୱାର ଗୁମୁଟି ଘରେ ପ୍ରବେଶ କରିଥାନ୍ତି । ତତ୍‌ପରେ ପଡ଼ିଥାଏ ବାଇଶି ପାହାଚ । ଏହି ୨୨ଟି ପାହାଚ ଲଗା ଲଗି ହୋଇ ମୁଖଶାଳା ଓ କୂର୍ମବେଢ଼ା ମଧ୍ୟରେ ଅବସ୍ଥିତ । ଏହାର ବାମ ପାର୍ଶ୍ୱରେ ଶ୍ରୀ କାଶୀବିଶ୍ୱନାଥ, ଶ୍ରୀରାମଚନ୍ଦ୍ର, ଶ୍ରୀନୃସିଂହ, ଶ୍ରୀଗଣେଶଙ୍କ ମନ୍ଦିର ଅବସ୍ଥିତ । ଶ୍ରୀ କାଶୀବିଶ୍ୱନାଥ ହେଉଛନ୍ତି ୨୨ ପାହାଚର ଆଦ୍ୟ ଦେବତା । କଥିତ ଅଛି କାଶୀ ବିଶ୍ୱନାଥ, ଶ୍ରୀଜଗନ୍ନାଥଙ୍କ କୈବଲ୍ୟ ଦୈନିକ ପାଇବାପାଇଁ ସେଠାରେ ଅବସ୍ଥାନ କରିବାର ଆଜ୍ଞା ପାଇଥିଲେ । ଏହାର ଦକ୍ଷିଣ ପାର୍ଶ୍ୱରେ ଆନନ୍ଦବଜାର ଅବସ୍ଥିତ । ଶ୍ରୀମନ୍ଦିରର ପ୍ଲଟ୍ ନଂ ୧୫୭(କ)ରେ ଏହି ପାହାଚଗୁଡ଼ିକ ଅବସ୍ଥିତ । କେହି କେହି ବାଇଶି ପାହାଚ ପରିବର୍ତ୍ତେ ଅଠରଟି ପାହାଚ ବୋଲି କହିଥାନ୍ତି । କାରଣ ଅନ୍ୟ ଚାରୋଟି (୨୨-୧୮=୪) ପାହାଚ ମଧ୍ୟରୁ ଆନନ୍ଦବଜାରକୁ ଯିବା ବାଟରେ ଦୁଇଟି ଓ ଅନ୍ୟ ଦୁଇଟି ଗୁମୁଟ ଭିତରକୁ ପଡ଼ିଅଛି । ଏହି ବାଇଶିଗୋଟି ପାହାଚର ଗଠନ ଶୈଳୀ ପ୍ରାୟ ଏକ ପ୍ରକାରର ନୁହେଁ । ମୁଖଶାଳାଠାରୁ କୂର୍ମବେଢ଼ା ପର୍ଯ୍ୟନ୍ତ ପଡ଼ିଥିବା ଅଠରଟି ପାହାଚ ପ୍ରାୟ ଏକ ପ୍ରକାରର ଆୟତନ । ଏଗୁଡ଼ିକର ଲମ୍ବ ପ୍ରାୟ ୪୦ଫୁଟ, ଉଚ୍ଚତା ୬ରୁ୭ଇଞ୍ଚ ଓ ଓସାର ୬ଫୁଟ ଅଟେ । କିନ୍ତୁ ଅଷ୍ଟାଦଶ ପାହାଚଟି ସବୁଠାରୁ ଓସାରିଆ । ଏହାର ପ୍ରସ୍ଥ ପ୍ରାୟ ୧୫ଫୁଟ । ୧୯ ଓ ୨୦ଦୁଇଟି ପାହାଚ ଅର୍ଦ୍ଧ ଗୋଲାକୃତି ଆକାରର ଓ କାରୁକାର୍ଯ୍ୟଯୁକ୍ତ । ଅନ୍ୟ ଦୁଇଟି ଅର୍ଥାତ୍ ୨୧ ଓ ୨୨ତମ ପାହାଚର ପ୍ରସ୍ଥ ପ୍ରାୟ ୧୦ ଫୁଟ । ଏହି ଦ୍ୱାରର ଦୁଇ ପାର୍ଶ୍ୱରେ ଦୁଇଟି ସିଂହ ମୂର୍ତ୍ତି ବିଦ୍ୟମାନ । ଏମାନଙ୍କର ଲମ୍ବ ୧୦ଫୁଟ ଓ ଉଚ୍ଚତା ୮ ଫୁଟ । ଏହି ସମସ୍ତ ପାହାଚ ବଉଳମାଳା ପଥରରେ ନିର୍ମିତ ।

ମୁଖଶାଳାଠାରୁ ବାଇଶି ପାହାଚରେ ଗଲାବେଳେ ଦେଖିବାକୁ ମିଳେ ବ୍ରାହ୍ମଣମାନେ ସେମାନଙ୍କର ପିତ୍ତଳଡାଳ, ତମ୍ବାପାତ୍ର ଓ କୁଶଧରି ବସିଥାନ୍ତି ଦୁଇ ପାର୍ଶ୍ୱରେ ଭକ୍ତମାନଙ୍କୁ ଅପେକ୍ଷାକରି । କଥିତ ଅଛି ପିତୃପୁରୁଷମାନେ ସେଠାରେ ଅପେକ୍ଷା କରିଥାନ୍ତି ଶ୍ରୀଜଗନ୍ନାଥଙ୍କର କାଣିକାଏ କୈବଲ୍ୟ ପାଇବାପାଇଁ ସେମାନଙ୍କର ଆତ୍ମୀୟସ୍ୱଜନ ତଥା ପୁଅ, ପୁତୁରା, ଭଣଜା ଓ ଜ୍ୱାଇଁମାନଙ୍କଠାରୁ । ଆଉ ମଧ୍ୟ ଯେଉଁ ଭକ୍ତ (ଯଜମାନ) ସେଠାରେ ଦେବତା, ମୁନି, ଋଷି ଓ ପିତୃଲୋକଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ ଦେଇଥାନ୍ତି ଓ କୈବଲ୍ୟ କଣିକା ଅର୍ପଣ କରିଥାନ୍ତି ତାଙ୍କର ଶ୍ରାଦ୍ଧ ଜନିତ ପୁଣ୍ୟ ଅର୍ଜନ ହୋଇଥାଏ । ବ୍ରାହ୍ମଣମାନେ ଭକ୍ତମାନଙ୍କର ଶ୍ରାଦ୍ଧ ଦେବାପାଇଁ ସେଠାରେ

ବସିଥାନ୍ତି । ତେଣୁ ଦୈନିକ ସେଠାରେ ଲକ୍ଷ ଲକ୍ଷ ଭକ୍ତ ସେମାନଙ୍କର ପିତାମହ ଓ ମାତାମହୀମାନଙ୍କର ଶ୍ରାଦ୍ଧ ଦିବସରେ ଶ୍ରାଦ୍ଧ ଅର୍ଥାତ୍ ପିଣ୍ଡଦାନ, ଅନ୍ନଦାନ, ବସ୍ତ୍ରଦାନ ଇତ୍ୟାଦି ଦେଇଥାନ୍ତି । କିନ୍ତୁ ଆଶ୍ୱିନ କୃଷ୍ଣପକ୍ଷ ପ୍ରତିପଦାଠାରୁ ମହାଳୟା ଅମାବାସ୍ୟା ପନ୍ଦରଦିନ (ଅପରପକ୍ଷ) ଶ୍ରାଦ୍ଧ ଦେବାର ବିଧିବିଧାନ ଏଠାକାର ଆଧ୍ୟାତ୍ମିକ ପରିବେଶକୁ ଚଳଚଞ୍ଚଳ କରି ପକାଇଥାଏ । କାରଣ ଏହି ଦିନଗୁଡ଼ିକରେ ଲକ୍ଷ ଲକ୍ଷ ଭକ୍ତ ବହୁ ଦୂରଦୂରାନ୍ତରୁ ଆସି ଏଠାରେ ପିଣ୍ଡଦାନ ଦେବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥାନ୍ତି । ସେହିପରି ପବିତ୍ର କାର୍ତ୍ତିକ ମାସର ଦୀପାବଳୀ ଦିନ ଲକ୍ଷ ଲକ୍ଷ ଭକ୍ତ ଦିନରେ ପିଣ୍ଡଦାନ ଓ ରାତିରେ ପୟା ଡାକିବାର ଦୃଶ୍ୟ ଏହି ପୀଠର ମହତ୍ତ୍ୱକୁ ଦ୍ୱିଗୁଣିତ କରି ପକାଇଥାଏ । ବାଇଶି ପାହାଚରେ ଦୀପ ଜାଳିବା ଓ କାଉଁରିଆ କାଠି ଜାଳିବାର ପବିତ୍ରତାର ପଟାନ୍ତର ନାହିଁ । ଏଥିପାଇଁ ଏକ କିମ୍ୱଦନ୍ତୀ ଅଛି । ଅତୀତରେ ରାଜ ଦର୍ପନାରାୟଣ ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦେଉଥିଲେ । ରାଜାଙ୍କର ତତ୍ତୁଲ୍ୟ କାର୍ଯ୍ୟରେ ପ୍ରଭୁ ଶ୍ରୀଜଗନ୍ନାଥ ପ୍ରୀତ ହୋଇ ଆଶୀର୍ବାଦ ଦେଇଥିଲେ, ଜଣେ ବ୍ରାହ୍ମଣ ବେଶରେ ରାଜାଙ୍କୁ ଦେଖାଦେଇ ପ୍ରତିଦିନ ଏହି କାର୍ଯ୍ୟ କରିବାକୁ ସୂଚନା ଦେଇଥିଲେ । କ୍ରମଶଃ ଏହି ଅଲୌକିକ ଘଟଣାଟି ସର୍ବତ୍ର ପ୍ରଚାର ଓ ପ୍ରସାର ହୋଇଗଲା । ଯାହାକି ସେହି କଥାଟି ଆଜି ପର୍ଯ୍ୟନ୍ତ ପୁରାଣ ବର୍ଣ୍ଣିତ ହୋଇ ରହିଅଛି ଓ ଭକ୍ତ ସମାଜରେ ବିଶ୍ୱାସ ଯୋଗ୍ୟ ହୋଇପାରିଛି । ରାତିରେ ଭକ୍ତମାନେ ପୟା ଡାକିବା ଅବସରରେ ନିମ୍ନରେ ଲିଖିତ କଥାଟି କହିବା ପାଇଁ ଭୁଲନ୍ତି ନାହିଁ :-

ବଡ଼ ବଡୁଆ ହୋ,
ଅନ୍ଧାରରେ ଆସ- ଆଲୁଅରେ ଯାଅ,
ଗଙ୍ଗାଯାଅ, ଗୟାଯାଅ, କାଶୀଯାଅ,
ପୁରୁଷୋତ୍ତମରେ ମହାପ୍ରସାଦ ଖାଇ,
ବାଇଶି ପାହାଚରେ ଗଡ଼ ଗଡ଼ାଉଥାଅ ।

ଆଜିକାଲି କଥା ପ୍ରସଙ୍ଗରେ ଲୋକମାନେ କହିଥାନ୍ତି, କାଳିଆର ଡୋରି ନଥିଲେ, ତାଙ୍କୁ ଦର୍ଶନ କରିବା ସମ୍ଭବପର ନୁହେଁ । କଥାଟି ଶତ ପ୍ରତିଶତ ସତ ଅଟେ । ବାସ୍ତବିକ ଭକ୍ତ ସିଂହଦ୍ୱାର ଦେଇ ବାଇଶି ପାହାଚ ସ୍ପର୍ଶ କରୁ କରୁ ତା' ଶରୀରର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗରେ ଜାଗ୍ରତ ହୋଇଥାଏ ଶ୍ରୀଜଗନ୍ନାଥଙ୍କର ପ୍ରେମର ଭାବ । ମନକୁ କରିଦିଏ ଭାବ ବିହ୍ୱଳ । ଆତ୍ମହରା ହୋଇ ସେ ଭୁଲିଯାଏ ମାୟା, କାମ, ଲୋଭ, ମୋହ, କ୍ରୋଧ ଇତ୍ୟାଦିକୁ । ଏପରିକି ସେ ତା'ର ଆତ୍ମୀୟ ସ୍ୱଜନମାନଙ୍କୁ ଭୁଲି ଯିବାକୁ ପଛାଇ ନଥାଏ । ପ୍ରଥମେ ସେହି ପାହାଚଗୁଡ଼ିକୁ ବିନମ୍ରତା ସହ ସାଷ୍ଟାଙ୍ଗ ପ୍ରଣିପାତ କରି ଅତିକ୍ରମ କରିଥାଏ ଗୋଟିଏ ପରେ ଗୋଟିଏ ପାହାଚ । ଗାଇ ପକାଇ ଥାଏ ଭକ୍ତିଭରା କଣ୍ଠରେ ଜୟ ଶ୍ରୀଜଗନ୍ନାଥ, କାଳିଆଠାକୁର ବଳିଆର ଭୁଜ ।

ସେତେବେଳେ ସେ ମୁକ୍ତି ପାଇଗଲା ବୋଲି ଭାବିଥାଏ । ଏଥିପାଇଁ ଗୋଟିଏ ଗୀତ ଅଛି । ଯାହାକି ନିମ୍ନରେ ପ୍ରଦତ୍ତ ହୋଇଅଛି ।

"ପହଞ୍ଚିଲି ଆସି ଶ୍ରୀକ୍ଷେତ୍ର ଧାମରେ,
ବଡ଼ଦାଣ୍ଡ ଧୂଳି ବୋଳିଲି ମଥାରେ,
ବାଇଶି ପାହାଚେ ଦେଲି ପାଦ ଥୋଇ
ପୁଲକିତ ହେଲା ତନୁ ମନରେ ।"

ଏତଦ୍‌ବ୍ୟତୀତ ଭକ୍ତମାନେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଫେରିବା ବାଟରେ ବାଇଶି ପାହାଚରେ କିଛି ସମୟ ବସିଥାନ୍ତି । ନିଜ ନିଜର ପିଲାମାନଙ୍କୁ ସେ ପାହାଚରେ ଶୁଆଇ ପକାଇ ଥାଆନ୍ତି । କେବଳ ପ୍ରଭୁଙ୍କର କାଣିଚାଏ ଆଶୀର୍ବାଦ ଲାଭ ଅଭିଳାଷରେ । ନବକଳେବର ସମୟରେ ପତିସେବକମାନେ ନବମୂର୍ତ୍ତିଙ୍କୁ ବିଧିବିଧାନ ସହ ଜୀବଦାନ ଦେଇଥାଆନ୍ତି । କୋଠସୁଆଁସିଆ ପୁରୁଣା ମୂର୍ତ୍ତିକୁ କୋଇଲି ବୈକୁଣ୍ଠରେ ସମାଧିସ୍ଥ ଦେଇ ଶୁଦ୍ଧ ହୋଇଥାନ୍ତି । ପରିଶେଷରେ ସାତ ପାହାଚ ଆସି ଶାନ୍ତି ଉଦକ ପାଇଥାନ୍ତି । ପବିତ୍ର ରଥଯାତ୍ରା ସମୟରେ ଶ୍ରୀଜଗନ୍ନାଥ ସାତ ପାହାଚ ପାଖରେ ଟାହିଆ ଲଗାଇ ସୁସଜ୍ଜିତ ହୋଇ ବିରାଟ ପଟୁଆର ସହିତ ରଥ ଉପରକୁ ଆସିଥାନ୍ତି । ଏହି ପୀଠ ଉପରେ ପହଣ୍ଡି ହୋଇ ଶ୍ରୀପ୍ରଭୁମାନେ ଆସିବାର ଦୃଶ୍ୟ ଅତ୍ୟନ୍ତ ମନୋହର ଓ ଚିତ୍ତାକର୍ଷକ । ଶାସ୍ତ୍ରାନୁମୋଦିତ ଯେ ସେହି ଦେବୋପମ ପହଣ୍ଡି ସମୟରେ ବାଇଶି ପାହାଚରେ ଶ୍ରୀପ୍ରଭୁଙ୍କୁ ଦର୍ଶନ କରିବାପାଇଁ ତେତିଶିକୋଟି ଦେବତାଙ୍କ ସମେତ, ପିତୃପୁରୁଷଗଣ, ଚିତ୍ରଗୁପ୍ତ, ଯମଦୂତ, ଗନ୍ଧର୍ବ, କିନ୍ନର, ନର୍ତ୍ତକୀମାନେ ଉପସ୍ଥିତ ଥାଆନ୍ତି । ଆଉ ମଧ ପ୍ରଭୁ ଦେବଲୋକରୁ ଭୂଲୋକକୁ ଏହି ବାଟଦେଇ ଆସିଥାନ୍ତି ବୋଲି କିମ୍ବଦନ୍ତୀମାନ ଅଛି । ତେଣୁ ଏହି ପୀଠ ଗୋଟିଏ ତତ୍ତ୍ୱଭିତ୍ତିକ ଧାର୍ମିକପୀଠ ରୂପେ ସମଗ୍ର ଜନମାନସପଟରେ ପ୍ରସିଦ୍ଧି ଲାଭ କରିଛି ।

ମନରେ ବେଳେବେଳେ ପ୍ରଶ୍ନ ଉଙ୍କିମାରେ କାହିଁକି ଶ୍ରୀଜଗନ୍ନାଥଙ୍କ ପୀଠରେ ବାଇଶିପାହାଚ ପରିବର୍ତ୍ତେ ତା'ଠାରୁ ଅଧିକ ବା କମ ପାହାଚ ନାହିଁ । ଏଥିରୁ ଅନୁମେୟ ବାଇଶି ସଂଖ୍ୟାଟି ଏକ ତତ୍ତ୍ୱଭିତ୍ତିକ ଆଧାତ୍ମିକର ଗୁଣାତ୍ମକ ପବିତ୍ର ସଂଖ୍ୟା । କେତେକ ବିଦ୍ୱାନ ଏହାର ମହତ୍ତ୍ୱ ଓ ଗୁରୁତ୍ୱକୁ ବିଭିନ୍ନ ଶାସ୍ତ୍ର, ପୁରାଣ, ବେଦ ବେଦାନ୍ତ ତଥା ମାଦଳା ପାଞ୍ଜିରେ ତତ୍ତ୍ୱଭିତ୍ତିକ ରୂପରେଖ ଦେଇ ଉଲ୍ଲେଖ କରିଛନ୍ତି । ଏଥିମଧ୍ୟରୁ କେତେକ ତତ୍ତ୍ୱ ନିମ୍ନରେ ପ୍ରଦତ୍ତ ହୋଇଅଛି ।

୧. ତୃତୀୟ ପାହାଚର ବାମ ପାର୍ଶ୍ୱରେ ବିରାଜିତ ଶ୍ରୀକାଶୀବିଶ୍ୱନାଥ ତତ୍ତ୍ୱାବଧାନରେ ଥିବା ୨୨ଜଣ ଶ୍ରୁତି ଯୋଗିନୀଙ୍କ ନାମର ତାତ୍ପର୍ଯ୍ୟ ଅନୁଯାୟୀ ବାଇଶ ପାହାଚ ହୋଇଛି ବୋଲି କୁହାଯାଇଅଛି । ସେଗୁଡ଼ିକର ନାମ ଯଥା : ତୀବ୍ରା, ମୁକୁନ୍ଦବତୀ, ମନ୍ଦା, ଛନ୍ଦୋବତୀ, ଦୟାବତୀ, ରଞ୍ଜନୀ, ରତିକା, ରୌଦ୍ର, କ୍ରୋଧା, ବଦ୍ରିକା, ପ୍ରସାରିଣୀ, ପ୍ରୀତି, ମର୍ଜନୀ, କ୍ଷ୍ୟତି, ରକ୍ତ, ମନ୍ଦିପନୀ,

ମଦନ୍ତୀ, ରୋହିଣୀ, ରମ୍ୟା, ଉଗ୍ରା,କ୍ଷୋଭିଣୀ ଓ ଅଳାପନୀ । ଏହି ବାଇଶଜଣ ଯୋଗିନୀ ସାକାର ନହୋଇ ନିରାକାର ଭାବେ ପ୍ରତିଟି ପାହାଚରେ ଅହରହ ଦଣ୍ଡାୟମାନ ।

୨. ସ୍ୱୟଂ ଶ୍ରୀବିଷ୍ଣୁଙ୍କର ବାସସ୍ଥଳୀ ଗୋଲୋକ ଧାମ । ସେହି ଗୋଲୋକଧାମରୁ ଭୂଲୋକକୁ ଯେତେବେଳେ ଶ୍ରୀବିଷ୍ଣୁ ଅବତରଣ କରନ୍ତି, ସେତେବେଳେ ଅଷ୍ଟ ବୈକୁଣ୍ଠ ଓ ଚତୁର୍ଦ୍ଦଶ ଭୁବନ ଅତିକ୍ରମ କରିଥାନ୍ତି । ଏହି ଅଷ୍ଟ ବୈକୁଣ୍ଠ ଓ ଚତୁର୍ଦ୍ଦଶ ଭୁବନ ସଂଖ୍ୟା ମିଶି ବାଇଶି ଅଟେ । ତତ୍ତ୍ୱଦୃଷ୍ଟିରୁ ବିଚାର କଲେ ବାଇଶ ସଂଖ୍ୟାଟି ବାଇଶି ପାହାଚ ଅର୍ଥାତ୍ ଅଷ୍ଟବୈକୁଣ୍ଠ ଓ ଚତୁର୍ଦ୍ଦଶ ଭୁବନକୁ ନେଇ ଗଠିତ ବୋଲି ତତ୍ତ୍ୱଦର୍ଶୀମାନେ କହିଛନ୍ତି । ସେଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହୋଇଅଛି :- ଶ୍ରୀ ବୈକୁଣ୍ଠ, କୈବଲ୍ୟ ବୈକୁଣ୍ଠ, ଶେଷଶାୟୀ ବୈକୁଣ୍ଠ, ଶେଷଦୀପ ବୈକୁଣ୍ଠ, ପରବ୍ୟୋମ ବୈକୁଣ୍ଠ, ଗର୍ଭୋଦକ ଶାୟୀ ବୈକୁଣ୍ଠ ଓ କୈଳାସ ବୈକୁଣ୍ଠ । ଚତୁର୍ଦ୍ଦଶ ଭୁବନ ହେଲା :- ଭୂଃ, ଭୁବଃ, ସ୍ୱଃ, ମହଃ, ଜନ, ତପଃ, ସତ୍ୟ, ଅତଳ, ସୁତଳ, ବିତଳ, ତଳାତଳ, ମହାତଳ, ରସାତଳ ଓ ପାତାଳ । ଭକ୍ତମାନେ ବାଇଶି ପାହାଚ ଅତିକ୍ରମ କରିବା ଅର୍ଥ ବାଇଶି ଭୁବନ ଦେଇ ରତ୍ନ ସିଂହାସନରେ ବିରାଜିତ ମର୍ତ୍ତ୍ୟ ବୈକୁଣ୍ଠଧାରୀ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଥାନ୍ତି ।

୩. ଭାଗବତ ହେଉଛି ବାରଟି ଅର୍ଥାତ୍ ଦ୍ୱାଦଶ ସ୍କନ୍ଧ । ଏହି ଦ୍ୱାଦଶ ସ୍କନ୍ଧରେ ଦଶ ତତ୍ତ୍ୱ ଅନ୍ତର୍ନିହିତ । ସେହି ଦଶ ତତ୍ତ୍ୱ ହେଲା :- ଶ୍ରୀବାସୁଦେବ, ଶ୍ରୀନୃସିଂହ, ଶ୍ରୀରାମକୃଷ୍ଣ, ଶ୍ରୀଦେବୀ, ଭୂଦେବୀ, ଶ୍ରୀଗୋବିନ୍ଦ, ଶ୍ରୀନାରାୟଣ, ଶ୍ରୀମଦନମୋହନ, ମା' ଶ୍ରୀକମଳା ଓ ମା' ଶ୍ରୀ ଭୁବନେଶ୍ୱରୀ ।

୪. ବାଇଶି ପାହାଚର ଗୂଢ଼ତତ୍ତ୍ୱ ମିଶ୍ରଣରେ ବାଇଶି ସଂଖ୍ୟା ସୃଷ୍ଟି ହୋଇଅଛି । ସେଗୁଡ଼ିକ ହେଲା :-

(କ) ପଞ୍ଚ ଇନ୍ଦ୍ରିୟ - ଆଖି, କାନ, ନାକ, ଜିହ୍ୱା ଓ ଚର୍ମ

(ଖ) ପଞ୍ଚ ପ୍ରାଣ - ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ

(ଗ) ପଞ୍ଚ ମହାଭୂତ - ପୃଥିବୀ, ଜଳ, ଅଗ୍ନି, ବାୟୁ ଓ ବ୍ୟୋମ

(ଘ) ପଞ୍ଚ ଅନ୍ତସ୍ଥ ତନ୍‌ମାତ୍ରା- ରୂପ, ରସ, ସ୍ୱାଦ, ଗନ୍ଧ ଓ ଶବ୍ଦ

(ଙ) ଅନ୍ୟାନ୍ୟ - ବୁଦ୍ଧି ଓ ଅହଙ୍କାର । ଏଗୁଡ଼ିକ ବାଇଶି ପାହାଚର ପ୍ରତୀକ ଅଟେ ।

୫. ସପ୍ତପୁରୁଷ, ଦଶ ବିଶ୍ୱ ଦେବା ଓ ପଞ୍ଚ ଋଷିଙ୍କ ସମାହାର ବାଇଶି ଅଟେ ।

୬. ଚତୁର୍ବେଦ ଓ ଅଷ୍ଟାଦଶ ପୁରାଣ ସମାହାର ବାଇଶି ଅଟେ ।

୭. ବାଇଶିଟି ତୀର୍ଥ ଭୂମିର ସ୍ୱରୂପ ବାଇଶିପାହାଚର ପ୍ରତୀକ ।

୮. ବାଇଶି ଭାବର ପ୍ରତୀକ ବାଇଶି ପାହାଚ ହୋଇଅଛି ।

୯. ଦଶଅବତାର ଗୋଡ଼ର ସଂଖ୍ୟା ବାଇଶି ଅଟେ । ତେଣୁ ଏହା ମଧ୍ୟ ବାଇଶି ପାହାଚର ପ୍ରତୀକ ଅଟେ । ତେବେ ତତ୍ତ୍ୱ ବା ତାତ୍ପର୍ଯ୍ୟ ଯାହା ହେଉନା କାହିଁକି ବାଇଶି ପାହାଚକୁ ବିଶ୍ୱାସ କରିବାର ପବିତ୍ରତାକୁ କେହି ଅସ୍ୱୀକାର କରିବେ ନାହିଁ ।

ଯେ କୌଣସି ଲୋକ ବାଇଶି ପାହାଚର ନାମ ଶ୍ରବଣମାତ୍ରେ ସ୍ୱତଃସ୍ଫୂର୍ତ୍ତ ମନରେ ଜାଗ୍ରତ ହୋଇଥାଏ ଶ୍ରୀଜଗନ୍ନାଥଙ୍କ ମହିମା, ଗୁଣଗାରିମା ଓ ସଂସ୍କୃତି । କାରଣ ଉଭୟଙ୍କ ମଧ୍ୟରେ ଗୂଢ଼ତତ୍ତ୍ୱ ଓ ମହାତ୍ମ୍ୟ ଅନ୍ତର୍ନିହିତ ଅଛି । ବିଭିନ୍ନ ଧର୍ମ ସମ୍ପ୍ରଦାୟର ସାଧୁ, ସନ୍ଥ, କବି ଓ ଲେଖକମାନେ କାବ୍ୟ ଓ କବିତା ମାଧ୍ୟମରେ ଏହି ଗୂଢ଼ ରହସ୍ୟକୁ ପ୍ରଚାର ଓ ପ୍ରସାରର ସହାୟକ ହୋଇଛନ୍ତି । ଫଳରେ ଏହା ସମଗ୍ର ବିଶ୍ୱର ଭକ୍ତ ସମାଜ ଉପରେ ଜଗନ୍ନାଥ ପ୍ରେମର ବାର୍ତ୍ତା ବିଶ୍ୱାସ ଯୋଗ୍ୟ ହୋଇପାରିଛି ।

ଗଜପତି ନରସିଂହଦେବଙ୍କ ଚତୁର୍ଥ ଅଙ୍କ ଅକ୍ଷୟତୃତୀୟା ଦିବସରେ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ସାଲବେଗ ସର୍ବପ୍ରଥମେ ଶ୍ରୀକ୍ଷେତ୍ରକୁ ପ୍ରବେଶ କରିଥିଲେ । ସେତେବେଳେ ବାଇଶି ପାହାଚରେ ମହାପ୍ରସାଦ ବିକ୍ରି ହେଉଥିଲା । ତାଙ୍କ ଭାଷାରେ:-

"ବାଇଶି ପାବଚ୍ଛେ ଗଲି ସୁଖେ,
କୈବଲ୍ୟ ପ୍ରସରା ବେନି ପାଖେ,
ଚଣ୍ଡାଳୁ, ବ୍ରାହ୍ମଣ, ଶୂଦ୍ର ପରିଯନ୍ତେ,
କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ ।"

ଭକ୍ତିହିଁ ଭଗବାନଙ୍କର ପ୍ରତୀକ । ଯେଉଁ ଭକ୍ତ ତା'ର ଅସୀମ ତ୍ୟାଗ ଓ ସାଧନା ତଥା ସତ୍‌କର୍ମ ବିନିଯୋଗ ଫଳରେ ଭଗବାନଙ୍କର ଗୂଢ଼ ରହସ୍ୟ ଭେଦ କରିପାରେ, ସେ ଭଗବତ୍ ପ୍ରାପ୍ତି ହୋଇଥାଏ । ଫଳରେ ସେହି ଭକ୍ତର ଜୀବନଟି ସାର୍ଥକ ହେବା ସଙ୍ଗେ ସଙ୍ଗେ ଆତ୍ମାଟି ସାକାର ହୋଇଥାଏ । ତା'ପାଇଁ ବାଇଶିପାବଛଟି ହୋଇଥାଏ ସର୍ବଶ୍ରେଷ୍ଠ ପାଥେୟ । ଏହି ପାଥେୟର ତତ୍ତ୍ୱ, ମହତ୍ତ୍ୱ ଓ ଗୁରୁତ୍ୱକୁ ଯେଉଁ ଭକ୍ତ ବହନ କରିଥାଏ ସେ ହୋଇଥାଏ ଭଗବାନ ସଦୃଶ । ଆତ୍ମା ଓ ପରମାତ୍ମାର ମିଳନପାଇଁ ବାଇଶିପାବଛଟି ପ୍ରଧାନ ମାଧ୍ୟମ ଅଟେ । ବାଇଶିପାବଛକୁ ମୋର କୋଟି କୋଟି ପ୍ରଣାମ ।

* * * * * * *

# ଶ୍ରୀମନ୍ଦିରର ଦ୍ୱାର

ଲୀଳାମୟ, ଇଚ୍ଛାମୟ ଓ କରୁଣାମୟ ବଡ଼ଠାକୁର ପ୍ରଭୁ ଶ୍ରୀଜଗନ୍ନାଥଙ୍କର ମହିମା, ମାହାତ୍ମ୍ୟ, ଗୁଣଗାରିମା ଯେପରି ରହସ୍ୟମୟ, ତାଙ୍କର ବିରାଜିତ ପୀଠ ବଡ଼ଦେଉଳର ପ୍ରତ୍ୟେକ ଅଂଶ ତଥା, ମଣ୍ଡପ, କୁଣ୍ଡ, ପ୍ରାଚୀର, ଦ୍ୱାର, କୂପ, ଅଗଣା ଇତ୍ୟାଦି ନିର୍ମାଣର ତତ୍ତ୍ୱ ମଧ ସେପରି ବୈଚିତ୍ର୍ୟମୟ । ଏହି ସବୁ ସମ୍ବନ୍ଧରେ ବହୁ ମୁନି,ଋଷି, ବିଦ୍ୱାନ, ପଣ୍ଡିତ, ପରମଭକ୍ତ, କବି, ଲେଖକମାନେ ଜାଣିବାକୁ ଚେଷ୍ଟାକରି ଜାଣିପାରିନାହାଁନ୍ତି, ଲେଖିବାକୁ ଚେଷ୍ଟାକରି ଲେଖିପାରିନାହାନ୍ତି ଓ ବୁଝିବାକୁ ଚେଷ୍ଟାକରି ବୁଝି ପାରି ନାହାନ୍ତି । କାରଣ ସେ ଅଟନ୍ତି ଅନନ୍ତ, ଅସୀମ, ଅଦୃଶ୍ୟ, ନିରାକାର ପରଂବ୍ରହ୍ମ । ତେଣୁ ସେ ଏହିସବୁ ତତ୍ତ୍ୱ, ଦର୍ଶନ, ମତବାଦର ଊର୍ଦ୍ଧ୍ୱରେ ରହି ହୋଇପାରିଛନ୍ତି ମାନବଜାତିର ଭକ୍ତି ଭାବର ଭଣ୍ଡାର ।

ଘରକୁ ଘରଣୀ ନଥିଲେ ଘରଟି ସୁନ୍ଦର ଦେଖାଯାଏ ନାହିଁ । ସେହିପରି ଘରେ ଦ୍ୱାର ନଥିଲେ ତାହା ଘର ପଦବାଚ୍ୟ ହୋଇନଥାଏ । ଦ୍ୱାର କହିଲେ ସାଧାରଣତଃ କୌଣସ ଆବଦ୍ଧ ସୀମା ଭିତରକୁ ପ୍ରବେଶ କରିବାର ପଥକୁ କୁହାଯାଏ । ଘରଅଛି ଅର୍ଥ ତା'ର ଏକ ନିର୍ଦ୍ଦିଷ୍ଟ ପ୍ରବେଶ ପଥ ଅଛି । ତେଣୁ ସେହି ପ୍ରବେଶପଥକୁ 'ଦ୍ୱାର' କୁହାଯାଏ । ଘର କହିଲେ ସାଧାରଣତଃ ମାନବ ବାସକରୁଥିବା ବାସସ୍ଥାନକୁ ବୁଝାଇ ନ'ଥାଏ । ଦେବଦେବୀଙ୍କଠାରୁ ଆରମ୍ଭକରି ପଶୁପକ୍ଷୀ, କୀଟପତଙ୍ଗ, ଜୀବଜନ୍ତୁ, ସରୀସୃପ ଇତ୍ୟାଦି ରହୁଥିବା ସ୍ଥାନକୁ ମଧ ଘର କୁହାଯାଏ । ସେହି ସବୁ ଘରଗୁଡ଼ିକ ବିଭିନ୍ନ ନାମରେ ନାମିତ । ଯଥା- ନିଳୟ, ଗାତ, ହୁଙ୍କା, ନଈ, ନାଳ, ସମୁଦ୍ର, କୋରଡ଼, ଗୁମ୍ଫା, ବସା, ଆଶ୍ରମ, ମଣ୍ଡପ, ମଠ, ମନ୍ଦିର, ଦୁର୍ଗ, ରାଜବାଟୀ ଇତ୍ୟାଦି ଅନେକ । ସେଥିମଧ୍ୟରୁ ଦେବଦେବୀମାନେ ଆସ୍ଥାନ ମଣ୍ଡିତ ହୋଇ ପୂଜାପାଉଥିବା ସ୍ଥାନକୁ ଘର ପରିବର୍ତ୍ତେ ମନ୍ଦିର, ମଣ୍ଡପ, ଦେଉଳ, ମଠ, ଆଶ୍ରମ କୁହାଯାଇଥାଏ । କିନ୍ତୁ ଏହା ବିସ୍ମିତ ଯେ ଯେଉଁ ଠାକୁର ଅଶେଷ କରୁଣାର ସାଗର ତଥା ସୃଷ୍ଟି, ସ୍ଥିତି, ଓ ସଂହାରର ମୂଳ ଉତ୍ସ ପରଂବ୍ରହ୍ମ ଓ ଯାହାକୁ ଦର୍ଶନ କରିବାପାଇଁ ସ୍ୱର୍ଗର ଦେବତାମାନେ ବ୍ୟାକୁଳ, ସେହି ଠାକୁର କେହି ନୁହଁନ୍ତି, ସେ ଅଟନ୍ତି ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀମନ୍ଦିରରେ ବିରାଜିତ ଜଗତରନାଥ ପରଂବ୍ରହ୍ମ ଶ୍ରୀଜଗନ୍ନାଥ । ସେହି ପବିତ୍ରପୀଠ ତଥା ବଡ଼ଦେଉଳକୁ ପ୍ରବେଶ କରିବାପାଇଁ ମୁଖ୍ୟତଃ ଚାରି ଦ୍ୱାର ଥିଲେ ମଧ ମନ୍ଦିର ଭିତରେ ଅଶେଷ ତତ୍ତ୍ୱଭିତ୍ତିକ ଦ୍ୱାର ଅଛି । ସେହି ବଡ଼ଦେଉଳରେ ଥିବା ଦ୍ୱାର ପରି, ପୃଥିବୀର ଅନ୍ୟ କୌଣସି ଦେବାଳୟରେ ଏପରି ଦ୍ୱାର ଦେଖିବାକୁ ମିଳେନାହିଁ ।

ଘର ବା ମନ୍ଦିରଗୁଡ଼ିକର ସୌନ୍ଦର୍ଯ୍ୟ ବୃଦ୍ଧି ସହ ଶତ୍ରୁମାନଙ୍କ କବଳରୁ ସୁରକ୍ଷା ଦେବାପାଇଁ ଚତୁଃପାର୍ଶ୍ୱର ପାଚେରୀମାନ ନିର୍ମାଣ ହୋଇଥାଏ । ତେଣୁ ଭାବବିନୋଦିଆ କାଳିଆ ଠାକୁରଙ୍କର ପୀଠସ୍ଥଳୀକୁ ସୁଦୃଢ଼ ଓ ସୁଉଚ୍ଚ ଦୁଇଟି ପାଚେରି ଘେରି ରହିଅଛି । ଯଥା ବହିଃର୍ଭାଗ, ଅନ୍ତର୍ଭାଗ ପାଚେରି । ବର୍ହିଭାଗ ପାଚେରିର ନାମ ମେଘନାଦ ପାଚେରି ଓ ଅନ୍ତର୍ଭାଗ ପାଚେରିର ନାମ କୂର୍ମପାଚେରି । ଦୁଇଟି ପାଚେରି ମଧ୍ୟରେ ଦୂରତା ପ୍ରାୟ ୧୫୦ଫୁଟ । ଶ୍ରୀଠାକୁର ଯେପରି ବଡ, ସେପରି ତାଙ୍କ ମନ୍ଦିରର ପ୍ରତ୍ୟେକ ଅଂଶ ମଧ୍ୟ ବଡ଼ ଆଖ୍ୟାରେ ନାମିତ । ଯଥା ବଡ଼ଦାଣ୍ଡ, ବଡ଼ଛତା, ବଡ଼ଅଗଣା, ବଡ଼ପାଚେରି, ବଡ଼ ଧ୍ୱଜା, ବଡ଼ଦ୍ୱାର, ବଡ଼ପଣ୍ଡା ଇତ୍ୟାଦି । ଏହି ବଡ଼ ପାଚେରି ତଥା ମେଘନାଦ ପାଚେରି ୧୪୪୮ ଖ୍ରୀଷ୍ଟାବ୍ଦରେ ଗଜପତି ମହାରାଜା କପିଳେନ୍ଦ୍ର ଦେବଙ୍କ ସମୟରେ ନିର୍ମାଣ ହୋଇଥିଲା ବୋଲି ମାଦଳାପାଞ୍ଜିରେ ଉଲ୍ଲେଖ ଅଛି । ଏହି ପାଚେରିର ଚତୁଃପାର୍ଶ୍ୱରେ ପ୍ରଶସ୍ତ ରାସ୍ତା ଘେରି ରହିଅଛି । ଯେଉଁଠାରେ କି ଲକ୍ଷ ଲକ୍ଷ ଭକ୍ତ ସମାଗମ ହୋଇପାରୁଛନ୍ତି । ଏହା ଚାରିପଟେ ଅର୍ଥାତ୍ ୪ଦିଗରେ ମନ୍ଦିରକୁ ପ୍ରବେଶ କରିବାପାଇଁ ଅଛି ଚାରୋଟି ମୁଖ୍ୟଦ୍ୱାର । ଏହାଛଡ଼ା ଅନ୍ୟ ଦୁଇଟି ଦ୍ୱାର ଅଛି ବୋଲି ସୂଚନା ମିଳେ । ଏହି ସବୁ ଦ୍ୱାର ସମ୍ପର୍କରେ ନିମ୍ନରେ ପ୍ରଦତ୍ତ ହୋଇଅଛି ।

## ସିଂହଦ୍ୱାର



ସିଂହଦ୍ୱାରକୁ ପୂର୍ବଦ୍ୱାର ବା ମୋକ୍ଷଦ୍ୱାର ବୋଲି କୁହାଯାଏ । ଏହିଦ୍ୱାର ଠାରୁ ରତ୍ନସିଂହାସନର ଦୂରତା ପ୍ରାୟ ୩୦୦ଫୁଟ୍ । ଏହାର ସମ୍ମୁଖରେ ବଡ଼ଦାଣ୍ଡ ଓ ଅରୁଣସ୍ତମ୍ଭ ବିଦ୍ୟମାନ । ଏହିଦ୍ୱାର ଦେଇ କେବଳ ଭକ୍ତ, ଯାତ୍ରୀ ଓ ଶ୍ରୀଶଙ୍କରାଚାର୍ଯ୍ୟ ପ୍ରବେଶ କରିବାର ବିଧି ଅଛି । ଯାହାକି ଭକ୍ତି ପଥର ସାଧକମାନଙ୍କପାଇଁ ଏହି ପଥଟି ନିର୍ଦ୍ଧାରିତ । ଏହାର ଦୁଇ ପାର୍ଶ୍ୱରେ ଦୁଇଟି ବିରାଟ ସିଂହ ମୂର୍ତ୍ତି ଦଣ୍ଡାୟମାନ । ଦ୍ୱାରଦେଶରେ ୧୫ଫୁଟ ଉଚ୍ଚତା ଓ ୬ଫୁଟରୁ ଅଧିକ ଚଉଡ଼ା ବିଶିଷ୍ଟ ପିତଳ ଛାଉଣି କବାଟ ଲାଗିଅଛି । ଏହାର ଉପର ଭାଗରେ ମା'ମହାଲକ୍ଷ୍ମୀଙ୍କର ଓ ଦଶାବତାର ମୂର୍ତ୍ତି ଖଚିତ ହୋଇଅଛି । ଏହି ଦ୍ୱାରଭିତରେ ପ୍ରବେଶ କରି ଅନ୍ୟପଟେ ବାହାରିବା ଗୃହକୁ ଗୁମୁଟ କୁହାଯାଏ । ଗୁମୁଟରେ ପାଦ ଦେଉ ଦେଉ ପତିତପାବନଙ୍କୁ ଭକ୍ତମାନେ ଦର୍ଶନ କରିଥାନ୍ତି ।

ପତିତପାବନ ଗୁମୁଟର ଦକ୍ଷିଣପାର୍ଶ୍ୱ କାନ୍ଥରେ ବିଦ୍ୟମାନ । ଶ୍ରୀମନ୍ଦିର ଭିତରକୁ ପ୍ରବେଶ କରିବାପାଇଁ ନିଷିଦ୍ଧ ଥିବା ଅଛୁଆ ଓ ପାତକ ଭକ୍ତମାନଙ୍କୁ ଦର୍ଶନ ଦେବାପାଇଁ ପତିତପାବନ ସେଠାରେ ଅଛନ୍ତି । ସେଠାରେ ପ୍ରଭୁଙ୍କୁ ଦର୍ଶନ କରି ମୁକ୍ତିଲାଭ କରିଥାନ୍ତି ସେହି ନିଷିଦ୍ଧ ଭକ୍ତ ସମାଜ । ଏହାଛଡ଼ା ପ୍ରଭୁଙ୍କ ଦ୍ୱାରପାଳ ଜୟବିଜୟ ରହିଛନ୍ତି । ଋରିହାତରେ ସେମାନେ ଧାରଣ କରିଛନ୍ତି ଶଙ୍ଖ, ଚକ୍ର, ଗଦା ଓ ଜପାମାଳୀ । ଏହିଦ୍ୱାରରେ ଅନ୍ୟଗୋଟିଏ ଛୋଟଦ୍ୱାର ଅଛି । ଯାହାର ଆକାର ଅଢ଼େଇ ଫୁଟରେ ଦୁଇଫୁଟ । ବ୍ରାହ୍ମମୁହୂର୍ତ୍ତ ପୂର୍ବରୁ ସେବାୟତମାନେ ଏହିଦ୍ୱାର ଦେଇ ଯାଇ ଠାକୁରମାନଙ୍କର ସେବାନୀତି କରିଥାନ୍ତି । ଗୁମୁଟକୁ ଅତିକ୍ରମ କଲେ ପଡ଼ିଥାଏ ପବିତ୍ର ବାଇଶପାହାଚ ।

ଏହିଦ୍ୱାର ହେଉଛି ଧର୍ମର ପ୍ରତୀକ ।

## ପଶ୍ଚିମଦ୍ୱାର



ପଶ୍ଚିମ ଦ୍ୱାରକୁ ବାଘଦ୍ୱାର କୁହାଯାଇଥାଏ । ସର୍ବସାଧାରଣଙ୍କ ରାସ୍ତାଠାରୁ ଏହିଦ୍ୱାରକୁ ଯିବା ମଧ୍ୟରେ ୪ଟି ପାହାଚ ପଡ଼ିଥାଏ । ଏହିଦ୍ୱାରର ଦୁଇପାର୍ଶ୍ୱରେ ଦୁଇଟି ଛୋଟ ଛୋଟ ବାଘମୂର୍ତ୍ତି ବିଦ୍ୟମାନ । ତେଣୁ ଏହିଦ୍ୱାରକୁ ବାଘଦ୍ୱାର କୁହାଯାଇଥାଏ । ଏହିଦ୍ୱାର ଦେଇ କେବଳ ଯୋଗୀ ଓ ସାଧକମାନେ ପ୍ରବେଶ କରିବାର ବିଧିଅଛି । କଥିତ ଅଛି ଅତୀତରେ ଏହି ଦ୍ୱାରଟି ବନ୍ଦ ଥିଲା । କିନ୍ତୁ ମରହଟ୍ଟାଙ୍କ ରାଜୁତି ସମୟରେ ଏହି ଦ୍ୱାର ଖୋଲା ହୋଇଅଛି । ସତରଫୁଟ ଉଚ୍ଚତାର କାଠରେ ନିର୍ମିତ ଦୁଇଫାଳ କବାଟ ଦ୍ୱାର ମୁହଁରେ ଲାଗିଅଛି । ସିଂହଦ୍ୱାରପରି ଏହାର ମଧ୍ୟ ଗୋଟିଏ ଗୁମୁଟ ଅଛି । ଏହି ଗୁମୁଟର ଓସାର ପ୍ରାୟ ୧୬ ଫୁଟ । ଦ୍ୱାରଦେଶର କାନ୍ଥରେ ପଥରରେ ନିର୍ମିତ ନବଗ୍ରହ ମୂର୍ତ୍ତି ଖୋଦିତ ହୋଇଅଛି । ଏହି ନବଗ୍ରହଙ୍କ ଉପରେ ଏକ ନୃତ୍ୟରତ ଗଣେଶ ମୂର୍ତ୍ତି ବିଦ୍ୟମାନ । ଗୁମୁଟର ଭିତର କାନ୍ଥରେ ଶ୍ରୀକୃଷ୍ଣଙ୍କର ଲୀଳା ସମ୍ପର୍କୀୟ ମୂର୍ତ୍ତି ରହି ଅତ୍ୟନ୍ତ ଶୋଭାବର୍ଦ୍ଧନ କରୁଅଛି । ଏହାଛଡ଼ା ସେଠାରେ ଦେଖିବାକୁ ମିଳିଥାଏ ପୂର୍ଣ୍ଣକୁମ୍ଭ । ମେଘନାଦ ପାଚେରିଠାରୁ କୂର୍ମ ବେଢ଼ା ମଧ୍ୟରେ ଥିବା ଦୂରତା ଅନ୍ୟ ସବୁଦ୍ୱାରରେ ସମାନ ଥିବାବେଳେ,

ଏଠାରେ କମ୍ ଦେଖିବାକୁ ମିଳେ । ଏହି ଗୁମୁଟକୁ ଅତିକ୍ରମ କରି ଶ୍ରୀମନ୍ଦିରକୁ ଆସିଲା ବେଳେ ଦକ୍ଷିଣରେ ଏହି ଦ୍ୱାରଟି ହେଉଅଛି ବୈରାଗ୍ୟର ପ୍ରତୀକ । ପ୍ରଭୁଙ୍କର ଉପବନକୁ ଏକ ବାଟ ଅଛି । ଏହି ଉପବନରେ ରହିଅଛି ବିଭିନ୍ନ ରଙ୍ଗବେରଙ୍ଗର ସୁଗନ୍ଧ ଯୁକ୍ତ ଫୁଲ ଗଛ । ଯଥା ମଲ୍ଲୀ, ଜୁଇ, ସେବତୀ, ରଜନୀଗନ୍ଧା ଇତ୍ୟାଦି ।

## ଉତ୍ତରଦ୍ୱାର



ଏହିଦ୍ୱାରକୁ ଚେମେଣିଦ୍ୱାର ବା ହାତୀ ଦ୍ୱାର କୁହାଯାଇଥାଏ । ଏହିଦ୍ୱାର ଦେଇ କେବଳ ତାନ୍ତ୍ରିକ ଓ କାପାଳିକମାନେ ପ୍ରବେଶ କରିବାର ବିଧି ଅଛି । ସଦାସର୍ବଦା ଏହାର ଗୁମୁଟରେ ଅଶେଷ ଚେମେଣି ରହିଥାନ୍ତି । ତେଣୁ ଏହାକୁ ଚେମେଣିଦ୍ୱାର ବୋଲି କୁହାଯାଇଥାଏ । ଏଥିପାଇଁ ଏକ ଚେମେଣି ଉପାଖ୍ୟାନ ଅଛି । ସେମାନଙ୍କ ରାବରେ ଏହିସ୍ଥାନଟି ପ୍ରକମ୍ପିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ଗନ୍ଧ ଯାତ୍ରୀମାନଙ୍କୁ ବ୍ୟଥିତ କରାଇଥାଏ । ଯଦିଓ ଏହାର ନାମ ହାତୀଦ୍ୱାର କିନ୍ତୁ ଦ୍ୱାର ସମ୍ମୁଖରେ ହାତୀର ମୂର୍ତ୍ତି ନାହିଁ । କିନ୍ତୁ  ଏହାର ଗୁମୁଟକୁ ଅତିକ୍ରମ କରି ଗଲେ ଅର୍ଥାତ୍ କୂର୍ମଦ୍ୱାର ସମ୍ମୁଖରେ ଦୁଇଟି ହାତୀମୂର୍ତ୍ତି ଦେଖିବାକୁ ମିଳେ । ଉତ୍ତର ଦ୍ୱାରଦେଶର ଉପର ଭାଗରେ ନବଗ୍ରହ ମୂର୍ତ୍ତିମାନ ଖଚିତ ହୋଇଅଛି । ଶ୍ରୀକୃଷ୍ଣଙ୍କର ବଂଶୀବାଦକ ରୂପ ଶୋଭା ପାଉଅଛି । ପାର୍ଶ୍ୱରେ ଅଭିସାରିକାର ଅଙ୍ଗ ଅବୟବ, ଶାଳଭଂଜିକା, ଅଳସା ଓ ଦର୍ପଣୀ ପ୍ରଭୃତି ଶୋଭା ପାଉଛନ୍ତି । ଦୁଇବାହୁଧାରୀ ମା'ଝାଡ଼େଶ୍ୱରୀଙ୍କର ମୂର୍ତ୍ତି ପୂଜା ପାଆନ୍ତି । ସେ ମା'ଦୁର୍ଗାଙ୍କଦ୍ୱାର ସଂହିତା ମହିଷାସୁର ସମର କଳାରେ ସୃଷ୍ଟି ହୋଇଥିବା ବହୁଶକ୍ତିରୂପିଣୀ ନାରୀମାନଙ୍କ ମଧ୍ୟରୁ ଜଣେ । ପାହାଚ ଅତିକ୍ରମ କରି ଉପରକୁ ଗଲେ କୂର୍ମବେଢ଼ା ପଡ଼ିଥାଏ । କୂର୍ମବେଢ଼ାର ପୂବରୁ ଦକ୍ଷିଣରେ ଏକ ପଥ ପବିତ୍ର କୋଇଲି ବୈକୁଣ୍ଠକୁ ପଡ଼ିଥିବା ବେଳେ ବାମ ପର୍ଶ୍ୱରେ ଏକ ପଥ ଆନନ୍ଦବଜାରକୁ ପଡ଼ିଅଛି । ଏହାଛଡ଼ା ପାହାଚଗୁଡ଼ିକର ପାର୍ଶ୍ୱଦେଶରେ ମା'ଶୀତଳା ଠାକୁରାଣୀ, ମା'ସନ୍ତୋଷୀ ମନ୍ଦିର ଓ ପାତାଳଫୁଟା ଶ୍ରୀଐଶାନେଶ୍ୱର ମହାଦେବଙ୍କ ମନ୍ଦିର ମାନ ରହିଅଛି ।

ଏହି ଦ୍ୱାର ହେଉଛି ଐଶ୍ୱର୍ଯ୍ୟର ପ୍ରତୀକ ।

# ଦକ୍ଷିଣଦ୍ୱାର



ଦକ୍ଷିଣଦ୍ୱାରକୁ ଅଶ୍ୱଦ୍ୱାର ବୋଲି କୁହାଯାଏ । ଏହିଦ୍ୱାର ଦେଇ ରାଜାମହାରାଜାମାନେ ଶ୍ରୀମନ୍ଦିର ଭିତରକୁ ପ୍ରବେଶ କରିବାର ବିଧି ଅଛି । ସର୍ବସାଧାରଣ ରାସ୍ତାଠାରୁ ଏହିଦ୍ୱାର ସମ୍ମୁଖକୁ ଯିବାପାଇଁ ମଝିରେ ପାଞ୍ଚୋଟି ପାହାଚ ଅଛି । ଦ୍ୱାର ସମ୍ମୁଖସ୍ଥ ଦୁଇପାର୍ଶ୍ୱରେ ଦୁଇଟି ବିରାଟକାୟ ଘୋଡ଼ାମୂର୍ତ୍ତି ବିଦ୍ୟମାନ । ଏହି ଘୋଡ଼ାଦ୍ୱୟ ଉପରେ ଯେଉଁ ବୀର ପୁଙ୍ଗବମାନେ ବସିଛନ୍ତି ସେମାନେ ହେଲେ ପ୍ରଭୁ ଶ୍ରୀଜଗନ୍ନାଥ ଓ ପ୍ରଭୁ ଶ୍ରୀବଳଭଦ୍ର ବୋଲି କିମ୍ବଦନ୍ତୀ କହେ । କାଞ୍ଚି ଯୁଦ୍ଧ ବିଜୟ ପରେ ଏହି ଦୁଇ ଭାଇଙ୍କର ମୂର୍ତ୍ତି ନିର୍ମାଣ ହୋଇ ବସିଥିବାରୁ, ଏହି ଦ୍ୱାରକୁ ମଧ୍ୟ କାଞ୍ଚିବିଜୟ ଦ୍ୱାର ବୋଲି କୁହାଯାଏ । ଗୁମୁଟ ବା ମୁଖଶାଳା ଅତ୍ୟୁଚ୍ଚ ଅଟେ । ଏଥିରେ ୨୫ଫୁଟ ଉଚ୍ଚତାର କାଠରେ ନିର୍ମିତ ଦୁଇଫାଳ କବାଟ ଲାଗିଅଛି । ଗୋଲାକାର ବିରାଟ ବିରାଟ ପିତ୍ତଳ ଗୋବସବୁ କବାଟରେ ଲାଗିଅଛି । ଏହି ଗୁମୁଟରେ ମଧ୍ୟ ଘେରାକବାଟ ଅଛି । ଗୁମୁଟର ଡାହାଣପଟ କାନ୍ଥରେ ପ୍ରାୟ ୧୦ଫୁଟ୍‌ର ମୁଗୁନି ପଥରରେ ନିର୍ମିତ ଶ୍ରୀଗଣେଶ ମୂର୍ତ୍ତିମାନ ଖଚିତ ହୋଇଅଛି । ବାମପଟ କାନ୍ଥରେ, ଦୁଇଫୁଟ ଉଚ୍ଚତା ଶ୍ରୀହନୁମାନ ମୂର୍ତ୍ତି ରହିଅଛି । ଏତଦ୍‌ବ୍ୟତୀତ ଉଭୟପାର୍ଶ୍ୱ କାନ୍ଥରେ ରହିଛି ଶଙ୍ଖ ଓ ପ୍ରଭୁ ଶ୍ରୀକୃଷ୍ଣଙ୍କର ବାଲ୍ୟ ସମୟର କେତେକ ପ୍ରତିମା । ଗୁମୁଟକୁ ଅତିକ୍ରମ କରି ଭିତରକୁ ପ୍ରବେଶ କଲେ ପଡ଼ିଥାଏ ପାହାଚମାନ । ଏହି ପାହାଚଗୁଡ଼ିକର ଉଭୟ ପାର୍ଶ୍ୱରେ ରହିଅଛି ଅନେକ ଦେବଦେବୀଙ୍କ ମନ୍ଦିର, ଯାହାକି ସୃଷ୍ଟି କରୁଅଛି ଐଶ୍ୱର୍ଯ୍ୟପୁରୀର ପରିସର ।

ଏହିଦ୍ୱାର ହେଉଛି ଜ୍ଞାନର ପ୍ରତୀକ ।

## ଅନ୍ୟଦୁଇଟି ଦ୍ୱାର (ଟିକିରା ଗୋହିରୀ ଓ କାଠ ଶିଢ଼ି)

ଏହି ଦ୍ୱାର ଦୁଇଟି ପ୍ରାୟ ଲୋକଲୋଚନକୁ ଆସିନାହିଁ । ମେଘନାଦ ପାଚେରିର ପୂର୍ବ ଓ ଉତ୍ତରଦିଗରେ ଅର୍ଥାତ୍ ସ୍ନାନମଣ୍ଡପ ଓ ଚାହାଣି ମଣ୍ଡପ ନିକଟରେ ଏକ ଦ୍ୱାରର ସୂଚନା ମିଳେ । ବର୍ତ୍ତମାନ ଏହି ଦ୍ୱାରଟି ନିବୁଜ ହୋଇ ରହିଅଛି । ଏହି ପଥକୁ "ଟିକିରାଗୋହିରୀ"ଦ୍ୱାର ବୋଲି କୁହାଯାଏ । କଥିତ ଅଛି ଯେ ମନ୍ଦିର ଭିତରକୁ ଏହିଦ୍ୱାର ଫିଟାଇଲେ ରକ୍ତପାତ ଓ ଗଣ୍ଡଗୋଳ

ହେବାର ଆଶଙ୍କା ରହିଛି । ଏହି ଦ୍ୱାର ଆନନ୍ଦବଜାରକୁ ରହିଅଛି । ଏହା ବନ୍ଦଥିବାରୁ ଏହି ଦ୍ୱାରର କିଛି ଗୁରୁତ୍ୱ ନାହିଁ ।

ଅନ୍ୟ ଗୋଟିଏ ପଥ ମଧ୍ୟ ଅଛି । ମେଘନାଦ ପାଚେରିର ଦକ୍ଷିଣପଶ୍ଚିମ ଦିଗରେ ଏକ ସବୁଦିନିଆ କାଠଶିଡ଼ିର ବ୍ୟବସ୍ଥା ଅଛି । ମା'ବିମଳାଙ୍କ ନୀତି ସମୟରେ ଏହିଦ୍ୱାର କାମରେ ଲାଗେ । ମା'ଦୁର୍ଗାଙ୍କର ପୂଜାର ସପ୍ତମୀ, ଅଷ୍ଟମୀ ଓ ନବମୀ ଦିନ ମଧ୍ୟରାତିରେ ଏହିଦ୍ୱାର ଦେଇ ଦୁଇଟି ଲେଖାଏଁ ଛାଗ ଅଣାଯାଇଥାଏ ।

## କୂର୍ମ ପାଚେରିରେ ଥିବା ଦ୍ୱାର

ମେଘନାଦ ପାଚେରି ପରି କୂର୍ମପାଚେରିରେ ମଧ୍ୟ ୬ଟି ଦ୍ୱାର ଅଛି । ୬ଟି ଦ୍ୱାର ମଧ୍ୟରୁ ୪ଟି ଦ୍ୱାର ଯଥା ସିଂହଦ୍ୱାର, ବାଘଦ୍ୱାର, ହାତୀଦ୍ୱାର, ଓ ଅଶ୍ୱଦ୍ୱାରର ସମ୍ମୁଖରେ ଥିବାବେଳେ ଅନ୍ୟ ୨ଟି ଦ୍ୱାର ବାଇଶ ପାହାଚର ଦୁଇପାର୍ଶ୍ୱରେ ରହିଛି ।

## ପୂର୍ବ କୂର୍ମଦ୍ୱାର

ଶ୍ରୀମନ୍ଦିରର ସିଂହଦ୍ୱାର ଠାରୁ ବାଇଶ ପାହାଚ ଅତିକ୍ରମ କରିବା ପରେ କୂର୍ମବେଢ଼ାରେ ଯେଉଁ ଦ୍ୱାରଟି ପଡ଼େ ତାହାକୁ ପୂର୍ବକୂର୍ମଦ୍ୱାର କୁହାଯାଏ । ଏହିଦ୍ୱାରରେ କେବଳ ଗୋଟିଏ ଗୁମ୍ଫୁଟ ଅଛି, ଯାହାକି ଅନ୍ୟସବୁ କୂର୍ମଦ୍ୱାରରେ ନ'ଥାଏ । ଏହି ଗୁମ୍ଫୁଟିଟି ଅତ୍ୟନ୍ତ ସୂକ୍ଷ୍ମ କାରୁକାର୍ଯ୍ୟରେ ପୂର୍ଣ୍ଣ । ଏହାକୁ ଅତିକ୍ରମ କରି ଶ୍ରୀମନ୍ଦିରକୁ ପ୍ରବେଶକଲେ ସମ୍ମୁଖରେ ପଡ଼ିଥାଏ ଭୋଗମଣ୍ଡପ ବା ଭଅାଁଣ୍ଡ ଘର । ଦକ୍ଷିଣ ପାର୍ଶ୍ୱରେ ପଡ଼ିଥାଏ କେତେଗୁଡ଼ିଏ ଦେବଦେବୀ ମନ୍ଦିର । କୂର୍ମ ବେଢ଼ାରେ ଥିବା ସମସ୍ତ ଦ୍ୱାର ମଧ୍ୟରେ ଏହି ଦ୍ୱାରଟି ବିଶେଷ ଗୁରୁତ୍ୱ ବହନ କରେ । କାରଣ ଏହିଦ୍ୱାର ଦେଇ ପ୍ରତିଦିନ ଅଗଣିତ ଭକ୍ତସମାଜ ଓ ସାଧୁସନ୍ଥମାନେ ଅତ୍ୟନ୍ତ ବ୍ୟାକୁଳ ଚିତ୍ତରେ ଭିତର ବେଢ଼ାରେ ପ୍ରବେଶ କରି ଅଖିଳବ୍ରହ୍ମାଣ୍ଡର ପତି ତଥା ବିଶ୍ୱନିୟନ୍ତା ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥାନ୍ତି । ଆଉ ମଧ୍ୟ ଏହି ଦ୍ୱାରଟି କଳାମୁଗୁନି ପଥରରେ ସୂକ୍ଷ୍ମ କାରୁକାର୍ଯ୍ୟରେ ପୂର୍ଣ୍ଣହୋଇ ଦର୍ଶକମାନଙ୍କ ମନକୁ ମୁଗ୍ଧ କରିଥାଏ ।

## ପଶ୍ଚିମ କୂର୍ମଦ୍ୱାର

ପଶ୍ଚିମଦ୍ୱାର ତଥା ବାଘଦ୍ୱାରଠାରୁ କେତେଗୁଡ଼ିଏ ପାହାଚ ଅତିକ୍ରମ କରିଗଲେ ପଡ଼ିଥାଏ ପଶ୍ଚିମ କୂର୍ମଦ୍ୱାର । ଏହିଦ୍ୱାରଟି ଦେଖିବାକୁ ସାଧାସିଧା ଓ ଏଥିରେ ଗୁମ୍ଫୁଟ ଘର ନାହିଁ । ଏହି ଦ୍ୱାରକୁ ଅତିକ୍ରମ କରି ଆଗକୁ ଗଲେ ସମ୍ମୁଖରେ ପଡ଼ିଥାଏ ଶ୍ରୀମନ୍ଦିରରେ ଥିବା ପ୍ରଧାନ ମନ୍ଦିରର ପଛଭାଗ । ଏହିଦ୍ୱାର ଡାହାଣ ପାର୍ଶ୍ୱରେ ଚତୁର୍ଧାମ ମନ୍ଦିର ଅବସ୍ଥିତ । ଏହା ଶ୍ରୀମଦ୍ ଭାଗବତ

ଚର୍ଚ୍ଚାର ଆସ୍ଥାନ । ଏଠାରେ ପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଦ୍ରିନାଥ, ଶ୍ରୀରାମନାଥ ଓ ଶ୍ରୀଦ୍ୱାରିକାନାଥଙ୍କ ମୂର୍ତ୍ତି ପୂଜା ପାଆନ୍ତି । ବାମପାର୍ଶ୍ୱରେ କାନପତା ପ୍ରଭୁ ହନୁମାନ ମୂର୍ତ୍ତି ବିଦ୍ୟମାନ ।

## ଉତ୍ତର କୂର୍ମଦ୍ୱାର

ଉତ୍ତରଦ୍ୱାର ବା ବେମେଣି ଦ୍ୱାରଠାରୁ କେତେଗୁଡ଼ିଏ ପାହାଚ ଅତିକ୍ରମ କରି ଶ୍ରୀମନ୍ଦିର ଆଡ଼କୁ ଗଲେ ଉତ୍ତର କୂର୍ମଦ୍ୱାର ପଡ଼ିଥାଏ । ଏହିଦ୍ୱାର ପୂର୍ବରୁ ଗୋଟିଏ ପଥ ପଶ୍ଚିମ ଦିଗରେ କୋଇଲି ବୈକୁଣ୍ଠକୁ ଓ ପୂର୍ବଦିଗରେ ଅନ୍ୟ ଗୋଟିଏ ପଥ ଆନନ୍ଦବଜାରକୁ ପଡ଼ିଅଛି । ଏହି ଦ୍ୱାରର ଦୁଇପାର୍ଶ୍ୱରେ ୮ଫୁଟ ଉଚ୍ଚତାର ଦୁଇଟି ହସ୍ତୀ ଭାସ୍କର୍ଯ୍ୟ ଦଣ୍ଡାୟମାନ । ତାଙ୍କ ଉପରେ ମାହୁନ୍ତ ବସି ହସ୍ତୀ ଦୁଇଟିର ଶୋଭାକୁ ଦ୍ୱିଗୁଣିତ କରୁଅଛି । ଏହି ଦ୍ୱାର ଦେଶରେ ଅନେକ ସୂକ୍ଷ୍ମ କାରୁକାର୍ଯ୍ୟମାନ ଖଚିତ ହୋଇ ଅତ୍ୟନ୍ତ ସୌନ୍ଦର୍ଯ୍ୟ ମଣ୍ଡନ କରୁଅଛି । ଯଦିଓ ଏହିଦ୍ୱାରରେ ଗୁମୁଟ ଘର ନାହିଁ, ତଥାପି ଦ୍ୱାରଦେଶଟିର ଶୋଭା ଦର୍ଶକମାନଙ୍କ ମନକୁ ସ୍ପର୍ଶ କରି ଅତ୍ୟନ୍ତ ଆନନ୍ଦ ଦେଉଅଛି । ଏହାକୁ ଅତିକ୍ରମ କରି ଭିତର ବେଢ଼ାକୁ ପ୍ରବେଶ କଲେ ସମ୍ମୁଖରେ ପଡ଼ିଥାଏ ସଂକୀର୍ତ୍ତନ ଚକଡ଼ା । ଡାହାଣପଟେ ପଡ଼ିଥାଏ ପାତାଳେଶ୍ୱର ମନ୍ଦିର ଓ ବାମପାର୍ଶ୍ୱରେ ପଡ଼ିଥାଏ ପାଦପଦ୍ମ । ଭକ୍ତ ଶ୍ରୀଚୈତନ୍ୟଙ୍କ ପାଦଚିହ୍ନ ଯାହା ଅତୀତରେ ଗରୁଡ଼ଙ୍କ ପଛରେ ଥିଲା । ପରବର୍ତ୍ତୀ ସମୟରେ ସେଠାରୁ ସ୍ଥାନାନ୍ତର ହୋଇ ଏହି ସ୍ଥାନରେ ରଖାଯାଇଅଛି ।

## ଦକ୍ଷିଣ କୂର୍ମଦ୍ୱାର

ଦକ୍ଷିଣଦ୍ୱାର ବା ଅଶ୍ୱ ଦ୍ୱାରଠାରୁ କିଛି ପାହାଚ ଅତିକ୍ରମ କରିବାପରେ ପଡ଼ିଥାଏ ଦକ୍ଷିଣ କୂର୍ମଦ୍ୱାର । ଏହି ପାହାଚଗୁଡ଼ିକର ଦୁଇପାର୍ଶ୍ୱରେ ପଡ଼ିଥାଏ କେତେଗୁଡ଼ିଏ ଦେବଦେବୀଙ୍କ ମନ୍ଦିର । ଏହିଦ୍ୱାରରେ ଗୁମୁଟଘର ନାହିଁ ଓ ଦେଖିବାକୁ ସାଦାସିଧା । ଏହିଦ୍ୱାର ଅତିକ୍ରମ କରି ଭିତର ବେଢ଼ାକୁ ପ୍ରବେଶ କଲେ ପୂର୍ବଦିଗ ଅର୍ଥାତ ଦ୍ୱାରର ଦକ୍ଷିଣପାର୍ଶ୍ୱରେ ପଡ଼ିଥାଏ ଉଡ଼ନ୍ତା ଶ୍ରୀହନୁମାନ ମନ୍ଦିର । ଉଡ଼ନ୍ତା ହନୁମାନ ଏହି ଦ୍ୱାରର ଦ୍ୱାରପାଳ । ସେହିପରି ପଶ୍ଚିମଦିଗରେ ଅର୍ଥାତ୍ ବାମ ପାର୍ଶ୍ୱରେ ପଡ଼ିଥାଏ ଶ୍ରୀଅନନ୍ତବାସୁଦେବ ମନ୍ଦିର । ମନ୍ଦିରଠାରୁ ମୁଖଶାଳା ବଡ଼ । ମନ୍ଦିରର ମୁଖ ପଶ୍ଚିମକୁ । ଏହି ମନ୍ଦିରଟି ବହୁପ୍ରାଚୀନ ।

## କୂର୍ମବେଢ଼ାର ପଞ୍ଚଦ୍ୱାର

ଏହି ଦ୍ୱାରଟି ବାଇଶ ପାହାଚ ଅତିକ୍ରମ କରି ପୂର୍ବକୂର୍ମ ଦ୍ୱାରର ଡାହାଣ ପାର୍ଶ୍ୱରେ ଆନନ୍ଦବଜାରକୁ ପଡ଼ିଅଛି । ଭକ୍ତ ଓ ଦର୍ଶକମାନେ ଏହି ଦ୍ୱାର ଦେଇ ଆନନ୍ଦବଜାରକୁ ପ୍ରବେଶ କରି

ଓ ଆନନ୍ଦବଜାରରୁ ଭିତର ବେଢ଼ାର ପାଟଅଗଣାକୁ ଯାଇଥାନ୍ତି । ଏହି ଦ୍ୱାର ଦେଶର ଦୁଇପାର୍ଶ୍ୱରେ ଦୁଇଟି ସିଂହ ମୂର୍ତ୍ତି ବିଦ୍ୟମାନ । ରଥଯାତ୍ରା ଓ ସ୍ନାନ ପୂର୍ଣ୍ଣିମାରେ ଶ୍ରୀପ୍ରଭୁମାନେ ଏହି ବାଟ ଦେଇ ପହଣ୍ଡିବିଜେ କରିଥାନ୍ତି ଓ ବାହୁଡ଼ା ସମୟରେ ଏହି ଦ୍ୱାରଦେଇ ନୀଳାଦ୍ରିବିଜେ କରିଥାନ୍ତି । ଏତଦ୍‌ବ୍ୟତୀତ ସମସ୍ତ ବର୍ଗର ଭକ୍ତ ଶ୍ରୀପ୍ରଭୁମାନଙ୍କୁ ଦର୍ଶନ କରିବା ପରେ ଏହି ଦ୍ୱାରଦେଇ ଆନନ୍ଦବଜାରକୁ ମହାପ୍ରସାଦ ସେବନ କରି ଏହି ପଞ୍ଚମ କୂର୍ମଦ୍ୱାରରେ ପ୍ରତ୍ୟାବର୍ତ୍ତନ କରିଥାନ୍ତି ।

## କୂର୍ମବେଢ଼ାର ଷଷ୍ଠଦ୍ୱାର

ଏହିଦ୍ୱାରଟି ବାଇଶପାହାଚ ଅତିକ୍ରମ କରି କୂର୍ମ ବେଢ଼ାଦ୍ୱାରର ବାମପାର୍ଶ୍ୱରେ ରୋଷଶାଳାକୁ ପଡ଼ିଅଛି । ରୋଷଶାଳାରୁ ଭିତର ବେଢ଼ାକୁ ପଡ଼ିଅଛି । ରୋଷଶାଳା ଦେଇ ପଡ଼ିଥିବା ରାସ୍ତାଟି ସର୍ବସାଧାରଣ ପାଇଁ ନିଷିଦ୍ଧ । କାରଣ ମହାପ୍ରଭୁଙ୍କ ଭୋଗପାଇଁ ରନ୍ଧନ ହୋଇଥିବା ସମସ୍ତ ପ୍ରସାଦ ଏହି ଦ୍ୱାର ଦେଇ ବୁହାଯାଇଥାଏ । କେବଳ ସେବାୟତଙ୍କ ପାଇଁ ଏହି ଦ୍ୱାର ପ୍ରବେଶ କରିବାପାଇଁ ଉଦ୍ଦିଷ୍ଟ ।

ଏହିସବୁ ଦ୍ୱାରଦେଇ ବାହାରବେଢ଼ା ଓ ଭିତରବେଢ଼ାକୁ ପ୍ରବେଶ କରିହୁଏ ସିନା, ଗର୍ଭଗୃହରେ ଥିବା ଶ୍ରୀପ୍ରଭୁମାନଙ୍କୁ ଦର୍ଶନ କରିହୁଏ ନାହିଁ । ଶ୍ରୀପ୍ରଭୁଙ୍କୁ ଦର୍ଶନ କରିବାକୁ ହେଲେ ଆଉ କେତୋଟି ଦ୍ୱାରଦେଇ ଯିବାକୁ ପଡ଼ିଥାଏ । ସେହିସବୁ ଦ୍ୱାର ସମ୍ପର୍କରେ ନିମ୍ନରେ ସୂଚନା ଦିଆଯାଉଅଛି ।

## ସାତ ପାହାଚଦ୍ୱାର

ସାତ ପାହାଚଦ୍ୱାରଟି ପାଟଅଗଣାରୁ ଜଗମୋହନ କିମ୍ବା ନାଟମଣ୍ଡପକୁ ପଡ଼ିଅଛି । ଏହା ଶ୍ରୀମନ୍ଦିରର ଉତ୍ତରଦିଗରେ ପଡ଼ିଥାଏ । ଏହି ଦ୍ୱାରରେ ୭ଟି ପାହାଚ ଥିବାରୁ ଏହାକୁ ସାତପାହାଚ ଦ୍ୱାର କୁହାଯାଏ । ରଥଯାତ୍ରାରେ ଶ୍ରୀପ୍ରଭୁମାନେ ପହଣ୍ଡିହୋଇ ରତ୍ନସିଂହାସନରୁ ଆସି ଏହି ଦ୍ୱାର ଦେଇ ରଥକୁ ଯାଇଥାନ୍ତି ଓ ୯ଦିନ ପରେ ବାହୁଡ଼ି ଆସିଥାନ୍ତି । ସେହିପରି ସ୍ନାନଯାତ୍ରାରେ ଶ୍ରୀପ୍ରଭୁମାନେ ଏହି ଦ୍ୱାର ଦେଇ ସ୍ନାନମଣ୍ଡପକୁ ବିଜେ କରିଥାନ୍ତି ଓ ସ୍ନାନ ପରେ ବାହୁଡ଼ି ଆସିଥାନ୍ତି । ଦୈନିକ ଅଗଣିତ ଭକ୍ତ, ସାଧୁସନ୍ଥ, ତୀର୍ଥଯାତ୍ରୀ ଓ ଦର୍ଶକବୃନ୍ଦ ଏହି ଦ୍ୱାର ଦେଇ ମହାପ୍ରଭୁଙ୍କୁ ଦର୍ଶନ କରିବାପାଇଁ ପ୍ରବେଶ କରିଥାନ୍ତି ଓ ପ୍ରସ୍ଥାନ କରିଥାନ୍ତି । ଏହି ଦ୍ୱାରକୁ ଅତିକ୍ରମକରି ଜଗମୋହନକୁ ପ୍ରବେଶକଲେ ଆଗପଡ଼ିଥାଏ ଶ୍ରୀବିଷ୍ଣୁଙ୍କ ବାହନ ପକ୍ଷୀରାଜ ଗରୁଡ଼ । କଥିତ ଅଛି ପ୍ରଭୁ ଶ୍ରୀଦାରୁବିଗ୍ରହଙ୍କୁ ଦର୍ଶନ କରିବା ପୂର୍ବରୁ ଆଗ ପକ୍ଷୀରାଜ ଗରୁଡ଼ଙ୍କୁ ଦର୍ଶନ କଲେ ପୁଣ୍ୟଫଳ

ମିଳେ । ତେଣୁ ସମସ୍ତ ଭକ୍ତମାନେ ପ୍ରଥମେ ଗରୁଡ଼ଙ୍କୁ ପ୍ରଣାମକରି ତଥା ଶ୍ରୀଅଙ୍ଗ ସ୍ପର୍ଶ କରିଥାନ୍ତି ଓ ତତ୍‌ପରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥାନ୍ତି ।

## ଜୟବିଜୟଦ୍ୱାର

ଜଗମୋହନ ତଥା ନାଟମଣ୍ଡପରୁ ବାହାର ପୋଖରିଆ ତଥା ମୁଖଶାଳାରୁ ଯିବାକୁ ହେଲେ ଯେଉଁଦ୍ୱାର ଦେଇ ଯିବାକୁ ହୁଏ, ସେହି ଦ୍ୱାରର ନାମ ଜୟବିଜୟ ଦ୍ୱାର । ବୈକୁଣ୍ଠପୁରୀର ସଜାଗ ପ୍ରହରୀ ତଥା ରତ୍ନସିଂହାସନର ରକ୍ଷକ ଜୟବିଜୟ ମୂର୍ତ୍ତି ଦ୍ୱୟ ବଦଳରେ ଚିତ୍ର ଏହି ଦ୍ୱାର ସମ୍ମୁଖରେ ଖଚିତ ହୋଇଅଛି । ତେଣୁ ଏହି ଦ୍ୱାରକୁ ଜୟବିଜୟ ଦ୍ୱାର କୁହାଯାଏ । ଏହାଛଡ଼ା ଏହିଦ୍ୱାରର ଦୁଇ ପାର୍ଶ୍ୱରେ ଗଜପତି ମହାରାଜାଙ୍କର କେତେକ ଶିଳାଲେଖ ଅଛି । ସୂକ୍ଷ୍ମାତିସୂକ୍ଷ୍ମ କାରୁକାର୍ଯ୍ୟ ବିମଣ୍ଡିତ ଏହି ଦ୍ୱାର ଉତ୍କଳୀୟ ସ୍ଥାପତ୍ୟ କଳାର ଏକ ଶ୍ରେଷ୍ଠ ନିଦର୍ଶନ ।

## କଳାହାଟଦ୍ୱାର

ବାହାର ଗମ୍ଭୀରା ବା ମୁଖଶାଳା ଓ ରତ୍ନସିଂହାସନର ମଧ୍ୟବର୍ତ୍ତୀ ସ୍ଥାନରେ ଥିବା ଦ୍ୱାରକୁ କଳାହାଟ ଦ୍ୱାର କୁହାଯାଏ । ଭକ୍ତମାନେ ଏହି ଦ୍ୱାର ଅତିକ୍ରମ କରି ରତ୍ନସିଂହାସନକୁ ଯାଇ ଶ୍ରୀପ୍ରଭୁମାନଙ୍କୁ ଦର୍ଶନ କରିଥାନ୍ତି । ସର୍ବସାଧାରଣ ଦର୍ଶନ ବା ସାହାଣମେଲା ବ୍ୟତୀତ ଅନ୍ୟ ସମୟରେ ଏଠାକୁ ଯାଇହୁଏ ନାହିଁ । ଏହି ଦ୍ୱାରର ବାମପାର୍ଶ୍ୱରେ ଏକ ମଣ୍ଡପ ବା ପିଣ୍ଡି ଅଛି । ଏହାକୁ ଅଣସର ପିଣ୍ଡି କୁହାଯାଏ । ଭକ୍ତମାନେ ଭିତର ପୋଖରିଆ ତଥା ମୁଖଶାଳାରୁ ବାହାରକୁ ଯିବାପାଇଁ ଦକ୍ଷିଣ ଦିଗରେ ଏକ ଦ୍ୱାର ଅଛି ।

## ଧୁକୁଡ଼ିଦ୍ୱାର

ଭିତର କାଠକଡ଼ରେ ବାମଭାଗରେ ଭିତରକୁ ଯିବାପାଇଁ ଏକ ବଡ଼ ରାସ୍ତା ଅଛି । ଏହାକୁ ଧୁକୁଡ଼ି ଦ୍ୱାର କୁହାଯାଏ ।

## ବେହରଣଦ୍ୱାର

ବାହାର ପୋଖରିଆରୁ ଦକ୍ଷିଣ ଦିଗକୁ ବାହାରିବା ପାଇଁ ଏହି ଦ୍ୱାର ରହିଛି । ମହାପ୍ରଭୁଙ୍କ ଆଜ୍ଞାମାଳ ପାଇ ଦେବଦେବୀମାନେ ଏହି ଦ୍ୱାର ଦେଇ ନୀତି ସମ୍ପାଦନ ପାଇଁ ଯାଇଥାନ୍ତି । ଏହି ଦ୍ୱାରକୁ ଲାଗି ଦକ୍ଷିଣୀ ଘର ରହିଛି । ଏହି ଘରେ ବିଜେପ୍ରତିମାମାନେ ପୂଜିତ ହୋଇଥାନ୍ତି । ବାହାର ନୀତି ପାଇଁ ଦେବଦେବୀମାନେ ଯାଉଥିବାରୁ ଏହା ବେହରଣଦ୍ୱାର ଭାବରେ ପ୍ରସିଦ୍ଧ ।

* * * * * * *

# ଶ୍ରୀକ୍ଷେତ୍ର ଓ ମା'ବିମଳା



ବହୁପୁରାଣ ଯୁଗରୁ ପବିତ୍ର ଓଡ଼ିଶା ଭୂମିରେ ଶ୍ରୀପୁରୁଷୋତ୍ତମ ପୀଠ ବିଶ୍ୱ ବିଖ୍ୟାତ । ଏହି ପୀଠର କଳା, ସଂସ୍କୃତି ଓ ପରମ୍ପରା ହେଉଛି ଅସୀମ, ଅନନ୍ତ, ଗୂଢ଼ରହସ୍ୟପୂର୍ଣ୍ଣ । ଏହି ପୀଠର ବଡ଼ଠାକୁର ଶ୍ରୀଜଗନ୍ନାଥଙ୍କର ମହିମା ଓ କୈବଲ୍ୟ ବିତରଣ କରିପାରିଛି ସମଗ୍ର ବିଶ୍ୱବାସୀଙ୍କୁ । ଶତ ଶତ ଦେବଦେବୀମାନେ ବିଭିନ୍ନ ମଠ, ମନ୍ଦିର, ମଣ୍ଡପ, ପୀଠ ଓ ତୀର୍ଥସ୍ଥାନଗୁଡ଼ିକ ବିରାଜିତ ଏହି ପୀଠରେ, ଯାହାକି ଜଗନ୍ନାଥ ସଂସ୍କୃତିରେ ମିଶ୍ରଣ ହୋଇ ସୃଷ୍ଟି କରିପାରିଛି ଏକ ମହାନ ଧର୍ମନଦୀ । ଶତ ଶତ ଦେବଦେବୀ ହେଉଛନ୍ତି ସେହି ଧର୍ମନଦୀର ଗୋଟିଏ ଗୋଟିଏ ଶାଖା ଓ ଉପଶାଖା ସଦୃଶ । ଏହି ସବୁ ଉପଶାଖାଗୁଡ଼ିକର ମୂଳ ଲକ୍ଷ୍ୟ ହେଉଛି ମହାସ୍ରୋତରେ ନିଜକୁ ହଜାଇ ଆନନ୍ଦପାଇବା ସଙ୍ଗେ ସଙ୍ଗେ ସମଗ୍ର ମାନବ ଜାତିକୁ ଦୟା ଓ କରୁଣା ବିତରଣ କରିବା । ସେହି ଦେବଦେବୀମାନଙ୍କ ମଧ୍ୟରେ ମା'ବିମଳା ହେଉଛନ୍ତି ଅନ୍ୟତମ । ମା'ବିମଳାଙ୍କ ସହିତ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ଅଛି ନିବିଡ଼ ସମ୍ପର୍କ । ପରସ୍ପର ମଧ୍ୟରେ ଥିବା ସେହି ଅତୁଟ ସମ୍ପର୍କର ମହନୀୟତା ଓ ଗୁଣଗାରିମା ସୃଷ୍ଟି କରିପାରିଛି ସମଗ୍ର ବିଶ୍ୱବାସୀଙ୍କ ହୃଦୟରେ ଭକ୍ତି, ଶ୍ରଦ୍ଧା, ସ୍ନେହ, ସତ୍ୟ, ନ୍ୟାୟ ଓ ବିଶ୍ୱାସର ମହତ୍‌ଗୁଣ । ଯାହାକି ଆଜି ଓଡ଼ିଶା ମଧ୍ୟରେ ସୀମାବଦ୍ଧ ନ'ରହି ବ୍ୟାପି ଯାଇଛି ସମଗ୍ର ବିଶ୍ୱରେ । ସେଥିପାଇଁ ଆଜି ସମଗ୍ର ଓଡ଼ିଶାବାସୀ ଗର୍ବିତ ଓ ଗୌରବାନିତ୍ୱ ।

... ସଚରାଚର ବ୍ରହ୍ମାଣ୍ଡରେ ବହୁଧର୍ମର ଆବିର୍ଭାବ ହୋଇଥିଲେ ମଧ୍ୟ ସେଗୁଡ଼ିକର ପରମ୍ପରା ଓ ସଂସ୍କୃତି ପରସ୍ପର ପରିପନ୍ଥୀ । କେବଳ ଓଡ଼ିଶାମାଟିରେ ବିରାଜିତ ପୁରୀ ଶ୍ରୀକ୍ଷେତ୍ରରେ ସର୍ବଧର୍ମର ସମନ୍ୱୟ ଘଟିଛି । କାରଣ ଏହି ପୀଠର ଅଧିଷ୍ଠାତ୍ରୀ ଦେବୀ ମା'ବିମଳା । ଏହି ପୀଠରେ ଶୈବ, ଶାକ୍ତ, ଗାଣପତ୍ୟ, ସୌର, ବୈଷ୍ଣବ, ବୌଦ୍ଧ, ଜୈନ୍ୟ, ଖ୍ରୀଷ୍ଟଧର୍ମ ଇତ୍ୟାଦି ଧର୍ମର ସମନ୍ୱୟ ଘଟି ସୃଷ୍ଟି କରିପାରିଛି ବିଶ୍ୱମାନବିକତା ତଥା ଐକ୍ୟ, ଶାନ୍ତି, ମୈତ୍ରୀ ଓ ଭାତୃପ୍ରୀତି । ଫଳରେ ଏହି ପୀଠ ହୋଇପାରିଛି, ବିଶ୍ୱବନ୍ଦନୀୟ ଓ ମହାନ୍ ଆଧ୍ୟାତ୍ମିକ ପୀଠ । ଯଦିଓ ଏହି ପୀଠର ଶ୍ରେଷ୍ଠନାୟକ ତଥା ଅଫୁରନ୍ତ ଆଶୀର୍ବାଦର ଭଣ୍ଡାରରୂପେ ଶ୍ରୀଜଗନ୍ନାଥ, କିନ୍ତୁ ପୃଥିବୀର ଶ୍ରେଷ୍ଠ ଆଦିମାତା ରୂପେ ମା'ବିମଳା ହେଉଛନ୍ତି ଅଧିଷ୍ଠାତ୍ରୀ ଦେବୀ ।

ଉତ୍କଳର ଶ୍ରୀକ୍ଷେତ୍ର ଏକ ମହାନ ସର୍ବଧର୍ମ ପୀଠରେ ଉଭୟ ସ୍ତ୍ରୀ ଓ ପୁରୁଷମାନଙ୍କୁ ସମାନ ପ୍ରାଧାନ୍ୟ ଦିଆଯାଇଛି । ଶାକ୍ତ ଉପାସନାର ପରମ୍ପରା ପାଳନର ବିଧିବିଧାନ ଖଞ୍ଜା ଯାଇଅଛି ଏହି ପୀଠରେ । ବହୁଳ ଦୃଷ୍ଟାନ୍ତ ମଧ୍ୟରୁ କୃଷ୍ଣଙ୍କଭଗିନୀ-ସୁଭଦ୍ରା, କୃଷ୍ଣପ୍ରିୟା-ଶ୍ରୀରାଧା, ବିଷ୍ଣୁପ୍ରିୟା-ମହାଲକ୍ଷ୍ମୀ, ଯୋଗମାୟାଙ୍କୁ ବିମଳାରୂପେ ଗ୍ରହଣ କରାଯାଇଥିବା ଶାସ୍ତ୍ରାନୁମୋଦିତ । ତେଣୁ ଯୋଗମାୟା ହେଉଛନ୍ତି, ପରମବୈଷ୍ଣବୀ ଶ୍ରୀନାରାୟଣୀ । ଶ୍ରୀମନ୍ଦିରର ମା'ବିମଳା ହେଉଛନ୍ତି ଯୋଗମାୟା ଭୈରବୀ ଓ ଶ୍ରୀଜଗନ୍ନାଥ ହେଉଛନ୍ତି ଭୈରବ ନାମରେ ପୂଜିତ । ତେଣୁ ଏହି ପୀଠକୁ ମା'ବିମଳା ପୀଠ ବୋଲି କୁହାଯାଏ ।

ଶ୍ରୀକ୍ଷେତ୍ରର ଜଗନ୍ନାଥଙ୍କ ପୀଠରେ ଦେବୀ ସୁଭଦ୍ରାଙ୍କର ଚଳନ୍ତି ପ୍ରତିମା ରୂପେ କ୍ଷେତ୍ରେଶ୍ୱରୀ ମା'ବିମଳାଙ୍କ ପୂଜା ଆରାଧନା କରାଯାଇଥାଏ । ତେଣୁ ସର୍ବଶକ୍ତିମାନ ଶ୍ରୀନାରାୟଣ ରୂପେ ଶ୍ରୀଜଗନ୍ନାଥଙ୍କୁ ଓ ଶକ୍ତିରୂପିଣୀ ନାରାୟଣୀରୂପେ ମା'ବିମଳାଙ୍କୁ ପୂଜା କରାଯାଇଥାଏ । ଏହି କ୍ଷେତ୍ରର କ୍ଷେତ୍ରାଧିପତି ଶ୍ରୀଜଗନ୍ନାଥଙ୍କୁ ରାଜରାଜେଶ୍ୱର ଓ ମା'ବିମଳାଙ୍କୁ ରାଜରାଜେଶ୍ୱରୀ ବୋଲି କୁହାଯାଇଥାଏ ।

ନିଖିଳ ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ପ୍ରଳୟର ମୂଳ ଉତ୍ସ ହେଉଛନ୍ତି ମାତୃରୁପିଣୀ ଶକ୍ତି । ଶ୍ରୀକ୍ଷେତ୍ର ବାସିନୀ ମା'ବିମଳାଙ୍କର ଆବିର୍ଭାବ କେବେ ଓ କିପରି ହୋଇଅଛି ତାହା ବିଭିନ୍ନ ଶାସ୍ତ୍ରପୁରାଣରେ ଭିନ୍ନ ଭିନ୍ନ ମତପୋଷଣ ହୋଇଥିଲେ ମଧ୍ୟ, ଏହା ଚିରନ୍ତନୀ । ପୁରାଣରେ ବର୍ଣ୍ଣିତ ସମଗ୍ର ଭାରତବର୍ଷରେ ୫୧ଟି ଚଣ୍ଡୀପୀଠ ମଧ୍ୟରୁ ଓଡ଼ିଶାରେ ଆଠଟି ଚଣ୍ଡୀପୀଠ ବିଦ୍ୟମାନ । ଏହାକୁ ଓଡ଼ିଶାର ଅଷ୍ଟଚଣ୍ଡୀ ପୀଠ ନାମରେ ଅଭିହିତ କରାଯାଇଅଛି । ଏହି ପୀଠଗୁଡ଼ିକ ହେଲା-କାକଟପୁରର ମା'ମଙ୍ଗଳା, ଝଙ୍କଡ଼ର ମା'ଶାରଳା, ଯାଜପୁରର ମା'ବିରଜା, ତାଳଚେରର ମା'ହିଙ୍ଗୁଳା, ସମ୍ବଲପୁରର ମା'ସମଲେଶ୍ୱରୀ, ବାଙ୍କୀର ମା'ଚର୍ଚ୍ଚିକା, ବାଣପୁରର ମା'ଭଗବତୀ ଓ ପୁରୀ ଶ୍ରୀକ୍ଷେତ୍ରର ମା'ବିମଳା । ଏହି ପୀଠମାନଙ୍କ ମଧ୍ୟରେ ମା'ବିମଳାଙ୍କ ପୀଠଟି ସମଗ୍ର ଭାରତରେ

ଶ୍ରେଷ୍ଠ ଆଧ୍ୟାତ୍ମିକ ପୀଠରେ ମାନ୍ୟତା ଲାଭ କରିଅଛି । କାରଣ ଏହି ପୀଠରେଁ ଆଦ୍ୟ ଦେବତା ଶ୍ରୀଜଗନ୍ନାଥ ଦେବାଧିଦେବ ରୂପେ ସର୍ବଜନାନୁମୋଦିତ ।

ଦେବୀ ପୁରାଣରେ ବର୍ଣ୍ଣିତ ଅଛି ସତ୍ୟଯୁଗରେ ଶ୍ମଶାନବାସୀ ତଥା ଜଗତର ସଂହାରକର୍ତ୍ତା ପ୍ରଭୁ ଶିବଙ୍କ ପତ୍ନୀ ସତୀଙ୍କର ପିତା ଦକ୍ଷପ୍ରଜାପତିଙ୍କ ଯଜ୍ଞରେ କନ୍ୟା ସତୀ ଅପମାନିତ ହୋଇ ଯଜ୍ଞକୁଣ୍ଡରେ ଝାସ ଦେଇଥିଲେ । ସ୍ୱାମୀ ସଦାଶିବ ରାଗ ଜର୍ଜରିତ ହୋଇ ମୃତ ପତ୍ନୀଙ୍କୁ କାନ୍ଧରେ ଧାରଣ କରି ବ୍ରହ୍ମାଣ୍ଡ ଭ୍ରମଣ କରିଥିଲେ । ତାଙ୍କ କୋପରେ ତ୍ରିଭୁବନ ପ୍ରକମ୍ପିତ ହୋଇ ଦେବତାମାନଙ୍କର ଆସନ ଟଳମଳ ହୋଇଥିଲା । ଏହା ଦେଖି ସ୍ୱୟଂ ଶ୍ରୀବିଷ୍ଣୁ ଛଦ୍ମବେଶରେ ତାଙ୍କ ସୁଦର୍ଶନ ଚକ୍ର ମାଧ୍ୟମରେ ମୃତ ସତୀଙ୍କ ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ପକାଇଥିଲେ । ସତୀଙ୍କ ମୃତ ଶରୀରର ଯେଉଁ ଅଂଶ ଯେଉଁ ସ୍ଥାନରେ ପଡ଼ିଥିଲା, ସେହି ସ୍ଥାନଗୁଡ଼ିକ ଗୋଟିଏ ଗୋଟିଏ ଶକ୍ତିପୀଠରୂପେ ପରିଚିତ ହେଲା । ସେହି ଅଂଶରୁ ନାଭି ଅଂଶଟି ଶ୍ରୀକ୍ଷେତ୍ରରେ ପଡ଼ିଥିଲା । ସେହି ନାଭି ଅଂଶରୁ ମା'ବିମଳା ଆବିର୍ଭୂତା ହୋଇଥିଲେ । ସେହିଦିନଠାରୁ ଶ୍ରୀକ୍ଷେତ୍ର ମା'ବିମଳା ପୀଠରୂପରେ ଅଭିହିତ ହୋଇଅଛି ।

ପୌରାଣିକ କିମ୍ବଦନ୍ତୀ ଅନୁସାରେ ମହିଷାସୁର, ଶୁମ୍ଭ, ନିଶୁମ୍ଭ, ଚଣ୍ଡ, ମୁଣ୍ଡ ଓ ରକ୍ତବୀର୍ଯ୍ୟ ଇତ୍ୟାଦି ମହାପ୍ରତାପୀ ଓ ମାୟାବୀ ଅସୁରଙ୍କୁ ନିହତ କରିବାପାଇଁ ସମସ୍ତ ଦେବଦେବୀଙ୍କ ବଳ ଓ ଅସ୍ତ୍ର ଧାରଣ ପୂର୍ବକ ମା'ଦେବୀ ଦୁର୍ଗା ଆବିର୍ଭୂତା ହୋଇଥିଲେ । ବିଭିନ୍ନ ସମୟ ଓ ସ୍ଥାନରେ ଅସୁରମାନଙ୍କୁ ନିପାତ କରିବାପାଇଁ ଦୁର୍ଗତିନାଶିନୀ ଦୁର୍ଗାଙ୍କ ଇଚ୍ଛାରେ କେତେଗୁଡ଼ିଏ ନାରୀଶକ୍ତି ତଥା ଚଣ୍ଡୀ ରୂପରେ ଆବିର୍ଭୂତା ହୋଇଥିଲେ । ସେହି ଚଣ୍ଡୀମାନଙ୍କ ମଧ୍ୟରେ ଶ୍ରୀକ୍ଷେତ୍ରର ଅଧିଶ୍ୱରୀ ଦେବୀ ମା'ବିମଳା ଅନ୍ୟତମ । ସେହିଦିନଠାରୁ ମା'ବିମଳାଙ୍କ ପୀଠ ଚଣ୍ଡୀପୀଠରୂପେ ଅଭିହିତ ହୋଇ ଆସୁଅଛି ।

ପୁରାଣରେ ମା'ଦେବୀ ବିମଳାଙ୍କୁ ପରମ ବୈଷ୍ଣବୀ ବୋଲି କୁହାଯାଇଅଛି । କାରଣ ବିଭୁ ପ୍ରେମକୁ ବୈଷ୍ଣବୀ କୁହାଯାଇଥାଏ । ଏହି ପରମବୈଷ୍ଣବୀ ମା'ବିମଳା ବିଭିନ୍ନ ରୂପ ଓ ସ୍ଥାନରେ ଆବିର୍ଭୂତା ହୋଇ ମଣ୍ଡପମଣ୍ଡନ ପୂର୍ବକ ପୂଜା ପାଇଆସୁଛନ୍ତି । କେଉଁଠାରେ ମା'ଗୌରୀ ତ' ଅନ୍ୟ କେଉଁଠାରେ କାତ୍ୟାୟନୀ, କମଳା, ବିମଳା, ସୁଭଦ୍ରା, ମଙ୍ଗଳା, ଭଗବତୀ ଓ ଚର୍ଚ୍ଚିକା ଇତ୍ୟାଦି । ଶ୍ରୀକ୍ଷେତ୍ର ପୁରୀକୁ ମଧ୍ୟ ଶାକ୍ତକ୍ଷେତ୍ର ବା ତନ୍ତ୍ରକ୍ଷେତ୍ରରୂପେ ଗ୍ରହଣ କରାଯାଇଅଛି । ଏହି ପୀଠର ମୁଖ୍ୟ ଶାକ୍ତ ଦେବୀ ହେଉଛନ୍ତି ମୁକ୍ତିଦାୟିନୀ ମା'ବିମଳା । ବହୁପ୍ରାଚୀନ ଯୁଗରୁ ଅର୍ଥାତ୍ ପ୍ରାଗ୍ ବୈଦିକ ଯୁଗରୁ ଶାକ୍ତଧର୍ମର ଆବିର୍ଭାବ ହୋଇ ଆଜି ମଧ୍ୟ ତା'ର ପ୍ରଭାବ ଦେଖିବାକୁ ମିଳୁଛି । ଭାରତରେ କେତେଗୁଡ଼ିଏ ତନ୍ତ୍ରକ୍ଷେତ୍ର ଦେଖିବାକୁ ମିଳେ । ତନ୍ମଧ୍ୟରୁ ଉଡ୍ଡୀୟାନ ପୀଠ

ଅନ୍ୟତମ । କାଳିକାପୁରାଣରେ କେତେଗୁଡ଼ିଏ ଗବେଷକ 'ଓଡାଖ୍ୟ'କୁ ଓଡ଼ିଶା ବୋଲି କହିଛନ୍ତି । ଡଃ ନବୀନ କୁମାର ସାହୁ ଓଡ଼ିଶାକୁ ଉଡ୍ଡୀୟାନ ରୂପେ ଅଭିହିତ କରିଛନ୍ତି । ଆଉ ମଧ୍ୟ କେହି କେହି ଶ୍ରୀକ୍ଷେତ୍ରର ବିମଳାପୀଠକୁ ଜିହ୍ୱାପୀଠ ବା ପାଦପୀଠ ବୋଲି କହିଥାନ୍ତି ।

ଶ୍ରୀକ୍ଷେତ୍ର ପୁରୀର ମା'ବିମଳାଙ୍କ ସମେତ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରା ପ୍ରତିମାଙ୍କ ପ୍ରତିଷ୍ଠା ହୋଇଅଛି । କାରଣ ଶ୍ରୀମନ୍ଦିର ପ୍ରତିଷ୍ଠାପାଇଁ ନାରଦଙ୍କ ପରାମର୍ଶକ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗରେ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବା ଅବସରରେ ମର୍ତ୍ତ୍ୟଲୋକରେ ଶହ ଶହ ବର୍ଷ ଅତିବାହିତ ହୋଇଯାଇଥିଲା । କ୍ରମଶଃ ମନ୍ଦିରଟି ଏହି ସମୟ ମଧ୍ୟରେ ବାଲିରେ ପୋତି ହୋଇ ନଷ୍ଟ ହୋଇଯାଇଥିଲା । ଶହ ଶହ ବର୍ଷପରେ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କ ସହିତ ମନ୍ଦିର ପ୍ରତିଷ୍ଠା ପାଇଁ ଆସି ଦେଖିଥିଲେ, ମନ୍ଦିରଟି ସମ୍ପୂର୍ଣ୍ଣରୂପେ ଗାଲମାଧବ ନାମକ ଏକ ରାଜାଙ୍କ ଅଧୀନରେ । କାରଣ ମନ୍ଦିରକୁ ବାଲିରୁ ଉଦ୍ଧାର କରି ଗାଲମାଧବ ନିଜ ତତ୍ତ୍ୱାବଧାନରେ ରଖିଥିଲେ । ବିଭିନ୍ନ ପ୍ରକାର ପ୍ରମାଣ ଦେଖାଇ ଇନ୍ଦ୍ରଦ୍ୟୁମ୍ନ ନିଜର କର୍ତ୍ତୃତ୍ୱ ଜାହିର କରିଥିଲେ । କିନ୍ତୁ ମା'ବିମଳା ମନ୍ଦିରର ରତ୍ନସିଂହାସନକୁ ଦଖଲ କରିଥିଲେ । ତେଣୁ ଇନ୍ଦ୍ରଦ୍ୟୁମ୍ନ ମା'ଦେବୀଙ୍କୁ ସବିନୟ ପ୍ରାର୍ଥନା କରି ଜଣାଇଥିଲେ, ସେ ଅନ୍ୟତ୍ର ଗଲେ ସେଠାରେ ଶ୍ରୀପ୍ରଭୁମାନଙ୍କର ରତ୍ନସିଂହାସନ ପ୍ରତିଷ୍ଠା ହେବ । କିନ୍ତୁ ମା'ବିମଳା ସେହି ରତ୍ନସିଂହାସନ ଛାଡ଼ି ଯିବାପାଇଁ ସହମତି ହୋଇନଥିଲେ । ଇନ୍ଦ୍ରଦ୍ୟୁମ୍ନ ପ୍ରତିଜ୍ଞା କରି କହିଥିଲେ ଯେ ଦେବୀଙ୍କ ପୀଠ ଶ୍ରୀଜଗନ୍ନାଥଙ୍କ ପୀଠ ନିକଟରେ ଗଢ଼ାହେବ ଓ ଶ୍ରୀବଳଭଦ୍ରଙ୍କୁ ଅର୍ପଣ ହେଉଥିବା ପ୍ରସାଦ ପୁନରାୟ ମା'ବିମଳାଙ୍କ ପାଖରେ ଅର୍ପଣ ହେଲେ ତାହା ମହାପ୍ରସାଦ ହେବ । ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରସ୍ତାବରେ ସ୍ୱୀକୃତି ପ୍ରଦାନ କରିଥିଲେ ମା'ବିମଳା । ଫଳରେ ମା'ବିମଳା ଛାଡ଼ିଦେଇଥିଲେ ରତ୍ନସିଂହାସନଟି ଜଗତରନାଥ ଶ୍ରୀଜଗନ୍ନାଥଙ୍କୁ । ଶ୍ରୀପ୍ରଭୁଙ୍କ ନିକଟରେ ବିମଳାଙ୍କ ମନ୍ଦିର ନିର୍ମାଣ ହୋଇ ପ୍ରତିଷ୍ଠା ହୋଇଥିଲା । ନୀଳାଦ୍ରୀମହୋଦୟ ଓ ବାମଦେବ ସଂହିତାରେ ବର୍ଣ୍ଣିତ ଅଛି ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ପୂଜାପୂର୍ବରୁ ଗାଲମାଧବ ରାଜାଙ୍କ ଦ୍ୱାରା ଦେବୀ ମା'ବିମଳା ପୂଜା ପାଉଥିଲେ ।

ଶ୍ରୀକ୍ଷେତ୍ରର ଅଧୀଶ୍ୱରୀ ଦେବୀ ପରମ ବୈଷ୍ଣବୀ ମା'ଭଗବତୀ ତଥା ଅଶେଷ ଦୟା ଓ କରୁଣାଦାୟିନୀ ମା'ବିମଳାଙ୍କ ଆବିର୍ଭାବ, ସଂସ୍କୃତି ଓ ପରମ୍ପରା ଯେପରି ରହସ୍ୟମୟ, ଠିକ୍ ମା'ବିମଳାଙ୍କର ପୂଜାପଦ୍ଧତି ଓ ମେଳା ମହୋତ୍ସବ ମଧ୍ୟ ସେପରି ରହସ୍ୟମୟ । ମା'ଲକ୍ଷ୍ମୀ ମଣ୍ଡପର ବିପରୀତ ପାର୍ଶ୍ୱରେ ୬୦ଫୁଟ ଉଚ୍ଚତା ବିଶିଷ୍ଟ ବଉଳମାଳା ପଥରେ ନିର୍ମିତ ହୋଇ ମା'ବିମଳାଙ୍କ ମନ୍ଦିର ବିଦ୍ୟମାନ । ଜଗମୋହନର ଅନତି ଦୂରରେ ଦକ୍ଷିଣ ଓ ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ । ମା'ଦେବୀଙ୍କ ମନ୍ଦିରଟି ୨ଟି ଭାଗରେ ବିଭକ୍ତ । ଯଥା ଗର୍ଭଗୃହ ଓ ଜଗମୋହନ । ଜଗମୋହନର ସମ୍ମୁଖରେ ଦୁଇଟି ମଣ୍ଡପ ଅବସ୍ଥିତ । ଏହି ସମ୍ମୁଖ ମଣ୍ଡପ ଦ୍ୱୟ ଭିତର କାନ୍ଥରେ କେତେଗୁଡ଼ିଏ

ମା'ଦେବୀ ଦୁର୍ଗାଙ୍କ ବିଗ୍ରହ ଦୃଷ୍ଟିଗୋଚର ହୁଏ । ସେଥିମଧ୍ୟରୁ ୧୦ଗୋଟି ମହାବିଦ୍ୟା ଯଥା- ଶ୍ରୀବିମଳା, ଶ୍ରୀଛିନ୍ନମସ୍ତା, ଶ୍ରୀଉଗ୍ରତାରା, ଶ୍ରୀମହାକାଳୀ, ଶ୍ରୀକମଳା, ଶ୍ରୀଧୂମାବତୀ, ଶ୍ରୀଶ୍ୟାମାକାଳୀ, ଶ୍ରୀଭୁବନେଶ୍ୱରୀ, ଶ୍ରୀଷୋଡ଼ଶୀ ଓ ଶ୍ରୀଭୈରବୀ । ଏତଦ୍‌ବ୍ୟତୀତ ୬ଟି ବିଗ୍ରହ ପ୍ରତୀୟମାନ । ସେମାନେ ହେଲେ ଶ୍ରୀବନଦୁର୍ଗା, ଶ୍ରୀଭଦ୍ରକାଳୀ, ଶ୍ରୀବିମଳା, ଶ୍ରୀହରଚଣ୍ଡୀ, ଶ୍ରୀମାତଙ୍ଗିନୀ ଓ ଶ୍ରୀଜୟଦୁର୍ଗା ।

ମନ୍ଦିରର ସମ୍ମୁଖରେ ପ୍ରାୟ ୧୦ଫୁଟ ଦୂରରେ ରହିଅଛି ରୋହିଣୀକୁଣ୍ଡ ଓ ବଟଗଣେଶ ମନ୍ଦିର । ଏକ ବିଶାଳକାୟ ପଶୁରାଜ ସିଂହ ମୂର୍ତ୍ତିଟି ସେଠାରେ ପ୍ରତୀୟମାନ । ସିଂହ ହେଉଛି ମା'ବିମଳାଙ୍କର ବାହନ । ପ୍ରତ୍ୟେକ ମନ୍ଦିରରେ ବାହନଗୁଡ଼ିକ ମନ୍ଦିରକୁ ଲାଗିକରି ରହିଥିବାବେଳେ ମା'ଦେବୀଙ୍କ ବାହନ ମନ୍ଦିରଠାରୁ ୧୦ଫୁଟ ଦୂରରେ ଅବସ୍ଥିତ । ଏହାହିଁ ମା'ବିମଳାଦେବୀଙ୍କ ଏକ ସ୍ୱତନ୍ତ୍ର ବିଶେଷତ୍ୱ । ବିମଳା ମନ୍ଦିରର ବାମ ପାର୍ଶ୍ୱରେ ଶ୍ରୀବେଣୁମାଧବ ଓ ଦକ୍ଷିଣରେ ଶ୍ରୀରାଧାକୃଷ୍ଣ ମନ୍ଦିର ତଥା ପଛରେ ଏକ ଫୁଲ ବଗିଚା ଅବସ୍ଥିତ । ମନ୍ଦିରର ପ୍ରବେଶ ପଥର ଦୁଇ ପାର୍ଶ୍ୱରେ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ, ହସ୍ତରେ ଅସ୍ତ୍ରଧାରଣ କରି ଉଭା ହୋଇଛନ୍ତି ଦୁଇଟି ଦ୍ୱାରପାଳ । ସତେ ଯେପରି ସେହି ଦୁଇଟି ପ୍ରତିମା ମା'ଦେବୀଙ୍କର ଦେହରକ୍ଷୀ । ଦ୍ୱାରଦେଶର ପ୍ରଥମ ମଣ୍ଡପର ବାମ ପାଖରେ ଥିବା କାନ୍ଥରେ ୨ଟି ବିଗ୍ରହ ଦେଖିବାକୁ ମିଳେ । ଏହି ପ୍ରତିମା ଦୁଇଟି ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ ୨ଫୁଟ ଉଚ୍ଚତା ବିଶିଷ୍ଟ । ସେଥିମଧ୍ୟରୁ ଗୋଟିଏ ଶ୍ରୀଗଣେଶ ନୃତ୍ୟରତ ଭଙ୍ଗୀରେ ଓ ଅନ୍ୟଟି ପାର୍ବତୀ ତନୟ କାର୍ତ୍ତିକେୟ ରୂପେ ବିରାଜିତ । ଭକ୍ତ, ଦର୍ଶକ ଓ ଭାବୁକମାନଙ୍କ ମନକୁ ସବୁଠାରୁ ଅଧିକ ଆକର୍ଷିତ କରିଅଛି ମନ୍ଦିର ଛାତର ମଧ୍ୟଭାଗରୁ ତଳକୁ ଓହଳିଥିବା ଏକ ଓଲଟା ପଦ୍ମ କୋରକର ଭାସ୍କର୍ଯ୍ୟ ।

ଅଶେଷ ମହିମାଧାରୀ ମା'ବିମଳାଙ୍କର ପୂଜିତ ପ୍ରତିମାଟି ପ୍ରାୟ ୪ଫୁଟ ଉଚ୍ଚତାରୁ ସାମାନ୍ୟ ଅଧିକ ଓ ଚାରି ହସ୍ତ ବିଶିଷ୍ଟା ପ୍ରତ୍ୟକ୍ଷ ଠାକୁରାଣୀ ବିରାଜିତ ହୋଇଛନ୍ତି ଏକ ସିଂହାସନ ଉପରେ । ସିଂହାସନଟି ସେତେ ଉଚ୍ଚ ନହେଲେ ମଧ୍ୟ ପ୍ରସ୍ତର ଖୋଦିତ ହୋଇଅଛି । ଉର୍ଦ୍ଧ୍ୱଗାମୀ ଦୁଇଟି ହସ୍ତମଧ୍ୟରୁ ଗୋଟିକରେ ଦେବକନ୍ୟା ଓ ଅନ୍ୟଟିରେ ମାୟାରୂପକ ନାଗକନ୍ୟା ଧାରଣ କରିଛନ୍ତି । ନିମ୍ନଗାମୀ ହସ୍ତଦ୍ୱୟ ମଧ୍ୟରୁ ଗୋଟିକରେ ଜପାମାଳୀ ଓ ଅନ୍ୟଟିରେ ଅମୃତ କଳସ ଧାରଣ କରିଛନ୍ତି । ମସ୍ତକରେ ଶୋଭା ପାଉଅଛି ଭୈରବ ଶ୍ରୀବାସୁଦେବ, ଯାହାର ମୁକୁଟରେ ସପ୍ତଫେଣା ନାଗ ଅବସ୍ଥିତ । ପ୍ରତିମାର ଦୁଇ ପାଖରେ ରହିଛନ୍ତି ଛାୟା ଓ ମାୟା ନାମକ ଦୁଇଟି ବିଗ୍ରହ । ଏତଦ୍‌ବ୍ୟତୀତ ମା'ବିମଳା ଶରୀରରେ ଭୂଷିତା ହୋଇଛନ୍ତି ବିଭିନ୍ନ ଅଳଙ୍କାର, ପାଟଲୁଗା, ଫୁଲମାଳ ଓ ସିନ୍ଦୂର । ଧୂପ, ଦୀପ, କର୍ପୂର ଓ ନୈବେଦ୍ୟ ଇତ୍ୟାଦି ସୁବାସରେ ମହକି ଉଠୁଛି ମନ୍ଦିରର ପରିବେଶ ।

ପ୍ରଥମ ଆରାଧ୍ୟା ଦେବୀ ମା'ବିମଳାଙ୍କ ପୂଜାପଦ୍ଧତି ତଥା ଉପାସନା ପ୍ରାୟତଃ ଶ୍ରୀଜଗନ୍ନାଥଙ୍କ ସଂସ୍କୃତି ସହ ସମାନ । ତାଙ୍କର ମହିମା ବଳରେ ଶ୍ରୀଜଗନ୍ନାଥଙ୍କ ଅର୍ପିତ ପ୍ରସାଦ ତାଙ୍କୁ ଅର୍ପିତ ହେଲେ ତାହା ମହାପ୍ରସାଦ ହୋଇଥାଏ । ତେଣୁ ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ହେଉଥିବା ପ୍ରସାଦ ମା'ବିମଳାଙ୍କ ପାଖକୁ ଅଣାଯାଇଥାଏ । ଏହା ମା'ବିମଳାଙ୍କର ଏକ ସ୍ୱତନ୍ତ୍ରତା ଅଟେ । ପ୍ରତ୍ୟେକ ସକାଳ ଧୂପରେ ଶ୍ରୀଜଗନ୍ନାଥଙ୍କ ପାଖରେ ୧୬ପ୍ରକାରର ଭୋଗଲାଗି ହୋଇଥିଲେ ମଧ୍ୟ ସେଥିମଧ୍ୟରୁ ମାତ୍ର ୬ପ୍ରକାରର ଭୋଗ ମା'ବିମଳାଙ୍କ ପାଖରେ ସମର୍ପଣ ହୋଇଥାଏ । ସେଗୁଡ଼ିକ ଯଥା ସୁନାଥାଳି ଖେଚୁଡ଼ି, ବଡ଼କାନ୍ତି, ସାନକାନ୍ତି, ଝିଲି, ଶାଗଭଜା ଓ କଦଳୀଭଜା । ଏହି ପୂଜାରେ ବେହେରା, ପନ୍ତିବଡୁ ଓ ବିଡୁଆ ସେବାୟତମାନେ ନିଯୋଗ ହୋଇଥାନ୍ତି । ସେମାନେ ସେହି ପ୍ରସାଦକୁ ମା'ବିମଳାଙ୍କ ପାଖରେ ଗୋଟିଏ ବାକ୍ୟରେ ସମର୍ପଣ କରିଥାନ୍ତି । ତାହା ହେଲା- "ମା' ! ମହାପ୍ରସାଦ ସମର୍ପଣୀୟ ନମଃ" । ସେହିପରି ଦୈନନ୍ଦିନ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ ହେଉଥିବା ପ୍ରସାଦ ଯଥା ସକାଳ ଧୂପ, ଦ୍ୱିପ୍ରହର ଧୂପ, ସନ୍ଧ୍ୟାଧୂପ ମା'ବିମଳାଙ୍କ ପାଖକୁ ଯାଇ ପୂଜା ମାଧ୍ୟମରେ ମହାପ୍ରସାଦରେ ପରିଣତ ହୁଏ । ଏତଦ୍‌ବ୍ୟତୀତ ସକାଳର ସ୍ନାନ ଆଳତି, ସନ୍ଧ୍ୟା ଆଳତି ଇତ୍ୟାଦି ଦୈନନ୍ଦିନ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର ମେଳା ମହୋତ୍ସବରେ ଅଧିକଧୂପ ଓ ପୂଜା ହୋଇଥାଏ । ମା'ବିମଳାଙ୍କର ବିଭିନ୍ନ ପୂଜାକାର୍ଯ୍ୟପାଇଁ ବିଭିନ୍ନ ପ୍ରକାରର ସେବାୟତମାନେ ନିଯୋଗ ହୋଇଥାନ୍ତି ।

କଥାରେ ଅଛି ଓଡ଼ିଆମାନେ ବାର ମାସରେ ତେରପର୍ବ ପାଳନ କରିଥାନ୍ତି । ତେଣୁ ବର୍ଷକ ବାରମାସରେ ତିଥି ଅନୁସାରେ ପଡୁଥିବା ପର୍ବପର୍ବାଣି ବିଧିବିଧାନ ସହ ଧୂପ, ଦୀପ, ନୈବେଦ୍ୟ, କର୍ପୂର, ଚନ୍ଦନ, ଫୁଲ ଇତ୍ୟାଦି ମାଧ୍ୟମରେ ବହୁ ଆଡ଼ମ୍ବରପୂର୍ଣ୍ଣ ଭାବରେ ମା'ବିମଳାଙ୍କ ପାଖରେ ପାଳନ କରାଯାଇଥାଏ । ଏତଦ୍‌ବ୍ୟତୀତ ପ୍ରତିଦିନ ଶହ ଶହ ଭକ୍ତ ସେମାନଙ୍କର ମାନସିକ ପୂରଣ ଓ କାମନା କରିବାପାଇଁ ସମାବେଶ ହୋଇ ସ୍ୱତନ୍ତ୍ରରୂପେ ପୂଜାଅର୍ଚ୍ଚନା କରିଥାନ୍ତି ।

ଶୁଭଫଳ ପ୍ରଦାୟିନୀ ମା'ବିମଳାଙ୍କ ପୀଠରେ ଶାରଦୀୟ ପର୍ବ ଦଶହରା ପାଳନର ପୂଜା ପଦ୍ଧତି ଓଡ଼ିଶାର ଶକ୍ତିପୀଠ ଗୁଡ଼ିକଠାରୁ ସ୍ୱତନ୍ତ୍ରଅଟେ । ଷୋହଳ ଦିନଧରି ଏହି ପର୍ବ ମହାସମାରୋହରେ ଓ ଜାକଜମକରେ ଲକ୍ଷ ଲକ୍ଷ ଭକ୍ତଙ୍କ ଗହଣରେ ପାଳିତ ହୋଇଥାଏ । ସବୁପୀଠରେ ମା'ଦୁର୍ଗାଙ୍କୁ ଶ୍ରୀଶିବଙ୍କ ପତ୍ନୀରୂପେ ପୂଜା ହେଉଥିଲେ ମଧ୍ୟ ଶ୍ରୀବିମଳାଙ୍କ ପାଖରେ ଶ୍ରୀଦୁର୍ଗାମାଧବଙ୍କୁ ପୂଜା କରାଯାଇଥାଏ । ଏହିପୂଜା ଆଶ୍ୱିନମାସ କୃଷ୍ଣପକ୍ଷ ଅଷ୍ଟମୀଠାରୁ ସେହି ମାସ ଶୁକ୍ଳପକ୍ଷ ଅଷ୍ଟମୀ ପର୍ଯ୍ୟନ୍ତ ଦୀର୍ଘ ଷୋଳଦିନ ଧରି ପାଳନ କରାଯାଇଥାଏ । ଏହି ପୂଜାକୁ ବିଭିନ୍ନ ନାମରେ ନାମିତ କରାଯାଇଅଛି । ଯଥା-ଷୋଳପୂଜା, ଶାରଦୀୟ ରଥଯାତ୍ରା, ଶାକ୍ତ ଗୁଣ୍ଡିଚ୍ଚପୂଜା, ଶ୍ରୀଦୁର୍ଗାମାଧବ ଉପାସନା ବା ଦଶହରା । ଏହି ପୂଜାର ପ୍ରଥମଦିନ ପ୍ରାତଃ ପୂଜାପରେ ସୁବର୍ଣ୍ଣରେ

ନିର୍ମିତ ଶ୍ରୀଜୟଦୁର୍ଗାଙ୍କ ପ୍ରତିମାଙ୍କୁ ମା'ଦେବୀ ସୁଭଦ୍ରାଙ୍କ ପାଖରେ ରଖି ତାଙ୍କଠାରୁ ଆଜ୍ଞାମାଳ ଆଣି ଦୁର୍ଗା ଉତ୍ସବ ଆରମ୍ଭ ହୋଇଥାଏ । ଆଜ୍ଞାମାଳ ପାଇବାପରେ ଶ୍ରୀଜୟଦୁର୍ଗାଙ୍କୁ ୧୦୮ଗରା ଜଳରେ ମା'ବନଦୁର୍ଗା ମନ୍ତ୍ର ମାଧ୍ୟମରେ ଅଭିଷେକ କରାଯାଇଥାଏ । ତତ୍‌ପରେ ମାଧବ ମୂର୍ତ୍ତିଙ୍କୁ ସେଠାକୁ ଅଣାଯାଇ ୧୦୮ଗରା ଜଳରେ ସ୍ନାନ କରାଯାଇଥାଏ । ଉଭୟ ଦୁଇଟି ପ୍ରତିମାଙ୍କୁ(ଶ୍ରୀଦୁର୍ଗା,ମାଧବ) ରଖାଯାଇ ରୀତିନୀତି ଅନୁସାରେ ପୂଜା କରାଯାଇଥାଏ । ତତ୍‌ପରେ ବିମାନବଡୁ ସେବାୟତମାନେ ଗୋଟିଏ ସୁସଜ୍ଜିତ ରଥରେ ନେଇଯାଆନ୍ତି ମା'ବିମଳାଙ୍କ ପୀଠକୁ । ସେଠାରେ ବିମଳାଙ୍କ ଆସ୍ଥାନ ପାଖରେ ଗୋଟିଏ ଖଟୁଲିରେ ବିଜେ କରାଇଥାନ୍ତି ଶ୍ରୀଦୁର୍ଗାମାଧବଙ୍କୁ । ସେଠାରେ ଷୋଡ଼ଶ ଉପଚାରରେ ପୂଜା, ଆଳତି ଓ ଭୋଗ ଦୈନନ୍ଦିନ ତିନିଥର ହୋଇଥାଏ । ତତ୍‌ପରେ ଶ୍ରୀଦୁର୍ଗାମାଧବ ସେହି ରଥରେ ଭଣ୍ଡାର ଘରକୁ ଆସିଥାନ୍ତି । ଏହିପରି ପ୍ରଥମ ଆଠଦିନ ପୂଜାକାର୍ଯ୍ୟ ହୋଇଥାଏ । ପର ଆଠଦିନ ନିକଟରେ ଥିବା ଦୋଳମଣ୍ଡପ ସାହିସ୍ଥିତ ଏକ ଛୋଟ ନାରାୟଣୀ ମନ୍ଦିରକୁ ଶ୍ରୀଦୁର୍ଗାମାଧବ ବିମାନରୂଢ଼ ହୋଇ ଯାଇଥାନ୍ତି । ସେଠାରେ ଯଥାରୀତି ପୂଜା ଅର୍ଚ୍ଚନା ହୋଇଥାଏ । ତତ୍‌ପରେ ଦୁଇଠାକୁର ଭଣ୍ଡାର ଘରକୁ ଆସିଥାନ୍ତି । ଶ୍ରୀକ୍ଷେତ୍ରରେ ମା'ବିମଳା ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ଶ୍ରୀମାଧବଙ୍କ ସହ ପୂଜା ପାଇଥାନ୍ତି । ତେଣୁ ଶ୍ରୀକ୍ଷେତ୍ରର ମନ୍ଦିର ପରମ୍ପରାରେ ବିମଳାଙ୍କ ଭୂମିକା ଅଦ୍ୱିତୀୟ ।

ଷୋଳପୂଜା ସମୟରେ ମା'ଦେବୀ ବିମଳା ପ୍ରତିଦିନ ବିଭିନ୍ନପ୍ରକାର ବେଶଭୂଷା ଓ ରୂପରେ ସୁସଜ୍ଜିତ ହୋଇଥାଆନ୍ତି । ପ୍ରତ୍ୟହ ମନ୍ତ୍ରପାଠ, ଶ୍ରୀଚଣ୍ଡୀପାଠ, ନାମଯଜ୍ଞ ଇତ୍ୟାଦି ବିଧିବିଧାନ ସହିତ ପାଳନ ହୋଇଥାଏ । ସେହି ବେଶଗୁଡ଼ିକର ନାମ ହେଲା- ଶ୍ରୀବନଦୁର୍ଗା, ଶ୍ରୀଭୁବନେଶ୍ୱରୀ, ଶ୍ରୀନାରାୟଣୀ, ଶ୍ରୀମାତଙ୍ଗିନୀ, ଶ୍ରୀଦଶଭୁଜା, ଶ୍ରୀରାଜେଶ୍ୱରୀ, ଶ୍ରୀହରଚଣ୍ଡୀ, ଶ୍ରୀସିଂହବାହିନୀ । ଏହି ସମୟରେ ଦେଶ ଓ ବିଦେଶରୁ ଲକ୍ଷ ଲକ୍ଷ ଭକ୍ତ ଦର୍ଶକ ଓ ପର୍ଯ୍ୟଟକ ଦର୍ଶନ କରିବାପାଇଁ ସମବେତ ହୋଇଥାନ୍ତି ।

ଆଜି ସମଗ୍ର ବିଶ୍ୱବାସୀ ପ୍ରଭୁ ଶ୍ରୀଜଗନ୍ନାଥ କହିଲେ ଓଡ଼ିଶାକୁ ବୁଝିଥାନ୍ତି, ଠିକ୍ ସେପରି ମା'ବିମଳା କହିଲେ ଶ୍ରୀକ୍ଷେତ୍ର ତଥା ବିଶ୍ୱଧର୍ମର ଶାକ୍ତ କ୍ଷେତ୍ରକୁ ଜାଣିଥାନ୍ତି । ତେଣୁ ଆଜି ସମଗ୍ର ଓଡ଼ିଆଜାତି ବିଶ୍ୱର କୋଣ ଅନୁକୋଣରେ ସୁପରିଚିତ । କାରଣ ପରମ ଭକ୍ତମାନଙ୍କୁ ସବୁଠାରୁ ଅଧିକ ଆକର୍ଷିତ କରିପାରିଛି ମା'ଦେବୀ ବିମଳାଙ୍କର ପୂଜିତ ବିଗ୍ରହଟି । ଏହି ପ୍ରତିମାର ଗଠନ ଶୈଳୀ ଓ ସୂକ୍ଷ୍ମ କାରୁକାର୍ଯ୍ୟରେ ଅପରୂପା ସୌନ୍ଦର୍ଯ୍ୟ ଦେଖାଯିବା ବିରଳ । ଅସୀମ ଦୟା, କରୁଣା ଓ ଆଶୀର୍ବାଦ ଚୁମ୍ବକୀୟ ଶକ୍ତିପରି ଟାଣି ରଖିଛି କୋଟି କୋଟି ପରମଭକ୍ତ ତଥା ଆବାଳବୃଦ୍ଧବନିତାଙ୍କ ହୃଦୟ ମନ୍ଦିରକୁ ତାରି ଚରଣାରବିନ୍ଦରେ । କି ପ୍ରକାର ଶକ୍ତି ଅଛି ତାଙ୍କ

ନିକଟରେ ଯେ ସାତ ସମୁଦ୍ର ତେର ନଈ ପାର ହୋଇ ଛୁଟି ଆସନ୍ତି କୋଟି କୋଟି ଭକ୍ତ ସମାଜ । ପ୍ରକୃତରେ ସମସ୍ତ ଭକ୍ତ ଭୁଲି ଯାଆନ୍ତି ସେମାନଙ୍କର ଲୋଭ, ମୋହ, ମାୟା, କାମ, କ୍ରୋଧ, ଗର୍ବ ଓ ଅହଂକାର ଇତ୍ୟାଦି ମନ୍ଦଗୁଣକୁ । ସ୍ୱତଃପ୍ରବୃତ୍ତ ଭାବରେ ମା'ଙ୍କ ପାଖରେ ଜାଗ୍ରତ ହୋଇଥାଏ ଭକ୍ତି, ପ୍ରୀତି, ଭାତୃତ୍ୱ ଓ ପ୍ରେମ । ତେଣୁ ସେ ହେଉଛନ୍ତି ପ୍ରକୃତରେ ସମସ୍ତ ମାନବସମାଜର ଶୁଭଫଳ ଓ ଆଶୀର୍ବାଦ ଦାୟିନୀ ଓ ମାତୃରୂପିଣୀ ମାତୃଶକ୍ତି ।

ଏକାଧାରରେ ମା'ଦେବୀ ବିମଳା ହେଉଛନ୍ତି ବୈକୁଣ୍ଠ ପୁରୀର ଅଧିଷ୍ଠାତ୍ରୀ ଦେବୀ । ବିଶ୍ୱଜଗତର ଶ୍ରେଷ୍ଠଶକ୍ତି, ସଚରାଚର ବ୍ରହ୍ମାଣ୍ଡର ଆଦିଶକ୍ତି ତଥା ଆଦିମାତା, ତ୍ରୈଲୋକ୍ୟ ପୁରୀର ମଉଡ଼ମଣି । ସର୍ବୋପରି, ସେ ହେଉଛନ୍ତି ସମସ୍ତ ଦେବୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଓ ସମସ୍ତ ଜୀବଜଗତର ପ୍ରାଣବିନ୍ଦୁ । ତେଣୁ ତାଙ୍କରି ଚରଣାରବିନ୍ଦରେ ସମସ୍ତ ମାନବସମାଜ ସେମାନଙ୍କର ଶରୀର ଓ ଆତ୍ମାକୁ ସମର୍ପଣ କରି ଦୈନନ୍ଦିନ କାର୍ଯ୍ୟ ସମ୍ପାଦନ କରିବା ଏକାନ୍ତ କାମ୍ୟ । ଫଳରେ ସମାଜରେ ଥିବା ସମସ୍ତ କଳୁଷିତ ପରିବେଶ ଦୂରହୋଇ ସୃଷ୍ଟିହେବ ସୁଖ, ଶାନ୍ତି, ମୈତ୍ରୀ, ଐକ୍ୟ ଓ ସମତାର ଯୁଗ ।

* * * * * * *

# ଶ୍ରୀମନ୍ଦିର ବେଢ଼ାମଧ୍ୟସ୍ଥ ଦେବଦେବୀ

ସାଧାରଣତଃ ଦେଶ ବିଦେଶରେ ଓଡ଼ିଶା କହିଲେ କେହି ଜାଣନ୍ତି ନାହିଁ । କିନ୍ତୁ ଶ୍ରୀଜଗନ୍ନାଥ ଦେଶ କହିଲେ ସମସ୍ତେ ଓଡ଼ିଶା ବୋଲି ଜାଣିଥାନ୍ତି । ତେଣୁ ଠାକୁରଙ୍କ ନାମ ଧରିଲେ ଓଡ଼ିଶାବାସୀଙ୍କର ପରିଚୟ ମିଳେ । ତେବେ ସେହି ଠାକୁରଙ୍କ ମହିମା ଓ ଗୁଣଗାରିମା ସହ ସ୍ଥିତି, ଖ୍ୟାତି, ବିସ୍ତୃତି ଇତ୍ୟାଦି ସମ୍ପର୍କରେ ଜାଣିବା ଆବଶ୍ୟକ । ଏହି ପୀଠରେ ସହସ୍ରାଧିକ ଦେବଦେବୀମାନେ ମନ୍ଦିର, ମଣ୍ଡପ, ପୀଠ, କୁଣ୍ଡ ଓ କୁଞ୍ଜଗୁଡ଼ିକରେ ବିରାଜିତ ହୋଇ ସୃଷ୍ଟି କରିଛନ୍ତି, ଐଶ୍ୱର୍ଯ୍ୟପୁରୀ ପରି ଶୋଭାର ଭଣ୍ଡାର । ଏହି ମନ୍ଦିରଟି ପ୍ରାୟ ୧୦ ଏକର ଜମି ଉପରେ ଦୁଇଟି ପ୍ରାଚୀର ଦ୍ୱାରା ଆବୃତ୍ତ ହୋଇ ଦୁଇ ଭାଗରେ ବିଭକ୍ତ ହୋଇଅଛି । ପ୍ରଥମ ଭାଗଟି ବାହାର ପାଚେରି ବା ମେଘନାଦ ପାଚେରି ଠାରୁ କୂର୍ମ ପାଚେରି ପର୍ଯ୍ୟନ୍ତ ଓ ଦ୍ୱିତୀୟ ଭାଗଟି କୂର୍ମପାଚେରି ଠାରୁ କେନ୍ଦ୍ର ଜଗମୋହନ ପର୍ଯ୍ୟନ୍ତ ଅଟେ । ମେଘନାଦ ପାଚେରିର ଦୈର୍ଘ୍ୟ ୬୫୦ଫୁଟ, ପ୍ରସ୍ଥ ୬୪୪ଫୁଟ, ଓ ଚଉଡ଼ା ୬ଫୁଟ ଉଚ୍ଚତା ୨୦ଫୁଟ । ଦ୍ୱିତୀୟ ପାଚେରି ଅର୍ଥାତ୍ କୂର୍ମ ବେଢ଼ାର ଦୈର୍ଘ୍ୟ ୪୦୦ଫୁଟ, ପ୍ରସ୍ଥ ୨୭୮ ଫୁଟ, ଚଉଡ଼ା ୫ଫୁଟ ଓ ଉଚ୍ଚତା ୨୦ଫୁଟ । (ମୁଖ୍ୟ ମନ୍ଦିରର ଉଚ୍ଚତା ରାସ୍ତାଠାରୁ ୨୧୪ଫୁଟ ୮ଇଞ୍ଚ ହେବ ବୋଲି ଗବେଷକ ମନମୋହନ ଗାଙ୍ଗୁଲି ଉଲ୍ଲେଖ କରିଛନ୍ତି ।) ଏହାର ଅଗ୍ରଭାଗରେ ନୀଳଚକ୍ର ବିରାଜିତ । ଏଠାରେ ଅନେକ ଛୋଟବଡ଼ ମନ୍ଦିରମାନ ବିଦ୍ୟମାନ । ଏହାର ଏକ ତାଲିକା ନିମ୍ନରେ ପ୍ରଦତ୍ତ ହୋଇଅଛି-

**ମନ୍ଦିରର ବାହାର ବେଢ଼ା :-** ଏହି ବେଢ଼ାର ୪ଦିଗରେ ଚାରୋଟି ପ୍ରବେଶ ପଥ ଅଛି । ଏହି ୪ଦ୍ୱାର ମଧ୍ୟରୁ ପୂର୍ବଦିଗରେ ଅର୍ଥାତ ବଡଦାଣ୍ଡକୁ ସଂଲଗ୍ନ ଦ୍ୱାରଟିକୁ ସିଂହଦ୍ୱାର ବା ମୁଖ୍ୟଦ୍ୱାର କୁହାଯାଏ । ସେହିପରି ଦକ୍ଷିଣ ଦିଗରେ ଥିବା ଦ୍ୱାରକୁ ଦକ୍ଷିଣଦ୍ୱାର, ପଶ୍ଚିମଦିଗ ଦ୍ୱାରକୁ ପଶ୍ଚିମଦ୍ୱାର ଓ ଉତ୍ତରଦିଗ ଦ୍ୱାରକୁ ଉତ୍ତରଦ୍ୱାର କୁହାଯାଏ ।

**ଅରୁଣସ୍ତମ୍ଭ:-** ସିଂହଦ୍ୱାର ବାଟଦେଇ ଯିବାପୂର୍ବରୁ ଆଗ ପଡ଼ିଥାଏ ୩୩ଫୁଟ ୮ଇଞ୍ଚ ଦୈର୍ଘ୍ୟର ଏକ ଅରୁଣସ୍ତମ୍ଭ । ଏହା ମୁଗୁନି ପଥରରେ ଗଢ଼ା ବର୍ତ୍ତୁଳାକାର ଅଟେ । ଏହା ଅଷ୍ଟାଦଶ ଶତାବ୍ଦୀରେ କୋଣାର୍କସ୍ଥିତ ସୂର୍ଯ୍ୟମନ୍ଦିରରୁ ଆସିଥିଲା ! ଏହା ସୂର୍ଯ୍ୟଙ୍କର ସାରଥି ହେଲେ ମଧ୍ୟ, ଶ୍ରୀମନ୍ଦିରର ମାନ୍ୟତା ପାଇଅଛି ।

**ସିଂହଦ୍ୱାର:-** ମନ୍ଦିର ଭିତରକୁ ପ୍ରବେଶ ଓ ପ୍ରସ୍ଥାନ ପାଇଁ ଏହି ଦ୍ୱାରଟି ମୁଖ୍ୟ ଅଟେ । ଦ୍ୱାର ସମ୍ମୁଖରେ ଦୁଇପାଖରେ ଦୁଇଟି ବିରାଟକାୟ ସିଂହ ମୂର୍ତ୍ତି ବିଦ୍ୟମାନ । ଏଠାରେ ମଧ୍ୟ ଦ୍ୱାରପାଳ

ରୂପେ ଜୟ ଓ ବିଜୟ ବିଦ୍ୟମାନ । ଦ୍ୱାର ଉପରେ ଶ୍ରୀମହାଲକ୍ଷ୍ମୀ ବିରାଜିତା ।  ସିଂହଦ୍ୱାର ଉପର ଓ ଗୁମୁଟିର ବାହାର ପାର୍ଶ୍ୱରେ ଘଣ୍ଟମୁଣ୍ଡେଇ ଠାକୁରାଣୀ ମନ୍ଦିର ରହିଛି । ଏଠାରେ ମା' ଘଣ୍ଟ ମୁଣ୍ଡାଇ ଠିଆ ହୋଇଛନ୍ତି ।

**ଗୁମୁଟି :-** ସିଂହଦ୍ୱାରରୁ ମନ୍ଦିରକୁ ଯିବା ବାଟରେ ଗୁମୁଟି ପଡ଼ିଥାଏ । ଏହାର ବାମପାଖରେ ପଡ଼େ ଫତେମହାବୀର ହନୁମାନ, ଶ୍ରୀରାଧାକୃଷ୍ଣ ଓ ଶ୍ରୀଗଣେଶ ପ୍ରତିମା ଓ ଡାହାଣରେ ପଡ଼ିଥାଏ ଶ୍ରୀ ନରସିଂହ, ପତିତପାବନ ।

**ବାଇଶି ପାହାଚ :-** ଗୁମୁଟି ପାର ହୋଇ ଆଗକୁ ଗଲେ ପଡ଼ିଥାଏ ବାଇଶି ପାହାଚ । ଏହା ୨୨ଗୋଟି ତତ୍ତ୍ୱରେ ଆଧାରିତ ହୋଇ ସ୍ଥାପନ ହୋଇଅଛି । ଏହାକୁ ସ୍ପର୍ଶକଲେ ମୁକ୍ତି ମିଳିଥାଏ । ଏହି ପୀଠରେ ପୂର୍ବପୁରୁଷଙ୍କୁ ପିଣ୍ଡଦାନ, ମହାଳୟା ସମେତ ଦିପାବଳୀ ଦିନ ପୟାଶ୍ରାଦ୍ଧ ଡକା ଯାଇଥାଏ । ଏହି ପୀଠର ପାହାଚରେ ପିଲାମାନଙ୍କୁ ଗଡ଼ାଇ ଦିଆଯାଏ, ଫଳରେ ପିଲାଟି ମୁକ୍ତି ପାଇବା ସଙ୍ଗେ ସଙ୍ଗେ ଦୀର୍ଘଜୀବନ ବଞ୍ଚି ରହିଥାନ୍ତି । ଏହି ପୀଠଟି ମୁକ୍ତି ପାଇବାର ଏକ ପବିତ୍ର ପୀଠ ଅଟେ ।

**ଶ୍ରୀ କାଶୀବିଶ୍ୱନାଥ :-** ବାଇଶ ପାହାଚର ବାମପାର୍ଶ୍ୱରେ ପ୍ରଥମ ପାହାଚ ପାଖରେ ଶ୍ରୀକାଶୀବିଶ୍ୱନାଥ ଏକ ଗମ୍ବୁଜାକାର ମନ୍ଦିରରେ ବିରାଜିତ । ଶାସ୍ତ୍ରାନୁମୋଦିତ ଶ୍ରୀବିଷ୍ଣୁଙ୍କୁ ଦର୍ଶନ କରିବା ପୂର୍ବରୁ କାଶୀବିଶ୍ୱନାଥଙ୍କୁ ଦର୍ଶନ କଲେ ସିଦ୍ଧିଲାଭ ହୋଇଥାଏ । ତେଣୁ କାଶୀବିଶ୍ୱନାଥଙ୍କୁ ଆଗ ଦର୍ଶନ କରିବାପାଇଁ ସେଠାରେ ସ୍ଥାପନା କରାଯାଇଛି ।

**ଶ୍ରୀ ରାମଚନ୍ଦ୍ରଦେବ ମନ୍ଦିର :-** ଏହି ମନ୍ଦିରରେ ରାମାଭିଷେକରେ ଶ୍ରୀରାମ ଓ ସୀତା ସିଂହାସନରେ ବିରାଜିତ ସହ ଋରିଭାଇ, ହନୁମାନ, ସୁଗ୍ରୀବ, ଜାମ୍ବବାନ ଓ ସମସ୍ତ ବାନର ଭକ୍ତ ପ୍ରଭୁଙ୍କୁ ପ୍ରଣିପାତ କରୁଥିବାର ମୂର୍ତ୍ତି ବିଦ୍ୟମାନ ।

**ଶ୍ରୀ ଅଭୟ ନୃସିଂହ ମନ୍ଦିର :-** ରାମଚନ୍ଦ୍ର ଦେବ ମନ୍ଦିର ପାଖକୁ ଏହି ମନ୍ଦିରଟି ଅବସ୍ଥିତ । ଏହି ମନ୍ଦିରରେ ନୃସିଂହନାଥଙ୍କ ଏକ ଶିଳାମୂର୍ତ୍ତି ଓ ପାର୍ଶ୍ୱରେ ଗଣନାଥଙ୍କ ମୂର୍ତ୍ତି ପୂଜା ପାଉଛନ୍ତି ।

**ଶ୍ରୀନରସିଂହ ମନ୍ଦିର :-** ଏହି ମନ୍ଦିରରେ ଶ୍ରୀନରସିଂହ ମୂର୍ତ୍ତି ପୂଜା ପାଉଛନ୍ତି ।

**ଶ୍ରୀରାଧାବଲ୍ଲଭ :-** ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ବିରାଜିତ ହୋଇ ପୂଜା ପାଉଛନ୍ତି ।

**ଭେଟ ମଣ୍ଡପ :-** ଏହି ଭେଟମଣ୍ଡପରେ ନୀଳାଦ୍ରିବିଜେ ଦିନ ଶ୍ରୀମହାଲକ୍ଷ୍ମୀ ଶ୍ରୀଜଗନ୍ନାଥଙ୍କୁ ଭେଟ ହୁଅନ୍ତି । ସେହିଦିନ ଶ୍ରୀଜଗନ୍ନାଥଙ୍କୁ ରଥ ଉପରେ ବନ୍ଦାପନା ହେବା ସମୟରେ ଏଠାରେ ଶ୍ରୀଲକ୍ଷ୍ମୀଙ୍କୁ ବନ୍ଦାପନା ହୋଇଥାଏ ।

**ବାଇଶ ପାହାଚର ଦକ୍ଷିଣ ପାର୍ଶ୍ୱ:-** ଏଠାରେ କେତେଗୁଡ଼ିଏ ମଣ୍ଡପ ବିଦ୍ୟମାନ । ଏହି ସବୁ ମଣ୍ଡପରେ ସୁଆରମାନଙ୍କର ସରଘର ଓ କେତେଗୁଡ଼ିଏ ମଠମାନଙ୍କ ପାଇଁ ଉଦ୍ଦିଷ୍ଟ ।

**ରୋଷଘର ବା ମା' ହିଙ୍ଗୁଳାପୀଠ:-** ଭେଟମଣ୍ଡପର ଦକ୍ଷିଣ ଓ ପଶ୍ଚିମଦିଗରେ ରୋଷଘର ଅବସ୍ଥିତ । ଏହି ପୀଠରେ ଶ୍ରୀଜୀଉଙ୍କ ପାଇଁ ୫୬ପଉଟି ଭୋଗ ପ୍ରସ୍ତୁତ ହେବା ସଙ୍ଗେ ଅଧିକ ବରାଦୀ ଭୋଗ ଓ ଯାବତୀୟ ପ୍ରକାରର ଶୁଖିଲି ଭୋଗ ନିଷ୍ଠା ଓ ସତର୍କତା ସହ ପ୍ରସ୍ତୁତ କରାଯାଏ ।

**ଦକ୍ଷିଣଦ୍ୱାର :-** ରୋଷଘରର ପଶ୍ଚିମ ଦିଗକୁ ଗଲେ କିମ୍ୱା ବାହାରୁ ଦକ୍ଷିଣ ଦିଗରୁ ଶ୍ରୀମନ୍ଦିରକୁ ପ୍ରବେଶ ଦ୍ୱାରକୁ ଦକ୍ଷିଣ ଦ୍ୱାର କୁହାଯାଏ । କେହି କେହି ଏହି ଦ୍ୱାରକୁ ଘୋଡ଼ାଦ୍ୱାର ବୋଲି କହିଥାନ୍ତି ।

**ଷଡ଼ଭୁଜ ଗୌରାଙ୍ଗ :-** ଏହି ପୀଠରେ ଷଡ଼ଭୂଜ ଗୌରାଙ୍ଗ, ନିତ୍ୟାନନ୍ଦ ପ୍ରଭୁ ଓ ଅଦ୍ୱୈତ ପ୍ରଭୁ ପୂଜା ପାଉଛନ୍ତି ।

**ଶ୍ରୀରାମଚନ୍ଦ୍ର ମନ୍ଦିର :-** ମନ୍ଦିର ଭିତରେ ଶ୍ରୀରାମ, ଲକ୍ଷ୍ମଣ, ମା'ସୀତା, ବାଲୀ ଓ ସୁଗ୍ରୀବଙ୍କ ବିଗ୍ରହ ବିରାଜିତ । ମନ୍ଦିର ଉପରେ ସିମେଣ୍ଟଦ୍ୱାରା ନିର୍ମିତ ଏକ ବିରାଟ ସମ୍ପାତି ଚଢ଼େଇ ଅଛି ।

**ଶ୍ରୀବାରଭାଇ ହନୁମାନ :-** ଦକ୍ଷିଣଦ୍ୱାରର ବାମପାର୍ଶ୍ୱରେ ଏହି ମନ୍ଦିର ଅବସ୍ଥିତ । ଏଥିରେ ଥିବା ବାରଭାଇଙ୍କର ନାମ ଯଥା : ନଳ, ନୀଳ, ସୁଗ୍ରୀବ, କନ୍ଦର୍ପ, ଗବାକ୍ଷ, ସୁଷେଣ, ଅଙ୍ଗଦ, ମହାବୀର, ମକରଧ୍ୱଜ, ବାଲୀ, ଅଞ୍ଜନା ଓ ଶ୍ରୀହନୁମାନ ।

**ଶ୍ରୀଗୁରୁଣ୍ଡି ଗୋପାଳ :-** ବାରଭାଇ ହନୁମାନ ମନ୍ଦିର ପରେ ଏହି ମନ୍ଦିର ପଡ଼ିଥାଏ । ଏହି ମନ୍ଦିରରେ ଗୋପାଳଙ୍କର ଗୁରୁଣ୍ଡିବା ସମୟର ଏକ ମୂର୍ତ୍ତି ପୂଜା ପାଉଛନ୍ତି ।

**ଶ୍ରୀପୁରୁଣା ନୃସିଂହ ମନ୍ଦିର :-** ଗୁରୁଣ୍ଡି ଗୋପାଳ ମନ୍ଦିର ପରେ ପଡ଼ିଥାଏ । ଏହି ମନ୍ଦିରକୁ କଲ୍‌କୀ ଅବତାର ମନ୍ଦିର କୁହାଯାଇଥାଏ ।

**ଦେବୀବୁଢ଼ୀମା'ଙ୍କ ମନ୍ଦିର :-** ପୁରୁଣା ନୃସିଂହ ମନ୍ଦିର ପରେ ଏହି ମନ୍ଦିର ପଡ଼ିଥାଏ । ଏହାକୁ ବସନ୍ତେଇ ମନ୍ଦିର କୁହାଯାଏ ।

**ନୀଳାଚଳ ଉପବନ :-** ଦକ୍ଷିଣଦ୍ୱାର ଓ ପଶ୍ଚିମ ଦ୍ୱାରପଟୁ ଏଠାକୁ ବାଟ ଅଛି । ଏହି ଉପବନରେ ଶ୍ରୀବିଗ୍ରହଙ୍କ ପାଇଁ ଫୁଲ ଓ ତୁଳସୀ ଗଛମାନ ଲାଗିଅଛି । ଏହା ଭିତରେ ଗୋଟିଏ ନବଗୁଞ୍ଜର ମୂର୍ତ୍ତି ଓ ଗୋଟିଏ ଶ୍ରୀରାଧାକୃଷ୍ଣଙ୍କର ମୂର୍ତ୍ତି ଅଛି ।

**ନିର୍ମାଲ୍ୟ ଖଳା :-** ଏହି ନିର୍ମାଲ୍ୟ ଖଳାଟି ଉପବନ ଭିତରେ ଅବସ୍ଥିତ । ଏଠାରେ ମହାପ୍ରସାଦକୁ ଶୁଖାଯାଇ ନିର୍ମାଲ୍ୟ କରାଯାଇଥାଏ ।

**ପଞ୍ଚମୁଖୀ ଶ୍ରୀମହାବୀର ମନ୍ଦିର :-** ନିର୍ମାଲ୍ୟ ମଣ୍ଡପର ଉପରେ ପଞ୍ଚମୁଖୀ ଶ୍ରୀ ମହାବୀର ମନ୍ଦିର ଅବସ୍ଥିତ । ଏଠାରେ ମହାବୀରଙ୍କ ପାଞ୍ଚଟି ମୁଣ୍ଡ ଥିବାରୁ ଏହାକୁ ପଞ୍ଚମୁଖୀ ମହାବୀର ମନ୍ଦିର କୁହାଯାଏ ।

**ଶ୍ରୀ ଦୁର୍ଗାମାଧବ ମନ୍ଦିର :-** ମେଘନାଦ ପାଚେରି ଉପରେ ଠିକ୍ ଦକ୍ଷିଣ ଓ ପଶ୍ଚିମ ଦିଗରେ ଏହି ମନ୍ଦିରଟି ଅବସ୍ଥିତ । ନୀଳାଚଳ ଉପବନ ମଧ୍ୟରୁ ଏଠାକୁ ଯାଇ ହେବ ।

**ଶ୍ରୀ ସିଦ୍ଧେଶ୍ୱର ମହାଦେବ ମନ୍ଦିର :-** ଏହି ମନ୍ଦିରଟି ଶ୍ରୀମନ୍ଦିରର ପଶ୍ଚିମ ପଟେ ଅବସ୍ଥିତ । ଏହି ମହାଦେବଙ୍କୁ ତପସ୍ୟା କରି ସିଦ୍ଧି ଲାଭ ହୋଇଥାଏ । ତେଣୁ ଏହାକୁ ଶ୍ରୀ ସିଦ୍ଧେଶ୍ୱର ମହାଦେବ କୁହାଯାଏ ।

**ଶ୍ରୀଚକ୍ରନାରାୟଣ ମନ୍ଦିର :-** ଏହି ମନ୍ଦିରରେ ଶ୍ରୀ ନାରାୟଣ ମୂର୍ତ୍ତି ବିଦ୍ୟମାନ । ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିର ଆଗପଟକୁ ଏହି ମନ୍ଦିର ଅବସ୍ଥିତ ।

**ଶ୍ରୀ ରାମେଶ୍ୱର ମହାଦେବଙ୍କ ମନ୍ଦିର :-** ଏହି ମନ୍ଦିର ପଶ୍ଚିମ ଦ୍ୱାରର ଦକ୍ଷିଣ ଦିଗକୁ ଅବସ୍ଥିତ । ଏହି ମନ୍ଦିରକୁ ମଧ୍ୟ ଚାରିଧାମ ମନ୍ଦିର କୁହାଯାଏ । ଏଠାରେ ଗୋକର୍ଣ୍ଣେଶ୍ୱର, ଶ୍ରୀବଦ୍ରିନାଥ, ଶ୍ରୀ ଦ୍ୱାରିକାନାଥ ଓ ଶ୍ରୀଜଗନ୍ନାଥ ବିଗ୍ରହମାନ ଅଛି ।

**ଶ୍ରୀ ମହାବୀର ମନ୍ଦିର :-** ପଶ୍ଚିମ ଦ୍ୱାରର ଉତ୍ତର ପାର୍ଶ୍ୱରେ ଓ ନୀଳାଦ୍ରିକୁ ଯିବା ବାଟରେ ଏହା ଅବସ୍ଥିତ ।

**ନୀଳାଦ୍ରି ବିହାର :-** ପଶ୍ଚିମଦ୍ୱାରର ଉତ୍ତର ଦିଗରେ ଏହା ଅବସ୍ଥିତ । ଅତୀତରେ ଏହା ମହାପ୍ରଭୁଙ୍କର ଧ୍ୟାନ କୋଠରୀ ଥିଲା । ଏହା ଭିତରକୁ ଯିବା ବାଟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଯେଉଁ ବିଶ୍ୱରୂପ ଦର୍ଶନ କରାଇଥିଲେ, ତାହାର ଚିତ୍ର ରହିଅଛି ।

**ଶ୍ରୀ ଧବଳେଶ୍ୱର ମନ୍ଦିର :-** ଏହି ମନ୍ଦିରରେ ଶ୍ରୀଶିବମୂର୍ତ୍ତି ପୂଜା ପାଉଛନ୍ତି । ଏହାର ପଛପଟେ ବକୁଳବନ ଅବସ୍ଥିତ ।

**କୋଇଲି ବୈକୁଣ୍ଠ :-** ଏହି ସ୍ଥାନଟି ଶ୍ରୀପ୍ରଭୁମାନଙ୍କର ଜନ୍ମ ଓ ଶ୍ମଶାନ ଅଟେ । କାରଣ ନବକଳେବର ସମୟରେ ଏଠାରେ ସମସ୍ତ ଦାରୁ ରଖାଯାଇଥାଏ । ଶାସ୍ତ୍ରାନୁସାରେ ବିଗ୍ରହ ନିର୍ମାଣ ଓ ଶ୍ରୀପ୍ରଭୁମାନଙ୍କର ପୁରୁଣା ବିଗ୍ରହରୁ ନବନିର୍ମିତ ମୂର୍ତ୍ତିକୁ ବ୍ରହ୍ମ ପରିବର୍ତ୍ତନ କରାଯାଏ । ସେହିପରି ଏଠାରେ ସମସ୍ତ ପୁରୁଣା ବିଗ୍ରହଙ୍କୁ ପାତାଳି କରାଯାଇଥାଏ । ଏଠାରେ ଏକ ଛୋଟିଆ ମନ୍ଦିରରେ ଶ୍ମଶାନ ଚଣ୍ଡୀ ମୂର୍ତ୍ତି ଅଛନ୍ତି । ଏଠାରେ ତରୁଲତାରେ ପରିପୂର୍ଣ୍ଣହୋଇ କୁଞ୍ଜପରି ଶୋଭା ପାଉଅଛି ।

**ଶ୍ରୀ ବୈକୁଣ୍ଠନାଥ ମହାଦେବ ମନ୍ଦିର :-** କୋଇଲି ବୈକୁଣ୍ଠର ଦ୍ୱାର ଦେଶରେ ଗୋଟିଏ ଭଗ୍ନ ମନ୍ଦିରରେ ବୈକୁଣ୍ଠନାଥ ମହାଦେବ ପୂଜା ପାଉଅଛନ୍ତି ।

**ଦାରୁଘର :-** ନୂତନ ଦାରୁମୂର୍ତ୍ତି ନିର୍ମାଣପାଇଁ ବିଭିନ୍ନ ସ୍ଥାନରୁ ଦାରୁ ଆସି ଯେଉଁ ଘରେ ମହଜୁଦ ରୁହେ, ତାକୁ ଦାରୁଘର କୁହାଯାଇଥାଏ ।

**ଅର୍ପଣ ଗୋପାଳ ମନ୍ଦିର :-** କୋଇଲି ବୈକୁଣ୍ଠ ଭିତରକୁ ପ୍ରବେଶ କଲାବେଳେ ଏହି ମନ୍ଦିରଟି ଡାହାଣପଟେ ପଡ଼େ । ଏହି ମନ୍ଦିର ବର୍ଦ୍ଧମାନ ରାଜାଙ୍କ ମାର୍ଫତରେ ରହିଛି ।

**ଶ୍ରୀ ମହାବୀର ତପସ୍ୱୀ ହନୁମାନ ମନ୍ଦିର :-** ଏହି ମନ୍ଦିରଟି ଅର୍ପଣ ଗୋପାଳ ମନ୍ଦିରର ଉତ୍ତର ଦିଗରେ ଅର୍ଥାତ୍ ଉତ୍ତରଦ୍ୱାର ଆଡ଼କୁ ଗଲାବେଳେ ବାମ ପଟରେ ପଡ଼ିଥାଏ । ଏହା ଏକ ଭଗ୍ନ ମନ୍ଦିର ଅଟେ ।

**ଶ୍ରୀ ବାମନ ମନ୍ଦିର :-** ମହାବୀର ତପସ୍ୱୀ ମନ୍ଦିର ପାଖରେ ଏହି ମନ୍ଦିର ଅବସ୍ଥିତ । ଏହା ମଧ୍ୟ ଏକ ଭଗ୍ନ ମନ୍ଦିର ଅଟେ ।

**ଶ୍ରୀ ଲକ୍ଷ୍ମୀନୃସିଂହ ମନ୍ଦିର :-** ବାମନ ମନ୍ଦିରର ଉତ୍ତର ଦିଗରେ ଏହି ମନ୍ଦିର ଅବସ୍ଥିତ । ଏଠାରେ ଶ୍ରୀ ନୃସିଂହଙ୍କ ଜାନୁ ଉପରେ ମା'ଲକ୍ଷ୍ମୀ ବିଦ୍ୟମାନ ।

**ଦେବୀ ଉତ୍ତରାୟଣୀ ମନ୍ଦିର :-** ଉତ୍ତରଦ୍ୱାରର ଗୋଟିଏ ପରେ ଗୋଟିଏ ପାହାଚ ଅତିକ୍ରମ କରିଗଲେ ଶ୍ରୀଲକ୍ଷ୍ମୀନୃସିଂହ ମନ୍ଦିର ପରେ ପଡ଼ିଥାଏ ଉତ୍ତରାୟଣୀ ମନ୍ଦିର ।

**ମା'ଶୀତଳା ଠାକୁରାଣୀ ମନ୍ଦିର :-** ଉତ୍ତରଦ୍ୱାରର ପଶ୍ଚିମ ଦିଗରେ ମା'ଶୀତଳା ଠାକୁରାଣୀ ମନ୍ଦିର ଅବସ୍ଥିତ । ବସନ୍ତ, ମିଳିମିଳା, ହାଡ଼ଫୁଟି ସମୟରେ ଏଠାରେ ପଣା ଭୋଗ ଓ ଚନ୍ଦନ ଲାଗି କଲେ ରୋଗ ଭଲ ହୋଇଥାଏ । ଏହି ମନ୍ଦିରର ସମ୍ମୁଖରେ ଏକ କୂପ ଅଛି । ଏହାକୁ ସୁନା କୂପ କୁହାଯାଏ ।

**ଦେବୀ ଝାଡ଼େଶ୍ୱରୀ ଠାକୁରାଣୀ ମନ୍ଦିର :-** ମା'ଶୀତଳା ମନ୍ଦିର ନିକଟରେ ଝାଡ଼େଶ୍ୱରୀ ଠାକୁରାଣୀ ମନ୍ଦିର ଅବସ୍ଥିତ ।

**ଶ୍ରୀ ବେଢ଼ା ଲୋକନାଥ ମନ୍ଦିର :-** ଉତ୍ତର ଦ୍ୱାରର ପୂର୍ବ ଦିଗରେ ଏହି ମନ୍ଦିର ଅବସ୍ଥିତ । ମନ୍ଦିରଟି ବାହାର ବେଢ଼ା ମଧ୍ୟରେ ଥିବାରୁ ଏହାକୁ ଶ୍ରୀ ବେଢ଼ା ଲୋକନାଥ ମନ୍ଦିର କୁହାଯାଏ ।

**ଶ୍ରୀ ଗଣେଶ ମନ୍ଦିର : -** ବେଢ଼ା ଲୋକନାଥ ମନ୍ଦିର ପାଖରେ ଗୋଟିଏ ଛୋଟ ମନ୍ଦିରରେ ଶ୍ରୀଗଣେଶ ପୂଜା ପାଉଛନ୍ତି ।

**ଶ୍ରୀ ପର୍ଶୁନାଥ ମହାଦେବ :-** ଗଣେଶ ମନ୍ଦିରର ଦକ୍ଷିଣ ଦିଗରେ ପର୍ଶୁନାଥ ମହାଦେବ ମନ୍ଦିର ଅବସ୍ଥିତ । ଏହି ମହାଦେବଙ୍କୁ କେହି କେହି ପରେଶନାଥ ବା କାଶୀନାଥ ମହାଦେବ ବୋଲି କହିଥାନ୍ତି ।

**ଶ୍ରୀ ଈଶାନେଶ୍ୱର ମହାଦେବ ମନ୍ଦିର :-** ଉତ୍ତରଦ୍ୱାରପଟୁ ଆନନ୍ଦବଜାରକୁ ଯିବା ବାଟରେ ଡାହାଣ ପଟେ ଈଶ୍ୱାନେଶ୍ୱର ମହାଦେବ ମନ୍ଦିର ଅବସ୍ଥିତ । ଏହି ମନ୍ଦିରକୁ ଯିବାବାଟ ସମ୍ମୁଖରେ ହରପାର୍ବତୀଙ୍କ ବିଗ୍ରହ ଅଛି । ଡାହାଣ ପଟକୁ ଗଲେ ତଳେ ପଡ଼ିଥାଏ ଶ୍ରୀ ଈଶାନେଶ୍ୱର ମନ୍ଦିର । କେତେକଙ୍କ ମତରେ ଏହି ମନ୍ଦିର ଭିତରେ ଗୁପ୍ତଗଙ୍ଗା ଅଛନ୍ତି ।

**ଆନନ୍ଦ ବଜାର :-** ଶ୍ରୀମନ୍ଦିରର ଉତ୍ତରପୂର୍ବ ଦିଗରେ ପଡ଼ିଥାଏ ଆନନ୍ଦ ବଜାର । ଶ୍ରୀମହାପ୍ରଭୁମାନଙ୍କ ପାଖରେ ଭୋଗ ହେଉଥବା ସମସ୍ତ ପ୍ରକାରର ଭୋଗ ସାମଗ୍ରୀ ଏଠାରେ ବିକ୍ରି ହୋଇଥାଏ । ଏଥି ସହିତ ଅନେକ ଗୁଡ଼ିଏ ଭୋଗମଣ୍ଡପ, ଦୋକାନଘର ଓ ଖାଇବା ମଣ୍ଡପ ଅଛି ।

**ସ୍ନାନ ମଣ୍ଡପ :-** ଆନନ୍ଦବଜାରର ପୂର୍ବଦିଗରେ ସ୍ନାନମଣ୍ଡପ ଅବସ୍ଥିତ । ଜ୍ୟେଷ୍ଠମାସ ପୂର୍ଣ୍ଣିମା ଦିନ ସୁନା କୂଅରୁ ୧୦୮ ଗରା ପାଣି ଆଣି ଶ୍ରୀଜୀଉମାନଙ୍କୁ ସ୍ନାନ କରାଯାଏ ।

**ଚାହାଣି ମଣ୍ଡପ :-** ସ୍ନାନ ମଣ୍ଡପର ଦକ୍ଷିଣ ଦିଗରେ ଏହି ମଣ୍ଡପଟି ଅବସ୍ଥିତ । ଏଠାରେ ଶ୍ରୀଲକ୍ଷ୍ମୀଦେବୀ ଉପସ୍ଥିତ ହୋଇ ଶ୍ରୀଜଗନ୍ନାଥଙ୍କୁ ଚାହୁଁଥିବାରୁ ଏହାକୁ ଚାହାଣୀ ମଣ୍ଡପ କୁହାଯାଏ ।

**ଶ୍ରୀମନ୍ଦିର ଭିତର ବେଢ଼ା :-** ସିଂହଦ୍ୱାର ପଟୁ ଆସି ବାଇଶ ପାହାଚ ଅତିକ୍ରମ କଲାପରେ ପଡ଼ିଥାଏ କୂର୍ମ ପାଚେରି । ଏହି ପାଚେରିକୁ ଏକ ଦ୍ୱାର ଭିତରେ ପ୍ରବେଶ କଲେ ପଡ଼ିଥାଏ ଶ୍ରୀମନ୍ଦିରର ଭିତର ବେଢ଼ା ।

**ଭୋଗ ମଣ୍ଡପ :-** ଏହି ପାଚେରିର ସମ୍ମୁଖରେ ପଡ଼ିଥାଏ ଭୋଗ ମଣ୍ଡପ । କେହି କେହି ଏହାକୁ ଭଅଁଷ ଘର ବୋଲି କହିଥାନ୍ତି ।

**ଶ୍ରୀ ଅଗ୍ନୀଶ୍ୱର ମହାଦେବ :-** ବାଇଶି ପାହାଚ ପାରି ହୋଇ କୂର୍ମଦ୍ୱାର ଦେଇ ଭିତର ବେଢାକୁ ପଡ଼ିଥାଏ । ଭିତର ବେଢା ଆରମ୍ଭରୁ ବାମ ପାର୍ଶ୍ୱକୁ ଗଲେ ପାକଶାଳାଠାରୁ ଭୋଗମଣ୍ଡପ ପର୍ଯ୍ୟନ୍ତ ଯେଉଁ ରାସ୍ତା ଅଛି ତାହା ପାର୍ଶ୍ୱରେ ଅଗ୍ନୀଶ୍ୱର ମନ୍ଦିର ଅଛି । ଏହି ଆଗ୍ନେୟଶ୍ୱର ମହାଦେବ ହେଉଛନ୍ତି କୂର୍ମ ବେଢ଼ାର ପ୍ରତିପାଳକ ଓ ରୋଷର ଅଗ୍ନିରକ୍ଷକ ।

**ଶ୍ରୀସତ୍ୟନାରାୟଣ ମନ୍ଦିର :-** ଶ୍ରୀ ଆଗ୍ନେୟଶ୍ୱର ମହାଦେବ ମନ୍ଦିର ଅତିକ୍ରମ କଲାପରେ ପଡ଼ିଥାଏ ଶ୍ରୀସତ୍ୟନାରାୟଣ ମନ୍ଦିର । କେହି କେହି ଏହାକୁ ସତ୍ୟପୀର ବୋଲି କହିଥାନ୍ତି ।

**ଶ୍ରୀରାଧାରମଣଙ୍କ ମନ୍ଦିର :-** ଶ୍ରୀ ସତ୍ୟନାରାୟଣଙ୍କ ମନ୍ଦିରର ପଶ୍ଚିମ ଦିଗକୁ ଗଲେ ପଡ଼ିଥାଏ ଶ୍ରୀରାଧାରମଣଙ୍କ ମନ୍ଦିର । ଏହା ଭିତରେ ଶ୍ରୀରାଧାକୃଷ୍ଣଙ୍କର ମୂର୍ତ୍ତି ପୂଜା ପାଉଛନ୍ତି । ଏହି ମନ୍ଦିରର ମାର୍ଫତ୍‌ଦାର ହେଉଛନ୍ତି ବର୍ଦ୍ଧମାନ ମହାରାଜ ।

**ଶ୍ରୀବଟକୃଷ୍ଣ ମନ୍ଦିର :-** ଶ୍ରୀରାଧାରମଣଙ୍କ ମନ୍ଦିର ପାଖରେ ପଡ଼ିଥାଏ ଶ୍ରୀ ବଟକୃଷ୍ଣ ମନ୍ଦିର । ଏହି

ମନ୍ଦିରକୁ ଭିତର ବେଢ଼ା ବଟକୃଷ୍ଣ ମଧ୍ଯ କୁହାଯାଇଥାଏ ।

**ଶ୍ରୀବ୍ରହ୍ମା, ଶ୍ରୀବିଷ୍ଣୁ, ଶ୍ରୀମହେଶ୍ଵର ମନ୍ଦିର :-** ଶ୍ରୀରାଧାକୃଷ୍ଣଙ୍କ ମନ୍ଦିର ପାଖକୁ ଗୋଟିଏ ଛୋଟ ମନ୍ଦିରରେ ଶ୍ରୀବ୍ରହ୍ମା, ଶ୍ରୀବିଷ୍ଣୁ, ଶ୍ରୀମହେଶ୍ଵର ପୂଜା ପାଉଛନ୍ତି ।

**ଶ୍ରୀ ହରି ସହଦେବ ମନ୍ଦିର :-** ଶ୍ରୀବ୍ରହ୍ମା, ଶ୍ରୀବିଷ୍ଣୁ, ଶ୍ରୀମହେଶ୍ଵର ମନ୍ଦିର ପାଖରେ ଏହି ମନ୍ଦିରଟି ଅବସ୍ଥିତ । ହରି ସହଦେବ ହେଉଛନ୍ତି ଶ୍ରୀଜଗନ୍ନାଥଙ୍କ ଗୋଧନର ମାଲିକ ।

**ଶ୍ରୀ ବଟଜଗନ୍ନାଥ ମନ୍ଦିର :-** ଶ୍ରୀ ହରି ସହଦେବଙ୍କ ମନ୍ଦିର ପାଖକୁ ଓ କୂର୍ମ ବେଢ଼ାକୁ ଲାଗିକରି ଉତ୍ତରମୁଖା ହୋଇ ଏହି ମନ୍ଦିରଟି ପଡ଼ିଥାଏ । ସିଂହାସନ ଉପରେ ଗୋଟିଏ ଶ୍ରୀଜଗନ୍ନାଥ ମୂର୍ତ୍ତି ପୂଜା ପାଉଛନ୍ତି ।

**ଶ୍ରୀ ବାଲମୁକୁନ୍ଦ ମନ୍ଦିର :-** ବଟ ଜଗନ୍ନାଥ ମନ୍ଦିରର ସମ୍ମୁଖରେ ଓ ବାଟମଙ୍ଗଳାଙ୍କ ଦକ୍ଷିଣରେ ଏହି ମନ୍ଦିରଟି ଅବସ୍ଥିତ । ଏଠାରେ ଗୋଟିଏ ଛୋଟ ଶ୍ରୀକୃଷ୍ଣମୂର୍ତ୍ତି ପୂଜା ପାଉଛନ୍ତି ।

**ଶ୍ରୀ ବଟ ଗଣେଶ ମନ୍ଦିର :-** ବଟବୃକ୍ଷ ମୂଳରେ ଥିବାରୁ ଏହାର ନାମ ବଟ ଗଣେଶ ହୋଇଅଛି । କେହି କେହି ଏହାକୁ କଳ୍ପ ଗଣେଶ ବା ଚିନ୍ତାମଣି ଗଣେଶ କହିଥାନ୍ତି ।

**ଶ୍ରୀ ବଟ ମଙ୍ଗଳା ମନ୍ଦିର :-** ମତ୍ସ୍ୟପୁରାଣ ଅନୁସାରେ ମା'ସର୍ବମଙ୍ଗଳା ତନ୍ତ୍ରସାଧନାର ଶ୍ରେଷ୍ଠପୀଠ ।

**ଶ୍ରୀ ପଞ୍ଚୁପାଣ୍ଡବ ମନ୍ଦିର :-** ବଟମଙ୍ଗଳା ମନ୍ଦିରର ଅଳ୍ପ ଦୂରରେ ଏହା ଅବସ୍ଥିତ । କିମ୍ବଦନ୍ତୀ ଅଛି ଯେ, ପାଣ୍ଡବମାନେ ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରିବାପାଇଁ ଏଠାରେ ପ୍ରାର୍ଥନା କରିଥିଲେ ।

**ଶ୍ରୀ ବରାହ ନାରାୟଣ ମନ୍ଦିର :-** ଏହି ମନ୍ଦିରରେ ବରାହ ନାରାୟଣ ପୂଜା ପାଉଛନ୍ତି ।

**କଳ୍ପବଟ:-** ଶ୍ରୀମନ୍ଦିରର ଏହି କଳ୍ପବଟଟି ଅତି ପ୍ରାଚୀନ ।

**ଶ୍ରୀ ସୂର୍ଯ୍ୟମନ୍ଦିର :-** ପ୍ରଥମେ ସୂର୍ଯ୍ୟୋଦୟ ହୋଇ ସୂର୍ଯ୍ୟଙ୍କର ଉପାସନାପରେ ଶ୍ରୀମନ୍ଦିରର ସମସ୍ତ ନୀତି ଆରମ୍ଭ ହୋଇଥାଏ ।

**ଶ୍ରୀ ଅନନ୍ତ ବାସୁଦେବ ମନ୍ଦିର :-** ମୁକ୍ତିମଣ୍ଡପର ବାମ ପାର୍ଶ୍ୱରେ ଅନନ୍ତ ବାସୁଦେବ ପୂଜା ପାଉଛନ୍ତି ।

**ଶ୍ରୀ କୁତାମଚଣ୍ଡୀ ମନ୍ଦିର :-** ଶ୍ରୀ ଅନନ୍ତବାସୁଦେବ ମନ୍ଦିରର କାନ୍ଥରେ ମା'କୁତାମଚଣ୍ଡୀ ଅଛନ୍ତି ତାଙ୍କ ଶରୀରଟି କୁକୁରପରି ଓ ମସ୍ତିଷ୍କଟି ମଣିଷ ପରି ଅଟେ ।

**ଶ୍ରୀ କ୍ଷେତ୍ରପାଳ ମହାଦେବ ମନ୍ଦିର :-** ଏହା ଏକ ଶିବ ମନ୍ଦିର । କ୍ଷେତ୍ରପାଳୀ ଭୈରବୀ ନାମରେ ପରିଚିତ ।

**ମୁକ୍ତିମଣ୍ଡପ :-** ଏହି ପୀଠଟି ମୁଖ୍ୟ ମନ୍ଦିରର ଦକ୍ଷିଣ ଦିଗରେ ଓ ସମ୍ମୁଖରେ ଅବସ୍ଥିତ । କଥିତ ଅଛି ମନ୍ଦିର ନିର୍ମାଣ ସମୟରେ ଶ୍ରୀବ୍ରହ୍ମା ଏହି ମଣ୍ଡପରେ ବସି ଇନ୍ଦ୍ରଦ୍ୟୁମ୍ନଙ୍କୁ ମନ୍ଦିର ନିର୍ମାଣ ବାବଦରେ ସମସ୍ତ ପ୍ରକାର କୌଶଳ ଶିକ୍ଷା ଦେଉଥିଲେ । ବର୍ତ୍ତମାନ ଏହି ମଣ୍ଡପରେ ବ୍ରାହ୍ମଣ ସମାଜର ବିଦ୍ୱାନ ପଣ୍ଡିତମାନେ ବସି ଧର୍ମ ସମ୍ବନ୍ଧୀୟ ବିଭିନ୍ନ ଶାସ୍ତ୍ର ଆଲୋଚନା କରନ୍ତି । ଏଠାରେ ମଧ ଧର୍ମ ଓ ସାମାଜିକ ସମ୍ବନ୍ଧୀୟ ନୀତି ପ୍ରଣୟନ ହୁଏ । ଯାହାକୁ ଶହ ଶହ ଜଗନ୍ନାଥପ୍ରେମୀ ବିଶ୍ୱାସ କରନ୍ତି ଓ ସେହି ନିୟମାନୁସାରେ କାର୍ଯ୍ୟକରନ୍ତି, ୧୬ଟି ସ୍ତମ୍ଭ ଉପରେ ଆଧାରିତ ଲମ୍ବ ଓ ପ୍ରସ୍ଥ ପ୍ରାୟ ୩୮ ଫୁଟ ।

**ଶ୍ରୀମୁକ୍ତେଶ୍ୱର ମହାଦେବ ମନ୍ଦିର :-** ମୁକ୍ତି ମଣ୍ଡପ କଡ଼କୁ ଏହି ମନ୍ଦିର ଅବସ୍ଥିତ । ଏହାଙ୍କୁ ପୂଜାର୍ଚ୍ଚନା କଲେ ଓ ଏହାଙ୍କ ପାଖରେ 'ମହାମୃତ୍ୟୁଞ୍ଜୟ କବଚ' ଜପ କଲେ ମୁକ୍ତି ମିଳେ ବୋଲି ଏହାକୁ ଶ୍ରୀ ମୁକ୍ତେଶ୍ୱର ମହାଦେବ କୁହାଯାଏ ।

**ଶ୍ରୀନୃସିଂହ ମନ୍ଦିର :-** ମୁକ୍ତି ମଣ୍ଡପର ପଶ୍ଚିମ ଦିଗରେ ଏହି ମନ୍ଦିର ପଡ଼େ । ଶ୍ରୀମନ୍ଦିରର ସମସ୍ତ ପ୍ରତିଷ୍ଠା ଅବସରରେ ଯଜ୍ଞନୃସିଂହଙ୍କର ସମସ୍ତ ପୂଜା କରାଯାଏ । ମନ୍ଦିରର ଗାତ୍ରରେ ଶ୍ରୀମନ୍ଦିରର ଅନେକ ଶିଳାଲେଖ ରହିଛି ।

**ଜଳକ୍ରୀଡ଼ା ମଣ୍ଡପ:-** ଏହି ମଣ୍ଡପରେ ଶ୍ରୀଜଗନ୍ନାଥଙ୍କର ଦୀର୍ଘ ୨୧ଦିନ ଭିତର ଚନ୍ଦନଯାତ୍ରା ପାଳନ କରାଯାଏ ।

**ରୋହିଣୀ କୁଣ୍ଡ :-** ଜଳକ୍ରୀଡ଼ା ମଣ୍ଡପର ସମ୍ମୁଖରେ ଏକ ଛୋଟ କୁଣ୍ଡ ଅଛି, ତାହାକୁ ରୋହିଣୀ କୁଣ୍ଡ କୁହାଯାଏ । ଏହି କୁଣ୍ଡର ଜଳ ପବିତ୍ର ଅଟେ । କଥିତ ଅଛି ଏହି ଜଳରେ ପଡ଼ି ଗୋଟିଏ କାଉ ଚତୁର୍ଭୁଜ ହୋଇ ଭୁଷଣ୍ଡ କାକ ନାମରେ ନାମିତ ହୋଇଛି ।

**ନାଟୁଆ ଗଣେଶ :-** ଜଳକ୍ରୀଡ଼ା ମଣ୍ଡପର ପଶ୍ଚିମ ଦିଗର ଦକ୍ଷିଣକୁ ମୁଖ କରି ଅବସ୍ଥିତ ଏହି ମୂର୍ତ୍ତିଟି ଗୋଟିଏ ମୂଷା ଉପରେ ନାଚିବା ଠାଣିରେ ଠିଆ ହୋଇଥିବାରୁ ଏହାକୁ ନାଟୁଆ ମଣ୍ଡପ ଗଣେଶ କୁହାଯାଏ ।

**ଶ୍ରୀ ବଦ୍ରିନାରାୟଣ ମନ୍ଦିର :-** ଏହି ମନ୍ଦିରଟି ମା'ବିମଳା ଦେବୀଙ୍କ ମନ୍ଦିରର ଦକ୍ଷିଣରେ ଅବସ୍ଥିତ ।

**ମା' ଶ୍ରୀ ବିମଳା ମନ୍ଦିର :-** ଊଣା ଅଧିକେ ସମସ୍ତେ ଏହି ମନ୍ଦିରକୁ ଜାଣନ୍ତି । ମା'ବିମଳା ହେଉଛନ୍ତି ଏହି ମନ୍ଦିରର ଅଧିଷ୍ଠାତ୍ରୀ ଦେବୀ । ଏହି ମନ୍ଦିର ତନ୍ତ୍ର ସାଧନାର ଏକ ପୀଠ ଅଟେ । ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ଭୋଗ, ପୁନରାୟ ଏଠାରେ ଲାଗି ହେଲେ ତାହା ମହାପ୍ରସାଦ ହୋଇଥାଏ ।

**ଶ୍ରୀ ବେଣୁମାଧବ ମନ୍ଦିର :-** ବିମଳା ମନ୍ଦିରର ଉତ୍ତରରେ ଏହି ମନ୍ଦିରଟି ଅବସ୍ଥିତ । ଏହି ମନ୍ଦିରରେ ଶ୍ରୀ ଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା'ସୁଭଦ୍ରା ପୂଜା ପାଉଛନ୍ତି ।

**ମଣ୍ଡଣି ଘର :-** ବେଣୁମାଧବ ମନ୍ଦିର ପରେ ପଡ଼ିଥାଏ । ଏଠାରେ ବିଭିନ୍ନ ପ୍ରକାରର ବିଗ୍ରହ ପୂଜା ପାଉଛନ୍ତି । ଯଥା, ଗୁପ୍ତେଶ୍ୱର ମହାଦେବ, ନନ୍ଦଯଶୋଦା, ବାସୁଦେବ, ଦେବକୀ, ଦାମ, ସୁଦାମ, ରାମ, ବଳରାମ,ଗୋପାଳ, ନୃସିଂହ, ରାମଚନ୍ଦ୍ର ହନୁମାନ ଇତ୍ୟାଦି ।

**ପାଦ ପଦ୍ମ :-** ମଣ୍ଡଣୀଘର ନିକଟରେ ଏହା ଅବସ୍ଥିତ । ଶ୍ରୀ ମନ୍ଦିରର ଅନେକ ପାଦପଦ୍ମ ଏଠାରେ ରହିଅଛି ।

**ଦେଉଳ ନକ୍ସା :-** ଏହି ମନ୍ଦିରଟି ପାଦପଦ୍ମ ପାଖରେ ଅବସ୍ଥିତ ଏଥିରେ ଶ୍ରୀମନ୍ଦିରର ସମସ୍ତ ପ୍ରକାରର ନକ୍ସା ଅଛି । ଶ୍ରୀମନ୍ଦିର ନିର୍ମାଣ ପୂର୍ବରୁ ଏପରି ଏକ ମନ୍ଦିର ନିର୍ମାଣ କରି ତା'ପରେ ଶ୍ରୀମନ୍ଦିର ନିର୍ମାଣ କରିଥିଲେ ବୋଲି ଅନୁମେୟ ।

**ଶ୍ରୀ ସାକ୍ଷୀ ଗୋପାଳମନ୍ଦିର :-** ଜଗନ୍ନାଥଙ୍କ ପରମ ଭକ୍ତ ତଥା ଓଡ଼ିଶାର ଗଜପତି ମହାରାଜା ପୁରଷୋତ୍ତମ ଦେବ ଶ୍ରୀ ଜଗନ୍ନାଥ ଓ ବଳଭଦ୍ରଙ୍କର ସହାୟତାରେ ଯୁଦ୍ଧରେ କାଞ୍ଚି ରାଜାଙ୍କୁ ପରାସ୍ତ କରି କାଞ୍ଚିରୁ ଫେରିବା ସମୟରେ ନିଜ ସାଙ୍ଗରେ ଗୋପୀନାଥ ବା ସାକ୍ଷୀଗୋପାଳଙ୍କୁ ନେଇ ଆସି ଏହି ମନ୍ଦିରରେ ସ୍ଥାପନା କରାଇଥିଲେ ।

**ଶ୍ରୀ କାଞ୍ଚି ଗଣେଶ ମନ୍ଦିର :-** କାଞ୍ଚିରାଜାଙ୍କୁ ପରାସ୍ତ କରି ଓଡ଼ିଶାର ଗଜପତି ପୁରୁଷୋତ୍ତମ ଦେବ ପଦ୍ମାବତୀ, କାଞ୍ଚି ଗଣେଶ ଓ ସାକ୍ଷୀ ଗୋପାଳଙ୍କୁ ଆଣିଥିଲେ । କାଞ୍ଚି ଗଣେଶଙ୍କ ଅନ୍ୟନାମ କାମଦ ଗଣେଶ ଅଟେ ।

**ଶ୍ରୀ ଗୋପୀନାଥ ମନ୍ଦିର :-** ଏହି ମନ୍ଦିରଟି ପଶ୍ଚିମଦ୍ୱାରର ବାମପାର୍ଶ୍ୱରେ ଭିତର ବେଢ଼ା ମଧ୍ୟରେ ଉତ୍ତର ଦିଗକୁ ଅବସ୍ଥିତ ।

**ଶ୍ରୀ ଖିରଚୋରା ଗୋପୀନାଥ ମନ୍ଦିର :-** ଏହି ମନ୍ଦିରଟି କାଞ୍ଚିଗଣେଶ ମନ୍ଦିର ପାଖରେ ଅବସ୍ଥିତ । ଖିର ଚୋରିକରି ପିଇଥିବାରୁ ଏହି ଠାକୁରଙ୍କୁ ଖିରଚୋରା ଗୋପୀନାଥ କୁହନ୍ତି ।

**ମା' ଭୁବନେଶ୍ୱରୀ ମନ୍ଦିର :-** ଖିର ଚୋରା ଗୋପୀନାଥ ମନ୍ଦିର ପାଖରେ ଏହି ମନ୍ଦିରଟି ପଡ଼ିଥାଏ । ଏହି ମନ୍ଦିରରେ ଶ୍ରୀନୃସିଂହ, ଶ୍ରୀସରସ୍ୱତୀ, ଶ୍ରୀଭୁବନେଶ୍ୱରୀ, ଶ୍ରୀକମଳା, ଶ୍ରୀଷଷ୍ଠୀ, ଶ୍ରୀ ସାବିତ୍ରୀ ଓ ମା ଶ୍ରୀ ଗାୟତ୍ରୀ ଦେବୀ ପୂଜା ପାଉଛନ୍ତି ।

**ଶ୍ରୀ ନୀଳମାଧବ ମନ୍ଦିର :-** ଶ୍ରୀ ମନ୍ଦିରର ପଶ୍ଚିମ ପାର୍ଶ୍ୱରେ ଏହି ମନ୍ଦିରଟି ଅବସ୍ଥିତ । ଶବରରାଜ ବିଶ୍ୱାବସୁ ନୀଳମାଧବଙ୍କ ସେବକ ଥିଲେ । ସତ୍ୟଯୁଗରେ ଏହି ସ୍ଥାନ ନୀଳକନ୍ଦର ଥିଲା । ଏହି

ସ୍ଥାନରେ ନୀଳମାଧବଙ୍କ ଆସ୍ଥାନ ରହିଥିଲା ।

**ଶ୍ରୀ ମା' ବେଢ଼ାକାଳୀ ମନ୍ଦିର :-** ଏହି ମନ୍ଦିରର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି, ଯନ୍ତ୍ରଧାରିଣୀ ମହାମାୟୀ କାଳୀକା । ଏହାକୁ ଭଦ୍ରକାଳୀ ବୋଲି କୁହାଯାଏ ।

**ଶ୍ରୀଲକ୍ଷ୍ମୀନାରାୟଣ ମନ୍ଦିର :-** ଏଠାରେ ଲକ୍ଷ୍ମୀ ଓ ନାରାୟଣଙ୍କୁ ପୂଜା କରାଯାଏ ।

**ମା' ଶ୍ରୀ ମହାଲକ୍ଷ୍ମୀ ମନ୍ଦିର :-** ଊଣା ଅଧିକେ ସମସ୍ତ ଭକ୍ତ ଏହି ମନ୍ଦିରକୁ ଜାଣିଥାନ୍ତି । କାରଣ ମା ମହାଲକ୍ଷ୍ମୀ ହେଉଛନ୍ତି ଶ୍ରୀବିଷ୍ଣୁଙ୍କ ତଥା ଶ୍ରୀଜଗନ୍ନାଥଙ୍କ ସହଧର୍ମିଣୀ ଓ ଧନ, ରତ୍ନ, ସୁନା ଓ ସମ୍ପତ୍ତି ପ୍ରଦାୟିନୀ ।

**ଶ୍ରୀ ନବଗ୍ରହ ମନ୍ଦିର :-** ଶ୍ରୀ ମହାଲକ୍ଷ୍ମୀ ମନ୍ଦିରର ଉତ୍ତର ପାର୍ଶ୍ୱରେ ଏହି ମନ୍ଦିର ଅବସ୍ଥିତ । ଏଠାରେ ନବଗ୍ରହ ତଥା : ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁ ପୂଜା ପାଉଛନ୍ତି ।

**ଶ୍ରୀ ଲକ୍ଷ୍ମୀନାରାୟଣ ମନ୍ଦିର :-** ନବଗ୍ରହ ମନ୍ଦିରର ପୂର୍ବଦିଗରେ ଏହି ମନ୍ଦିରଟି ଅବସ୍ଥିତ । ଏହି ମନ୍ଦିରରେ ଶ୍ରୀ ରାଧାବଲ୍ଲଭ ଓ ଶ୍ରୀ ଲକ୍ଷ୍ମୀନାରାୟଣ ପୂଜା ପାଉଛନ୍ତି ।

**ଶ୍ରୀ ସୂର୍ଯ୍ୟ ମନ୍ଦିର :-** ଏଠାରେ ସୂର୍ଯ୍ୟଙ୍କ ମୂର୍ତ୍ତି ଅଛି । କୋଣାର୍କ ମନ୍ଦିର ଭାଙ୍ଗିବାପରେ ସେଠାରେ ସୂର୍ଯ୍ୟ ବିଗ୍ରହଙ୍କୁ ସ୍ଥାନାନ୍ତରିତ କରି ଏଠାରେ ସ୍ଥାପନା କରାଯାଇଛି ।

**ଶ୍ରୀ ଦଧିବାମନ ମନ୍ଦିର :-** ସୂର୍ଯ୍ୟଦେବ ମନ୍ଦିରର ପୂର୍ବପାର୍ଶ୍ୱରେ ଏହି ମନ୍ଦିର ଅବସ୍ଥିତ, ଏଠାରେ ମନ୍ଦିର କାନ୍ଥରେ ଶ୍ରୀ ଗଜଲକ୍ଷ୍ମୀଙ୍କର ଏକ ବିଗ୍ରହ ପୂଜା ପାଉଛନ୍ତି ।

**ଶ୍ରୀଜଗନ୍ନାଥଙ୍କ ଶିକ୍ଷା ଓ ସଂସ୍କୃତି ସଂସଦ :-** ଏହା ଏକ ନୂତନ ଅନୁଷ୍ଠାନ । ଏଠାରେ ଶ୍ରୀଜଗନ୍ନାଥ ସମ୍ବନ୍ଧୀୟ ସମସ୍ତ ପ୍ରକାର ନୀତି ଶିକ୍ଷା ଦିଆଯାଏ ।

**ଶ୍ରୀରାମଚନ୍ଦ୍ର ଠାକୁର ମନ୍ଦିର :-** ଦଧିବାମନ ମନ୍ଦିର ପୂର୍ବ ପାର୍ଶ୍ୱରେ ଏହି ମନ୍ଦିର ଅବସ୍ଥିତ । ଏଠାରେ ଶ୍ରୀରାମ, ଲକ୍ଷ୍ମଣ, ମା ସୀତା ଆଦି ପୂଜାପାଉଛନ୍ତି ।

**ଶ୍ରୀ ପାତାଳେଶ୍ୱର ମହାଦେବ ମନ୍ଦିର :-** କୂର୍ମ ପାଚେରିର ପାର୍ଶ୍ୱ ଦ୍ୱାର ନିକଟରେ ପଶ୍ଚିମକୁ ଏହି ମନ୍ଦିର ଅବସ୍ଥିତ । ଏଠାରେ ମହାଦେବଙ୍କ ଲିଙ୍ଗ ମୂର୍ତ୍ତି ବହୁ ତଳେ ରହିଛନ୍ତି ।

**ଶ୍ରୀ ପାଦପଦ୍ମ ମନ୍ଦିର :-** ପ୍ରଥମେ ଭକ୍ତ ଶିରୋମଣି ଶ୍ରୀ ଚୈତନ୍ୟଙ୍କ ପାଦ ଚିହ୍ନ ଜଗମୋହନର ଗରୁଡ଼ସ୍ତମ୍ଭ ପଛପଟେ ଥିଲା । ସେଠାରୁ ନେଇ ଶ୍ରୀ ପାଦପଦ୍ମ ମନ୍ଦିରରେ ରଖାଯାଇଅଛି ।

**ଶ୍ରୀ ନାରାୟଣ ମନ୍ଦିର :-** ଶ୍ରୀପାଦପଦ୍ମ ମନ୍ଦିର ପାଖରେ ନାରାୟଣଙ୍କ ମନ୍ଦିର ଅବସ୍ଥିତ ।

**ଶ୍ରୀ ମନ୍ଦିର କାର୍ଯ୍ୟାଳୟ :-** ଏଠାରେ ଦାନ ଓ ଦକ୍ଷିଣା ଆଦି ଗ୍ରହଣ କରାଯାଏ ।

**ଶ୍ରୀ ରାଧାକୃଷ୍ଣଙ୍କ ମନ୍ଦିର :-** ଶ୍ରୀମନ୍ଦିର କାର୍ଯ୍ୟାଳୟ ସମ୍ମୁଖରେ ଭୋଗମଣ୍ଡପ କଡ଼ରେ ଓ ସାତ ପାହାଚ ପୂର୍ବ ଦିଗରେ ଏହି ମନ୍ଦିର ଅବସ୍ଥିତ ।

**ନାଭିକଟା ମଣ୍ଡପ :-** ଏଠାରେ ଶ୍ରୀକୃଷ୍ଣଙ୍କ ଜନ୍ମ ଦିନରେ ନାଭି କଟାଯାଏ ।

**ଦେବସଭା ମଣ୍ଡପ :-** ନାଭିକଟା ମଣ୍ଡପର କିଛି ଦୂରରେ ପଶ୍ଚିମ ଦିଗରେ ଏହି ମଣ୍ଡପ ଅବସ୍ଥିତ । କଥିତ ଅଛି ଯେ, ଏଠାରେ ଦେବତାମାନେ ତାଙ୍କ ସଭା କରୁଥିଲେ ।

**ପାଦୁକା କୁଣ୍ଡ :-** ଦେବସଭା ମଣ୍ଡପ ପାଖରେ ପାଦୁକା କୁଣ୍ଡ ଅବସ୍ଥିତ । ଶ୍ରୀମହାପ୍ରଭୁମାନଙ୍କ ନୀତିରେ ବ୍ୟବହୃତ ହେଉଥିବା ଜଳ ଏଠାରେ ଜମା ହୁଏ । ଏହି ଜଳକୁ ଭକ୍ତମାନେ ପାଦୁକା ରୂପେ ଗ୍ରହଣ କରିଥାନ୍ତି ।

**ଶ୍ରୀ ବଳିବାମନ ମନ୍ଦିର :-** ପାଦୁକା କୁଣ୍ଡ ଉପରେ ଏକ ଛୋଟିଆ ମନ୍ଦିର ଅଛି ଏହି ମନ୍ଦିରରେ ବଳିବାମନ ପୂଜା ପାଉଛନ୍ତି ।

**ଶ୍ରୀ ନିଶାନୃସିଂହ ମନ୍ଦିର :-** ପଶ୍ଚିମଦ୍ୱାର ଦେଇ ମନ୍ଦିରକୁ ପ୍ରବେଶ କଲେ ମୁଖ୍ୟ ମନ୍ଦିରର ପଶ୍ଚିମ ଦିଗର ବହୁ ଉଚ୍ଚରେ ଏହି ମନ୍ଦିର ଅବସ୍ଥିତ ।

**ଏକାଦଶୀ ମନ୍ଦିର :-** ସାକ୍ଷୀଗୋପାଳ ମନ୍ଦିର ସମ୍ମୁଖରେ ଓ ମୁଖ୍ୟ ମନ୍ଦିରର ଦକ୍ଷିଣ ପଶ୍ଚିମ କୋଣ ତଳେ ଏହି ମନ୍ଦିର ଅବସ୍ଥିତ ।

**କଳିଯୁଗ ଭେଣ୍ଟା ମନ୍ଦିର :-** ରୋହିଣୀକୁଣ୍ଡ ସିଧା ମୁଖ୍ୟ ମନ୍ଦିର ଦକ୍ଷିଣ ପାର୍ଶ୍ୱରେ ଏହି ମନ୍ଦିରଟି ଅବସ୍ଥିତ । ଏଠାରେ ଏକ ବିରାଟକାୟ ମୂର୍ତ୍ତି ବିରାଜମାନ ।

**ଦକ୍ଷିଣ ଘର :-** ମୁକ୍ତି ମଣ୍ଡପର ସମ୍ମୁଖରେ ମୁଖ୍ୟ ମନ୍ଦିରର ଦକ୍ଷିଣପାର୍ଶ୍ୱରେ ଦକ୍ଷିଣ ଘରଟି ଅବସ୍ଥିତ । ଏହି ମନ୍ଦିରରେ ବିଭିନ୍ନ ପ୍ରକାର ଦେବ ଦେବୀଙ୍କର ପ୍ରତିମା ବିଦ୍ୟମାନ ।

**ମାଜଣା ମଣ୍ଡପ :-** ଏହି ମଣ୍ଡପଟି ମୁକ୍ତି ମଣ୍ଡପର ସମ୍ମୁଖରେ ମୁଖ୍ୟ ମନ୍ଦିରର ଦକ୍ଷିଣପୂର୍ବ ଦିଗରେ ଅବସ୍ଥିତ ।

**ଦେବୀ ଇନ୍ଦ୍ରାଣୀ ମନ୍ଦିର :-** ବଟମୂଳରେ ମନ୍ଦିରର ଦକ୍ଷିଣ ପାର୍ଶ୍ୱବେଢ଼ାରେ ଅବସ୍ଥିତ ।

**ଶ୍ରୀ ବଟବଳଭଦ୍ର ଠାକୁର :-** ଏହା ବଟ ମୂଳରେ ଥିବାରୁ ଏହାକୁ ବଟ ବଳଭଦ୍ର କୁହାଯାଏ । ସେ ହେଉଛନ୍ତି ପୂଜାପଣ୍ଡାଙ୍କର ଇଷ୍ଟ ଦେବତା ।

**ଶ୍ରୀ ଅନନ୍ତ ଶୟନ :-** ରୋଷଘରଠାରୁ ଶ୍ରୀଜଗନ୍ନାଥଙ୍କ ସିଂହାସନ ପର୍ଯ୍ୟନ୍ତ ଯାଇଥିବା ରାସ୍ତାର ଡାହାଣପଟ ଭୋଗମଣ୍ଡପକୁ ଲାଗି କରି ଏକ ବିରାଟ ଅନନ୍ତ ଶୟନ ମୂର୍ତ୍ତି ରହିଛି ।

**ପାଟ ଅଗଣା :-** ମା' ଶ୍ରୀମହାଲକ୍ଷ୍ମୀ ମନ୍ଦିର ସମ୍ମୁଖରେ ଥିବା ବିରାଟ ସ୍ଥାନକୁ ପାଟ ଅଗଣା କୁହାଯାଏ ।

ଏଥି ସହିତ ମୁଖ୍ୟ ମନ୍ଦିରର ଭିତରେ ରତ୍ନ ସିଂହାସନ ଉପରେ ବିରାଜିତ ବିଗ୍ରହ, ଗର୍ଭଗୃହ, ଭିତର ପୋଖରିଆ, କଳାହାଟଦ୍ୱାର, ଅଣସର ପିଣ୍ଡି, ଜୟବିଜୟଦ୍ୱାର, ଜଗମୋହନ, ଭଣ୍ଡାରଘର, ନାଟମଣ୍ଡପ, ଦାନମଣ୍ଡପ, ଗରୁଡ଼ସ୍ତମ୍ଭ, ଇତ୍ୟାଦି ବିଦ୍ୟମାନ । ଶ୍ରୀମନ୍ଦିରର ତିନି ଦିଗରେ ତିନିପାର୍ଶ୍ୱ ଦେବତା ଯଥା : ଶ୍ରୀବରାହ, ଶ୍ରୀନୃସିଂହ ଓ ଶ୍ରୀବାମନ ଅଛନ୍ତି । ଏହାଛଡ଼ା ଅଷ୍ଟଦିଗପାଳ, ଦଶ ଅବତାର ଇତ୍ୟାଦି ବହୁ ମୂର୍ତ୍ତିମାନ ଦେଖିବାକୁ ମିଳେ ।

* * * * * * *

# ମଣ୍ଡପମାଳିନୀ ଶ୍ରୀମନ୍ଦିର



ସର୍ବଧର୍ମ ସମନ୍ୱୟର ଶ୍ରେଷ୍ଠ ପୀଠସ୍ଥଳୀ ରୂପେ ବିଶ୍ୱ ନିୟନ୍ତା ପରଂବ୍ରହ୍ମ ତଥା ଦାରୁମୂର୍ତ୍ତି ମୁରାରି ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଧାମ ଶ୍ରୀକ୍ଷେତ୍ର ବିଶ୍ୱବାସୀଙ୍କର ବିଶ୍ୱାସଭାଜନ ହୋଇପାରିଛି । କାରଣ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ମାହାତ୍ମ୍ୟ, ମହିମା ଓ ଗୁଣଗାରିମା ଯେପରି ବିଶ୍ୱବନ୍ଦନୀୟ, ସେପରି ତାଙ୍କ ପୀଠରେ ପାଳିତ ହେଉଥିବା ବାର୍ଷିକ ପର୍ବପର୍ବାଣି, ଯାନିଯାତ୍ରା, ମେଳାମହୋତ୍ସବ ଓ ବେଶଭୂଷା ଇତ୍ୟାଦି ମଧ ସର୍ବଜନାନୁମୋଦିତ । ଏହି ସବୁ ଧାର୍ମିକ ଯାନିଯାତ୍ରାରେ ଦାରୁରୂପୀ ପ୍ରଭୁ ଶ୍ରୀଜଗନ୍ନାଥ, ବଡ଼ଭାଇ ଶ୍ରୀବଳଭଦ୍ର ଓ ଭଉଣୀ ମା'ସୁଭଦ୍ରା ବିଭିନ୍ନ ମଣ୍ଡପରେ ବିରାଜିତ ହୋଇ ପୂଜାପାଇବାର ବିଧିବିଧାନ ଅନନ୍ୟ ଅଟେ । ପୂଜା ବ୍ୟବସ୍ଥାରେ ଏହି ସବୁ ମଣ୍ଡପଗୁଡ଼ିକର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେହି ସବୁ ମଣ୍ଡପମାନଙ୍କର ବିଶେଷତ୍ୱ ନିମ୍ନରେ ପ୍ରଦତ୍ତ ହୋଇଅଛି :-

ପ୍ରକାଶଥାଉକି ଶ୍ରୀମନ୍ଦିରରେ ଦୁଇଟି ବେଢ଼ା ବା ପାଚେରି ରହିଅଛି । ଭିତରବେଢ଼ା କୂର୍ମ ପାଚେରିଠାରୁ ରତ୍ନସିଂହାସନ ଭିତରେ ଥିବା ପରିସରକୁ କୁହାଯାଉଥିବା ବେଳେ ବାହାର ବେଢ଼ା ମେଘନାଦ ପାଚେରୀଠାରୁ କୂର୍ମପାଚେରି ଭିତରେ ଥିବା ପରିସରକୁ କୁହାଯାଏ । ଭିତର ବେଢ଼ା ପରିସରରେ ଥିବା ମଣ୍ଡପ

**ରତ୍ନମଣ୍ଡପ :-**

ରତ୍ନମଣ୍ଡପକୁ ରତ୍ନସିଂହାସନ, ନୀଳାଦ୍ରି ମଣ୍ଡପ, ଅନ୍ତର୍ବେଦୀ କୁହାଯାଇଥାଏ । ଏହି ମଣ୍ଡପଟି ଶ୍ରୀମନ୍ଦିରର ସ୍ୱତ୍ୱଲିପି ଅନୁସାରେ ପ୍ଲଟ ନଂ ୧ରେ ଅବସ୍ଥିତ । ଏହି ମଣ୍ଡପ ଉପରେ ତିନିଗୋଟି ଗୋଲାକୃତି ଦୁଇଫୁଟ ଉଚ୍ଚତା ବିଶିଷ୍ଟ ପିଣ୍ଡି ନିର୍ମିତ ହୋଇଅଛି । ଶ୍ରୀବଳଭଦ୍ରଙ୍କ ପିଣ୍ଡିର ପରିଧି ୭ଫୁଟ୍ ୩ଇଞ୍ଚ, ଭଉଣୀ ସୁଭଦ୍ରାଙ୍କ ପିଣ୍ଡିର ପରିଧି ୫ଫୁଟ ୨ଇଞ୍ଚ ଓ ପ୍ରଭୁ ଶ୍ରୀଜଗନ୍ନାଥଙ୍କ

ପିଣ୍ଡିର ପରିଧି ୯ଫୁଟ୍ ଅଟେ । ଯଥାକ୍ରମେ ଏହି ସବୁ ପିଣ୍ଡିରେ ଶ୍ରୀମହାପ୍ରଭୁମାନେ ପୂର୍ବାଭିମୁଖୀ ପୂର୍ବକ ବିରାଜମାନ କରିଛନ୍ତି । ଏଥି ସହିତ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ବାମକୁ ଶ୍ରୀଦେବୀ, ଶ୍ରୀସୁଦର୍ଶନ, ଶ୍ରୀମାଧବ ଓ ଦକ୍ଷିଣପାର୍ଶ୍ୱରେ ଭୂଦେବୀ ଅବସ୍ଥାନ କରିଛନ୍ତି । ଏହି ମଣ୍ଡପଟିର ଦୈର୍ଘ୍ୟ ୧୬ଫୁଟ୍, ପ୍ରସ୍ଥ ୧୩ଫୁଟ୍ ଓ ଉଚ୍ଚତା ୪ଫୁଟ୍ ଅଟେ । କେହି କେହି କୁହନ୍ତି ଏହି ମଣ୍ଡପରେ ଚତୁର୍ଦ୍ଧାମୂର୍ତ୍ତି ବିରାଜିତ । କିନ୍ତୁ ପ୍ରକୃତରେ ଏହି ମଣ୍ଡପରେ **ସପ୍ତ ମୂର୍ତ୍ତି** ବିରାଜିତ । ଏହି ମଣ୍ଡପର ଚତୁଃପାର୍ଶ୍ୱରେ ଘୂରି ଶ୍ରୀଜୀଉଙ୍କୁ ଦର୍ଶନ କରିବାପାଇଁ ପଥ ଅଛି । ସ୍ନାନପୂର୍ଣ୍ଣିମା ଠାରୁ ନୀଳାଦ୍ରିବିଜେ ପର୍ଯ୍ୟନ୍ତ ଠାକୁରମାନେ ଏହି ମଣ୍ଡପରେ ବିଜେ କରି ନଥାନ୍ତି । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ବେଶ ଏହି ମଣ୍ଡପରେ ହୋଇଥାଏ ।

କଥିତ ଅଛି ରତ୍ନମଣ୍ଡପଟି ନିର୍ମାଣ ସମୟରେ ତଳେ ପ୍ରଚୁର ରତ୍ନପୋତା ହୋଇଥିଲା । କିନ୍ତୁ ବିଧର୍ମୀ ରାଜାମାନଙ୍କର ଆକ୍ରମଣ ଫଳରେ ସେହି ରତ୍ନ ସବୁ ଲୁଣ୍ଠିତ ହୋଇଥିଲା । ସମ୍ପ୍ରତି ବିଦ୍ୟମାନ ଥିବା ରତ୍ନମଣ୍ଡପଟି ଭୋଇବଂଶର ରାଜା ବୀରକିଶୋର ଦେବ (୧୭୩୬-୧୭୯୧) ନିର୍ମାଣ କରିଥିଲେ । ଏହି ମଣ୍ଡପ ଉପରେ ଶ୍ରୀପ୍ରଭୁଙ୍କୁ ଦର୍ଶନ କଲେ ମନୁଷ୍ୟ ମୋକ୍ଷ ପ୍ରାପ୍ତି ହୁଏ । ଏହି ମଣ୍ଡପର ମହତ୍ୱ ଅତ୍ୟନ୍ତ ଗୁରୁତ୍ୱ ବହନ କରିଛି ।

**ଭୋଗମଣ୍ଡପ :-**

ଭୋଗମଣ୍ଡପକୁ ଭଅଁଣ୍ଡ ଘର କୁହାଯାଏ । ଶ୍ରୀମନ୍ଦିରର ସ୍ୱତ୍ୱଲିପିରେ ଲିଖିତ ଅନୁସାରେ ଏହି ମଣ୍ଡପଟି ପ୍ଲଟ୍ ନଂ ୧୧ ରେ ଅବସ୍ଥିତ । ଶ୍ରୀପୁରୁଷୋତ୍ତମ ଦେଉଳ କାର୍ଯ୍ୟବିଧି ଅନୁସାରେ ଭୋଗମଣ୍ଡପକୁ "ଟେରା ମଣ୍ଡପ" ରୂପେ କୁହାଯାଏ । ଏହି ମଣ୍ଡପର ଦକ୍ଷିଣପାଖରେ ଭୋଗ ବୁହାପାଇଁ ଅଚିନ୍ତା ପହଣ୍ଡି ନାମରେ ଏକ ସୁଡ଼ଙ୍ଗ ପଥ ସଂଲଗ୍ନ ହୋଇଅଛି । ଏହା ଜଗମୋହନର ପୂର୍ବ ଦିଗରେ ଓ ଗରୁଡ଼ସ୍ତମ୍ଭର ପଛପଟେ ଅବସ୍ଥିତ । ମାଦଳାପାଞ୍ଜିରୁ ଜଣାଯାଏ ମଣ୍ଡପଟି ସପ୍ତମ ଅଙ୍କରେ ସୂର୍ଯ୍ୟବଂଶୀ ପୁରୁଷୋତ୍ତମ ଦେବଙ୍କ ରାଜୁତି ସମୟରେ ନିର୍ମିତ । ଏହା ପଞ୍ଚରଥ ପୀଢ଼ ଦେଉଳ ଆକାରର ଅଟେ । ଏହାର ଦୈର୍ଘ୍ୟ ପୂର୍ବ ପଶ୍ଚିମ ୫୮ଫୁଟ୍ ଓ ଓସାର ଉତ୍ତର ଦକ୍ଷିଣ ୫୬ଫୁଟ୍ । ଏଥିରେ ୪ଟି ଖମ୍ବ ରହିଅଛି । କାନ୍ଥ ଓ ବାଡ଼ରେ କାରୁକାର୍ଯ୍ୟପୂର୍ଣ୍ଣ ଅନେକ ପଥର ମୂର୍ତ୍ତି ଖଚିତ । ଏହି ମୂର୍ତ୍ତିମାନଙ୍କ ମଧ୍ୟରେ ଶାର୍ଦ୍ଦୁଳ, ହାତୀଧାଡ଼ି, କୁମ୍ଭୀର, ହଂସ, ମୈଥୁନ ଚିତ୍ର ସହ ପୌରାଣିକ ଉପାଖ୍ୟାନ ସମ୍ବଳିତ ଚିତ୍ର ଯଥା ଦୋଳଯାତ୍ରା, ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ରାଜ୍ୟାଭିଷେକ, ନୌଯାତ୍ରା ଶ୍ରୀଜଗନ୍ନାଥ, ଶକ୍ତିଯୁକ୍ତ ଶିବଲିଙ୍ଗ ଓ ଚତୁର୍ଭୁଜା ମହିଷାମର୍ଦ୍ଦିନୀ ଆଦି ଚିତ୍ର ଅଛି । ପୂର୍ବେ ଦେବଦାସୀମାନେ ଏହି ମଣ୍ଡପରେ ନୃତ୍ୟ କରୁଥିଲେ । ଏହି ପରିସରରେ ନୀଳାଦ୍ରି ମହୋଦୟ ପୂର୍ବଦିନ ଜଳ ଅଧିବାସ, ପୁଷ୍ୟାଭିଷେକ ପୂର୍ବଦିନ ଜଳାଧିବାସ, ମକର ସଂକ୍ରାନ୍ତି ପୂର୍ବଦିନ ଚାଉଳ ଅଧିବାସ, ଅକ୍ଷୟାତୃତୀୟା ପୂର୍ବଦନ ଚନ୍ଦନ ଅଧିବାସ ଓ ଚୈତ୍ର ଶୁକ୍ଳ ତ୍ରୟୋଦଶୀ ଦିନ

ଦକ୍ଷିଣାଚେରୀ ନୀତି ହୁଏ । ଏଠାରେ ସକାଳ ଧୂପ ପରେ ଭଅଁଣ୍ଡ ହୁଏ । ଅନ୍ୟାନ୍ୟ ଭୋଗ ଏଠାରେ ହୁଏ ନାହିଁ । ଏହି ଘର ଉପରେ ଏକ ବିରାଟ ଭାଣ୍ଡ ବା ଗରା ଥିବାରୁ ଏହାକୁ ମଧ୍ୟ ଭାଣ୍ଡମଣ୍ଡପ କହନ୍ତି ।

**ନାଟମଣ୍ଡପ :-**

ଶ୍ରୀମନ୍ଦିରର ସ୍ୱତ୍ୱଲିପି ଅନୁସାରେ ନାଟ ମଣ୍ଡପଟି ପ୍ଲଟ୍ ନଂ ୧୦ରେ ଅବସ୍ଥିତ । ଶ୍ରୀମନ୍ଦିର ଭୋଗମଣ୍ଡପ ସମ୍ମୁଖରେ ଓ ଜଗମୋହନର ମଧ୍ୟବର୍ତ୍ତୀ ସ୍ଥାନକୁ ନାଟମଣ୍ଡପ କୁହାଯାଏ । ଏହି ମଣ୍ଡପରେ ଶ୍ରୀକୃଷ୍ଣଙ୍କ ଜନ୍ମଲୀଳା ପ୍ରସଙ୍ଗରେ ବିଭିନ୍ନ ଲୀଳା ଯଥା ଅନ୍ଧଲୀଳା, ଦାହଲୀଳା ପ୍ରସ୍ତାବ ବା ଦାହଲୀଳା ନାଟ, ବିମ୍ବାସୁର ବଧ ପ୍ରସ୍ତାବ ଇତ୍ୟାଦି ପରିବେଷଣ ହୋଇଥାଏ । ପୂର୍ବେ ଦେବଦାସୀମାନେ ଏଠାରେ ନୃତ୍ୟ ପରିବେଷଣ କରୁଥିଲେ । ପ୍ରତ୍ୟହ ସକାଳ ସନ୍ଧ୍ୟା ସମୟରେ ଏହି ସ୍ଥାନରେ ମଙ୍ଗଳ ଆଳତି ହୋଇଥାଏ । ପ୍ରତ୍ୟହ ଆଳତି ସମୟରେ ବଡ଼ଛତା ମଠର ବାବାଜି ଓ ସାଧୁ ସନ୍ଥମାନେ ସଂକୀର୍ତ୍ତନ ସହ ନାମଧୂନ୍ କରିଥାନ୍ତି । ଏହାକୁ କେହି କେହି ମଣିମଣ୍ଡପ ମଧ୍ୟ କହିଥାନ୍ତି ।

**ମୁକ୍ତି ମଣ୍ଡପ ବା ମୋକ୍ଷ ମଣ୍ଡପ :-**

ମୁକ୍ତିମଣ୍ଡପଟି ଭିତର ବେଢ଼ାରେ ଜଗମୋହନର ଦକ୍ଷିଣ ଦିଗରେ ଓ ଦକ୍ଷିଣ କୂର୍ମବେଢ଼ାଠାରୁ ଆସିଲେ ବାମପାର୍ଶ୍ୱରେ ଅବସ୍ଥିତ । ଏହା ଶ୍ରୀମନ୍ଦିର ପ୍ଲଟ ନଂ ୮୨ରେ ଅବସ୍ଥିତ । ଏହି ମଣ୍ଡପର ଦୈର୍ଘ୍ୟ ଓ ପ୍ରସ୍ଥ ୩୮ ଫୁଟ୍ ଓ ୧୬ଟି ଖମ୍ବଦ୍ୱାରା ମୁଗୁନି ପଥରରେ ନିର୍ମିତ । ଏହା ଉପରେ ଜଗତ୍‌ଗୁରୁ ଶ୍ରୀଶଙ୍କରାଚାର୍ଯ୍ୟ, ଷୋହଳ ଶାସନର ବ୍ରାହ୍ମଣଗଣ, ରାଜଗୁରୁ, ଦେଉଳପୁରୋହିତ ଆଦି ବିଦ୍ୱାନ୍ ପଣ୍ଡିତମାନେ ବସିବାର ଅଧିକାର ପାଇଛନ୍ତି । ମଣ୍ଡପଟି ବହୁତ ପୁରୁଣା ହୋଇ ଜୀର୍ଣ୍ଣ ହୋଇଯାଇଥିଲା । ଏହାକୁ ଭୋଇବଂଶର ରାଜା ରାମଚନ୍ଦ୍ରଦେବ ୧୪ଅଙ୍କରେ ୧୫୮୦ଖ୍ରୀଷ୍ଟାବ୍ଦରେ ମୋଗଲ ସେନାପତି ମାନସିଂହଙ୍କ ପତ୍ନୀ ଗୌରୀ ରାଣୀଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ବର୍ତ୍ତମାନ ଏହି ମଣ୍ଡପରେ ଷୋହଳଶାସନ ପରିବର୍ତ୍ତେ ୨୪ଶାସନର ବିଦ୍ୱାନ ବ୍ରାହ୍ମଣମାନେ ବସିବାର ଅଧିକାର ପାଇଛନ୍ତି । ଏହା ହିନ୍ଦୁ ସଂପ୍ରଦାୟର ଲୋକମାନଙ୍କପାଇଁ ଅତ୍ୟନ୍ତ ପବିତ୍ର ଓ ସାମାଜିକ ରୀତିନୀତି ପାଇଁ ଦରକାରୀ ଅଟେ । ବ୍ରାହ୍ମଣମାନେ ଏହି ମଣ୍ଡପରେ ବସି ରାଜାଙ୍କୁ ଶାସନ ପରିଚାଳନା ପାଇଁ ପରାମର୍ଶ ଦେଉଥିଲେ । ଏହାଛଡ଼ା ଧର୍ମଶାସ୍ତ୍ର ଅନୁସାରେ ସମାଜରେ ଘଟୁଥିବା ଅଘଟଣରୁ ସୁରକ୍ଷାପାଇଁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ମୋକ୍ଷପାଇଁ ପ୍ରାୟଶ୍ଚିତ ବିଧାନ କରୁଥିଲେ । ମନ୍ଦିର ନିର୍ମାଣ ସମୟରେ ସ୍ୱୟଂ ଶ୍ରୀବ୍ରହ୍ମା ଏହି ମଣ୍ଡପରେ ବସି ମନ୍ଦିର ନିର୍ମାଣପାଇଁ ଶିଳ୍ପୀମାନଙ୍କୁ ପରାମର୍ଶ ଦେବାର ସୂଚନା ମିଳେ । ତେଣୁ ଏହି ମଣ୍ଡପଟି ଏକ ପୁଣ୍ୟ ଓ ପବିତ୍ର ପୀଠ ବୋଲି ଜନମାନସରେ ବିଶ୍ୱାସ ରହିଛି । ବର୍ତ୍ତମାନ ଏହି ମଣ୍ଡପ ନିକଟରେ

ଝୁଲଣଯାତ୍ରା ହେଉଅଛି । ଏହିମଣ୍ଡପର ବିଦ୍ୱାନପଣ୍ଡିତ ମଣ୍ଡଳୀ ଓଡ଼ିଶାରେ ପ୍ରଚଳିତ ବାର୍ଷିକ ପଞ୍ଜିକାରେ ପର୍ବପର୍ବାଣି, ତିଥି, ବାର, ନକ୍ଷତ୍ର, ଗ୍ରହ ଇତ୍ୟାଦିର ବିଧିବିଧାନ ନିର୍ଘଣ୍ଟ କରିଥାନ୍ତି ।

**ରାହାସମଣ୍ଡପ :-**

ଏହି ମଣ୍ଡପଟି ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ଶ୍ରୀବଟଗଣେଶ ମନ୍ଦିର ନିକଟରେ ଥିବା ବଟବୃକ୍ଷ ମୂଳରେ ଥିଲା । ଏହି ମଣ୍ଡପରେ ଅତିବଡ଼ୀ ଜଗନ୍ନାଥ ଦାସ ଶ୍ରଦ୍ଧାଳୁ ଭକ୍ତମାନଙ୍କୁ ସୁମଧୁର ସ୍ୱରରେ ଅତି ସରଳ ଭାବରେ ଭାଗବତ ପଢ଼ି ଶୁଣାଉଥିଲେ । ଏହା ବୈଷ୍ଣବ ଲୀଳାମୃତ, ଶ୍ରୀଚୈତନ୍ୟ ଚକଡ଼ା ଓ ପ୍ରଭୁ ଶ୍ରୀଜଗନ୍ନାଥ ଚରିତାମୃତ ଗ୍ରନ୍ଥରୁ ସୂଚନା ମିଳେ ।

**ଜଳକ୍ରୀଡ଼ା ମଣ୍ଡପ :-**

ଜଳକ୍ରୀଡ଼ା ମଣ୍ଡପଟି ମା'ଶ୍ରୀବିମଳା ମନ୍ଦିରର ସମ୍ମୁଖ ଓ ରୋହିଣୀକୁଣ୍ଡର ଦକ୍ଷିଣପାର୍ଶ୍ୱରେ ଅବସ୍ଥିତ । ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ଏହା ପ୍ଲଟ୍ ନଂ ୮୦ରେ ଅବସ୍ଥିତ । ଏହାର ଉଚ୍ଚତା ପ୍ରାୟ ୨୩ଫୁଟ, କିନ୍ତୁ ଭିତର ବେଢ଼ାଠାରୁ ପ୍ରାୟ ୭ଫୁଟ ଉଚ୍ଚତା ବିଶିଷ୍ଟ ଏହି ଦ୍ୱାର ଦେଶର ସମ୍ମୁଖରେ ଜୟ ବିଜୟ ମୂର୍ତ୍ତିଦୁଇଟି ବିଦ୍ୟମାନ । ମଣ୍ଡପଭିତରେ ପଥରରେ ନିର୍ମିତ ଏକ କୁଣ୍ଡ ଅଛି । ଏହି କୁଣ୍ଡରେ ଜ୍ୟେଷ୍ଠମାସ କୃଷ୍ଣ ଓ ଶୁକ୍ଳପକ୍ଷ ଏକାଦଶୀ ଦିନ, ସାବିତ୍ରୀ ଅମାବାସ୍ୟା ଓ ଶୀତଳଷଷ୍ଠୀ ଦିନ ଶ୍ରୀମଦନମୋହନ, ଭୂଦେବୀ ଓ ଶ୍ରୀଦେବୀ ସୁବାସିତ ଚନ୍ଦନ କୁଣ୍ଡରେ ବୁଡ଼ି ଜଳକ୍ରୀଡ଼ା କରିଥାନ୍ତି । ଏଠାରେ ମହାପ୍ରଭୁଙ୍କର ଭିତର ଚନ୍ଦନଯାତ୍ରା ୨୧ଦିନ ଅନୁଷ୍ଠିତ ହୋଇଥାଏ ।

**ମାଜଣା ମଣ୍ଡପ :-**

ଶ୍ରୀମନ୍ଦିର ଭିତର ବେଢ଼ାସ୍ଥ ବେହେରଣ ଦ୍ୱାର ଦେଶର ଡାହାଣ ପାର୍ଶ୍ୱରେ ଥିବା ୨୧ନମ୍ବର ପ୍ଲଟ୍ ରେ ମାଜଣା ମଣ୍ଡପଟି ଅବସ୍ଥିତ । ଏଠାରେ ଗୁରୁବାର ଦିନ ମା'ମହାଲକ୍ଷ୍ମୀଙ୍କର ମାଜଣା ହେଉଥିବାରୁ ଏହାକୁ ମାଜଣାମଣ୍ଡପ କୁହାଯାଏ । କେହି କେହି ଏହାକୁ ବିବାହ ମଣ୍ଡପ କହିଥାନ୍ତି । କାରଣ ପୁରାଣ ଅନୁସାରେ ଜ୍ୟେଷ୍ଠ ଶୁକ୍ଳପକ୍ଷ ଏକାଦଶୀ ତିଥିରେ ଏଠାରେ ମା'ରୁକ୍ମିଣୀଙ୍କ ସହ ପ୍ରଭୁ ଶ୍ରୀକୃଷ୍ଣଙ୍କର ବିବାହ ହୋଇଥିଲା । ସେହିଦିନ ଏଠାରେ ଶ୍ରୀମଦନମୋହନଙ୍କ ସହ ଶ୍ରୀଦେବୀଙ୍କର ବିବାହ ମଧ୍ୟ ହୋଇଥିଲା । ଏହାଛଡ଼ା ଏଠାରେ ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ଦିନ ବାମନ ଜନ୍ମନୀତି, ଓ ଆଶ୍ୱିନ କୃଷ୍ଣ ଅଷ୍ଟମୀ ଦିନ ମା'ଦୁର୍ଗାଦେବୀଙ୍କର ସହସ୍ର କୁମ୍ଭାଭିଷେକ ହୋଇଥାଏ । ଏହି ମଣ୍ଡପର ଅନ୍ୟନାମ ଶ୍ରୀସୋମନାଥ ମଣ୍ଡପ ।

**ନାଭିକଟା ମଣ୍ଡପ :-**

ଶ୍ରୀମନ୍ଦିରର ଭିତର ବେଢ଼ାସ୍ଥିତ ଗାରଦଘରର ପଶ୍ଚିମପାର୍ଶ୍ୱରେ ନାଭିକଟା ମଣ୍ଡପ ଅବସ୍ଥିତ । ଏହା ଏକ ପୀଢ଼ ଶୈଳୀର ଖୋଲା ମଣ୍ଡପ । ଏହାର ଅନ୍ୟ ନାମ ବଉନ୍ତୀ ମଣ୍ଡପ । ପ୍ରଭୁ

ଶ୍ରୀକୃଷ୍ଣଙ୍କ ଜନ୍ମଦିନରେ ଏଠାରେ ନାଭିକଟା ଉତ୍ସବ ସମ୍ପାଦନା କରାଯାଏ । ଏଠାରେ ଦୋଳପୂର୍ଣ୍ଣମୀ ଦିନ ଶ୍ରୀଦୋଳଗୋବିନ୍ଦ, ଭୂଦେବୀ, ଶ୍ରୀଦେବୀଙ୍କ ମାଜଣା ବେଶ ଓ ଭୋଗନୀତି ସମ୍ପାଦନ ପରେ ଦୋଳବେଦୀରେ ବିଜେ କରିଥାନ୍ତି । ସମ୍ପ୍ରତି ଏହି ମଣ୍ଡପରେ ପ୍ରତ୍ୟହ ସନ୍ଧ୍ୟାରେ ହୁଣ୍ଡି ଗଣତି କାର୍ଯ୍ୟ କରାଯାଏ ।

**ଦେବସଭା ମଣ୍ଡପ :-**

ଦେବସଭା ମଣ୍ଡପଟି ଶ୍ରୀମନ୍ଦିରର ସ୍ୱତ୍ୱଲିପି ମୁତାବକ ପ୍ଲଟ୍ ନଂ ୩୦ରେ ଅବସ୍ଥିତ । ମୁଖ୍ୟ ମନ୍ଦିର ସମ୍ମୁଖସ୍ଥ ଭିତର ପାର୍ଶ୍ୱରେ ଥିବା ନାଭିକଟା ମଣ୍ଡପ ନିକଟରେ ଏହା ଏକ ଖୋଲା ମଣ୍ଡପ । ଜନଶ୍ରୁତି କହେ ନିଶାର୍ଦ୍ଧରେ ସ୍ୱର୍ଗର ଦେବତାମାନେ ଏଠାରେ ସେମାନଙ୍କର ଦେବସଭା କରୁଥିଲେ । ଅତୀତରେ ଏହି ମଣ୍ଡପରେ ଝୁଲଣଯାତ୍ରା ସମାହିତ ହେଉଥିଲା । ଏହି ମଣ୍ଡପରେ ଦେବତାଗଣ, ଋଷି ସମୂହ, ସ୍ୱର୍ଗର ନର୍ତ୍ତକୀ ଓ ଦର୍ଶକମାନେ ଏକତ୍ରିତ ହୋଇ ବିଚାରବିମର୍ଶ ପରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥାନ୍ତି ।

**ଅଚିନ୍ତା ମଣ୍ଡପ :-**

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରସାଦକୁ ବୁହାଯାଉଥିବା ପାଖ ରାସ୍ତାକୁ "ଅଚିନ୍ତା ମଣ୍ଡପ" କୁହନ୍ତି । ଏହାକୁ କେହି କେହି ଅସ୍ତାମଣ୍ଡପ, ଅଚୁତା ପହଣ୍ଡି ବା ଅଚିନ୍ତା ପହଣ୍ଡି ବୋଲି କହିଥାନ୍ତି । ଅନ୍ୟ କେତେକଙ୍କ ମତରେ ନାଟ ମଣ୍ଡପର ମଧ୍ୟଭାଗକୁ ଅଚିନ୍ତା ମଣ୍ଡପ କହନ୍ତି । ଏଠାରେ ଭକ୍ତମାନେ ବସି କାୟମନୋବାକ୍ୟରେ ସ୍ତୁତି କରିବା ଫଳରେ ମନରେ ଥିବା ସମସ୍ତ ଅବାସ୍ତବ ଚିନ୍ତା ତଥା ସାଂସାରିକ ମାୟା, ମୋହ, ଦୂରହୋଇ ସୃଷ୍ଟି ହୋଇଥାଏ ଆଧ୍ୟାତ୍ମିକ ଭାବ । ତେଣୁ ଏହାକୁ ଅଚିନ୍ତା ମଣ୍ଡପ ବୋଲି କହିଥାନ୍ତି ।

**ଅଣସରମଣ୍ଡପ :-**

ଅଣସର ମଣ୍ଡପକୁ କେହି କେହି ଅଣସର ପିଣ୍ଡି, ଅଣସର ଘର, ବଲ୍ଲଭ ପିଣ୍ଡି କହିଥାନ୍ତି । ଏହି ମଣ୍ଡପଟି ବାହାର ପୋଖରିଆ ଉତ୍ତର ଦିଗରେ ବା ଜଗମୋହନରୁ ଜୟ ବିଜୟ ଦ୍ୱାର ଅତିକ୍ରମ କରିଲା ପରେ ଡାହାଣ ପାର୍ଶ୍ୱରେ ପଡ଼ିଥାଏ । ସେହିପରି ରତ୍ନସିଂହାସନରୁ କଳାହାଟ ଦ୍ୱାର ଅତିକ୍ରମ କରିବାପରେ ବାମ ପାର୍ଶ୍ୱରେ ପଡ଼ିଥାଏ । ସ୍ନାନ ପୂର୍ଣ୍ଣିମାଦିନ ସ୍ନାନ ମଣ୍ଡପରେ ଶ୍ରୀଜୀଉମାନଙ୍କର ଅତ୍ୟଧିକ ସ୍ନାନ ଫଳରେ ଜ୍ୱରରେ ପୀଡ଼ିତ ହୋଇ ଦୀର୍ଘ ୧୫ଦିନ ସେହି ମଣ୍ଡପରେ ଶୟନ କରିଥାନ୍ତି । ତେଣୁ ତାଙ୍କ ଆରୋଗ୍ୟ ପାଇଁ ସେବାୟତମାନେ ପ୍ରତିଦିନ ଭିନ୍ନ ଭିନ୍ନ ଔଷଧ ସହ ପଣା, ପାଣି, ଫଳ, ମୂଳ ଓ ମୋଦକ ଇତ୍ୟାଦି ଅର୍ପଣ କରିଥାନ୍ତି । ଏହି ୧୫ଦିନ ଅର୍ଥାତ୍ ସ୍ନାନପୂର୍ଣ୍ଣମୀ ପର ଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ଅଣସର ନୀତି ପାଳନ ହୋଇଥାଏ । ଏହି ଦିନଗୁଡ଼ିକ ମହାପ୍ରଭୁଙ୍କୁ ଦର୍ଶନ କରିବା ନିଷିଦ୍ଧ ଅଟେ । ନେତ୍ରଉତ୍ସବ ଦିନ ମହାପ୍ରଭୁଙ୍କୁ

ନବଯୌବନ ବେଶ କରିବାପରେ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ଏହି ମଣ୍ଡପଟି ଶ୍ରୀପ୍ରଭୁମାନଙ୍କର ଚିକିତ୍ସାଳୟ ଓ ସେବାୟତମାନେ ହେଲେ ତାଙ୍କର ଚିକିତ୍ସକ ସଦୃଶ ।
(ବାହାର ବେଢ଼ା ଅର୍ଥାତ୍ ମେଘନାଦ ପାଚେରିଠାରୁ କୁର୍ମ ପାଚେରି ପରିସରରେ ଥିବା ମଣ୍ଡପ) ।

**ଭେଟ ମଣ୍ଡପ :-**

ଶ୍ରୀମନ୍ଦିରର ସ୍ୱତ୍ୱଲିପି ଅନୁସାରେ ଭେଟ ମଣ୍ଡପଟି ପ୍ଲଟ ନଂ ୧୮୨ରେ ଅବସ୍ଥିତ । ରୋଷଘରର ପରିସରରେ ପୂର୍ବାଭିମୁଖୀହୋଇ ଏହି ମଣ୍ଡପ ଅବସ୍ଥିତ । ରଥଯାତ୍ରା ପରେ ଶ୍ରୀମହାପ୍ରଭୁମାନେ ବାହୁଡ଼ି ଆସି ସିଂହଦ୍ୱାରଠାରେ ପହଞ୍ଚିବା ପୂର୍ବରୁ ମା'ମହାଲକ୍ଷ୍ମୀଙ୍କୁ ଭେଟ ମଣ୍ଡପକୁ ଅଣାଯାଇଥାଏ । ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ରଥ ଉପରେ ସେବାୟତମାନେ ବନ୍ଦାପନା କରିବା ସମୟରେ ଭେଟମଣ୍ଡପରେ ମା'ମହାଲକ୍ଷ୍ମୀଙ୍କୁ ବନ୍ଦାପନା କରାଯାଇଥାଏ । ତତ୍‌ପରେ ମହାପ୍ରଭୁ ନୀଳାଦ୍ରିବିଜେ ହୋଇ ଭେଟମଣ୍ଡପରେ ଥିବା ମା'ମହାଲକ୍ଷ୍ମୀଙ୍କ ନିକଟକୁ ଆସିଥାନ୍ତି । ଦୁଇଜଣଙ୍କର ଭେଟ ହୋଇଥାଏ । ପ୍ରଭୁ ଶ୍ରୀଜଗନ୍ନାଥ ଓ ମା'ମହାଲକ୍ଷ୍ମୀ ଦେବୀଙ୍କ ଭେଟ ପାଇଁ ଏହି ମଣ୍ଡପ ଉଦ୍ଦିଷ୍ଟ । ତେଣୁ ଏହାକୁ ଭେଟମଣ୍ଡପ କୁହାଯାଏ ।

**ନିର୍ମାଲ୍ୟ ମଣ୍ଡପ :-**

ଶ୍ରୀମନ୍ଦିରର ପଶ୍ଚିମଦ୍ୱାରରୁ ଆସିବା ବାଟର ଦକ୍ଷିଣଦିଗରେ ଏକ ଉପବନ ଅଛି । ଏହି ଉପବନ ମଧ୍ୟରେ ପ୍ରାୟ ୭ଫୁଟ ଉଚ୍ଚତା ବିଶିଷ୍ଟ ଏକ ବର୍ଗାକାର ମଣ୍ଡପ ଅଛି । ଏହାକୁ ନିର୍ମାଲ୍ୟ ମଣ୍ଡପ ବା ନିର୍ମାଲ୍ୟ ଖଳା କୁହାଯାଏ । ସପ୍ତଦଶ ଶତାବ୍ଦୀରେ ଗଜପତି ମହାରାଜା ଶ୍ରୀବୀରକେଶରୀଙ୍କ ରାଜତ୍ୱ ସମୟରେ ଏହା ନବୀକରଣ ହୋଇଥିଲା । ଏହି ମଣ୍ଡପରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅବଢ଼ାକୁ ଶୁଖାଇ ନିର୍ମାଲ୍ୟ କରାଯାଇଥାଏ । ଶୁଖିଗଲା ପରେ ଏହା ନିର୍ମାଲ୍ୟରେ ପରିବର୍ତ୍ତନ ହୋଇଥାଏ । ଯାହାକୁ ବର୍ଷ ବର୍ଷ ଧରି ରଖାଯାଇଥାଏ । ଆଜି ସେହି ନିର୍ମାଲ୍ୟ ଓଡ଼ିଆମାନଙ୍କ ଘରେ ପୂଜାପାଇବା ସହ ଠାକୁର ମନ୍ଦିର, ହୋମ, ଯଜ୍ଞ ଆଦି ଧାର୍ମିକ କାର୍ଯ୍ୟରେ ଉପଯୋଗ ହୋଇ ଆସୁଅଛି ।

**ସ୍ନାନମଣ୍ଡପ :-**

ଶ୍ରୀମନ୍ଦିରର ସ୍ୱତ୍ୱଲିପି ଅନୁସାରେ ପ୍ଲଟ୍ ନଂ ୧୪୮ରେ ଆନନ୍ଦବଜାରର ପରିସରରେ ପୂର୍ବାଭିମୁଖୀହୋଇ ଅବସ୍ଥିତ । ଏହି ମଣ୍ଡପଟି ବଉଳମାଳା ପଥରରେ ନିର୍ମିତ ୭୫ଫୁଟ୍ ଦୈର୍ଘ୍ୟ ଓ ପ୍ରସ୍ଥ ବିଶିଷ୍ଟ ଏକ ବର୍ଗାକାର କ୍ଷେତ୍ର ଅଟେ । ଏହା ଉପରକୁ ଉଠିବା ପାଇଁ ଦକ୍ଷିଣ ଓ ଉତ୍ତର ଦିଗରେ ସୁସଜ୍ଜିତ ପାହାଚ ଅଛି । ଏଥିରେ ଗୋଟିଏ ସିଂହାସନ ଓ ୩ଟି ଚକା ସ୍ଥାପିତ ହୋଇଅଛି । ସ୍ନାନପୂର୍ଣ୍ଣିମା ଦିନ ପ୍ରଭୁ ଶ୍ରୀଜଗନ୍ନାଥ, ବଡ଼ଭାଇ ଶ୍ରୀବଳଭଦ୍ର ଓ ଭଉଣୀ ମା'ସୁଭଦ୍ରା ଏହି ସିଂହାସନରେ ବିଜେ କରିଥାନ୍ତି । ଏହାପୂର୍ବରୁ ଅର୍ଥାତ୍ ଚତୁର୍ଦ୍ଦଶୀଦିନ ରାତିରୁ ଉତ୍ତର ଦ୍ୱାରରେ ଥିବା ସୁନା କୂଅରୁ ୧୦୮ଗରା ଜଳ ସୁନା ଗୋସାଇଁ ଓ ମୁଦିରସ୍ତ ସେବାୟତ ଆଣି ଏଠାରେ ରଖିଥାନ୍ତି । ସେହି

ଜଳରେ ଚନ୍ଦନ, କର୍ପୂର ଓ କେଶରାଦି ମିଶ୍ରିତ କରି ସଂସ୍କାର କରାଯାଇଥାଏ । ଲକ୍ଷ ଲକ୍ଷ ଭକ୍ତଙ୍କ ସମାବେଶରେ ସେହି ସଂସ୍କାରିତ ଜଳରୁ ୩୫ଗରା ଜଳ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉପରେ, ୩୩ଗରା ଜଳ ପ୍ରଭୁ ଶ୍ରୀବଳଭଦ୍ରଙ୍କ ଉପରେ, ୨୨ଗରା ମା'ସୁଭଦ୍ରାଙ୍କ ଉପରେ ଓ ୧୮ଗରା ସୁଦର୍ଶନଙ୍କ ଉପରେ ଲାଗିହୋଇ ସ୍ନାନ କରାଯାଏ । ତତ୍‌ପରେ ଶ୍ରୀପ୍ରଭୁଙ୍କୁ ଗଜାନନ ବେଶ କରାଯାଇଥାଏ । ଗୋପାଳତୀର୍ଥ ମଠ ଓ ରାଘବଦାସ ମଠରୁ ଆସିଥିବା ହାତୀ ବେଶର ଉପକରଣ ଅର୍ପଣ କରାଯାଇଥାଏ । ଏତଦ୍‌ବ୍ୟତୀତ ଏଠାରେ ଶ୍ରୀପ୍ରଭୁଙ୍କୁ ଶ୍ରୀଗଣେଶ ବେଶ କରାଯାଇଥାଏ । ଏଥିପାଇଁ ଏକ କିମ୍ବଦନ୍ତୀ ଅଛି । ତାହା ହେଲା; ଗଣପତି ସମ୍ପ୍ରଦାୟର ଗଣପତି ଭଟ୍ଟ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଭିନ୍ନ ବେଶରେ ଦେଖି ଯେତେବେଳେ ଫେରି ଯିବାକୁ ଉଦ୍ୟତ ହେଲେ, ସେତେବେଳେ ମହାପ୍ରଭୁ ତାଙ୍କୁ ପ୍ରଭୁ ଶ୍ରୀଗଣେଶ ବେଶରେ ଦର୍ଶନ ଦେଇଥିଲେ । ସେହିଦିନଠାରୁ ଶ୍ରୀପ୍ରଭୁଙ୍କୁ ଏଠାରେ ଶ୍ରୀଗଣେଶ ବେଶ କରାଯାଏ ।

**ଚାହାଣିମଣ୍ଡପ :-**

ଚାହାଣି ମଣ୍ଡପଟି ଶ୍ରୀମନ୍ଦିରର ପ୍ଲଟ ନଂ ୧୪୯ରେ ଓ ଆନନ୍ଦବଜାର ପରିସରରେ ସ୍ନାନ ମଣ୍ଡପର ଦକ୍ଷିଣଦିଗରେ ଅବସ୍ଥିତ । ଏହି ମଣ୍ଡପକୁ ସପ୍ତଦଶ ଶତାବ୍ଦୀରେ ଖୋଜାବେଣୁ ଛୋଟରାୟ ନିର୍ମାଣ କରିଥିଲେ । ଏହା ବାରଗୋଟି ଖମ୍ବ ଉପରେ ୭ଫୁଟ ଉଚ୍ଚତା ବିଶିଷ୍ଟ ପୀଢଶୈଳୀ ଛାତରେ ନିର୍ମିତ । ଏହାର ଦୈର୍ଘ୍ୟ ଓ ପ୍ରସ୍ଥ ୧୨ଫୁଟ୍ । ବାହୁଡ଼ାଯାତ୍ରାର ଅବସାନ ସମୟରେ ରଥ ସିଂହଦ୍ୱାରରେ ଲାଗିଲାପରେ, ମା'ମହାଲକ୍ଷ୍ମୀ ଏହି ମଣ୍ଡପରେ ବିଜେ କରି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଚାହିଁଥାନ୍ତି । ତେଣୁ ଏହି ମଣ୍ଡପଟି ନାମ ଚାହାଣି ମଣ୍ଡପ ହୋଇଅଛି । ତତ୍‌ପରେ ମା'ମହାଲକ୍ଷ୍ମୀ ଶ୍ରୀଲକ୍ଷ୍ମୀନାରାୟଣ ଭେଟନୀତି ପାଇଁ ଶ୍ରୀନଅର ସମ୍ମୁଖକୁ ବିଜେ କରିଥାନ୍ତି । ରଥଯାତ୍ରା ଦିନ ଏଠାରେ ରଥ ପ୍ରତିଷ୍ଠା କର୍ମ ହୋଇଥାଏ । ଭାଦ୍ରବମାସ ଦ୍ୱାଦଶୀଦିନ ଏଠାରେ ଇନ୍ଦ୍ରଧ୍ୱଜ ପୂଜା କର୍ମ ସମ୍ପାଦନ ହୋଇଥାଏ ।

ଏତଦ୍‌ବ୍ୟତୀତ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଓ ଶ୍ରୀମନ୍ଦିର ପରସିର ବାହାରେ ବଡ଼ ଠାକୁରଙ୍କର ଯାନିଯାତ୍ରା ନିମନ୍ତେ କେତେଗୁଡ଼ିଏ ମଣ୍ଡପ ଅଛି ଯଥା :

**ଗୁଣ୍ଡିଚାମଣ୍ଡପ :-**

ଏକ ମହାନ ପବିତ୍ର ଧର୍ମ ପୀଠ ରୂପେ ଶ୍ରୀଗୁଣ୍ଡିଚା ମନ୍ଦିରଟି ଶାସ୍ତ୍ରାନୁମୋଦିତ । କାରଣ ଏହି ପୀଠ ସ୍ୱୟଂ ପ୍ରଭୁ ଶ୍ରୀବିଷ୍ଣୁ ଅବତାରୀ ଶ୍ରୀଜଗନ୍ନାଥଙ୍କର ଜନ୍ମପୀଠ । ଏହି ପୀଠକୁ ଯଜ୍ଞବେଦୀ, ମହାବେଦୀ, ଆଡ଼ପ ମଣ୍ଡପ, ରାସମଣ୍ଡପ, ଆଟୋପ ମଣ୍ଡପ ରୂପେ ଅଭିହିତ କରାଯାଇଅଛି । ଦ୍ୱାଦଶ ଶତାବ୍ଦୀ ବେଳେ ଏହି ମନ୍ଦିରଟି କାଠରେ ନିର୍ମିତ ଥିଲା । କିନ୍ତୁ ଗଙ୍ଗବଂଶୀୟ ରାଜା ନରସିଂହଦେବ (୨ୟ) (ଖ୍ରୀ୧୨୭୮ରୁ୧୩୦୬)ଙ୍କ ରାଜତ୍ୱ ସମୟରେ ପଥରରେ ନିର୍ମାଣ

ହୋଇଥିଲା । ଶ୍ରୀମନ୍ଦିର ଠାରୁ ବଡ଼ଦାଣ୍ଡର ଉତ୍ତରକୁ ପ୍ରାୟ ୨କି.ମି. ଗଲେ ଏହି ମନ୍ଦିର ପଡ଼ିଥାଏ । ଦୈର୍ଘ୍ୟ ପ୍ରାୟ ୪୩୦ଫୁଟ୍ ଓ ପ୍ରସ୍ଥ ୩୨୦ଫୁଟ୍‌କୁ ନେଇ ଏହାର ପରିସର ଅଟେ । ଏହାର ଚତୁଃପାର୍ଶ୍ୱରେ ୨୦ଫୁଟ୍ ଉଚ୍ଚ ଓ ୫ଫୁଟ୍ ୨ଇଞ୍ଚ ମୋଟର ବିରାଟ ପାଚେରି ଅଛି । ମନ୍ଦିରର ଉଚ୍ଚତା ପ୍ରାୟ ୭୫ଫୁଟ୍ । ଏଥିରେ ଥିବା ରତ୍ନସିଂହାସନ କିମ୍ବା ଗୁଣ୍ଡିଚା ମଣ୍ଡପଟିର ଦୈର୍ଘ୍ୟ ୧୯ଫୁଟ୍ ଓ ଉଚ୍ଚତା ୪ଫୁଟ୍ । ଗୁଣ୍ଡିଚାଯାତ୍ରା ବେଳେ ଶ୍ରୀଜୀଉମାନେ ବଡ଼ଦେଉଳର ରତ୍ନସିଂହାସନ ତ୍ୟାଗକରି ତାଙ୍କର ଜନ୍ମବେଦୀ ତଥା ଏହି ମଣ୍ଡପରେ ୯ଦିନ ବିରାଜମାନ କରିଥାନ୍ତି । ଶ୍ରୀମନ୍ଦିରର ଦୈନିକ ପୂଜାପଦ୍ଧତି ଅନୁରୂପେ ଏଠାରେ ୯ଦିନ ଧରି ସେପରି ରୀତିନୀତିରେ ଆଳତୀ, ଆଦି ପାଳନ କରାଯାଇଥାଏ । ଏହି ୯ଦିନ ପ୍ରତ୍ୟହ ଲକ୍ଷ ଲକ୍ଷ ଭକ୍ତ, ଦର୍ଶକ, ତୀର୍ଥଯାତ୍ରୀ ଓ ପର୍ଯ୍ୟଟକମାନେ ସେଠାକୁ ଯାଇ ମହାପ୍ରଭୁଙ୍କୁ ଆଡ଼ପ ମଣ୍ଡପରେ ଦର୍ଶନକରି ଓ ମହାପ୍ରସାଦ ସେବନ କରି ତୃପ୍ତି ଲାଭ କରିଥାନ୍ତି । ବର୍ଷକୁ ଥରେ ଏହି ମଣ୍ଡପରେ ଶ୍ରୀପ୍ରଭୁଙ୍କୁ ଦର୍ଶନକଲେ ପୁଣ୍ୟଲାଭ ହୁଏ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ।

**ଦୋଳମଣ୍ଡପ :-**

ଅତୀତରେ ଶ୍ରୀମନ୍ଦିରର ଅଗ୍ନିକୋଣରେ ଥିବା ଏକ ମଣ୍ଡପରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଦୋଳ ପର୍ବ ପାଳନ ହେଉଥିଲା । ତେଣୁ ସେହି ସାହିକୁ ଦୋଳମଣ୍ଡପ ସାହି କୁହାଯାଉଅଛି । ଏକଦା ଶ୍ରୀଜୀଉମାନେ ଦୋଳିରେ ବସିଥିବା ସମୟରେ ଦୋଳିଟି ଛିଡ଼ି ପଡ଼ିଥିଲା । ବଡ଼ଠାକୁର ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଶ୍ରୀଭୁଜ ଭଗ୍ନ ହୋଇଯିବାରୁ ପରବର୍ତ୍ତୀ ସମୟରେ ଚଳନ୍ତି ପ୍ରତିମା ମା'ଲକ୍ଷ୍ମୀଦେବୀ, ମା'ମହାସରସ୍ୱତୀ ଓ ଦୋଳଗୋବିନ୍ଦ ଦୋଳମଣ୍ଡପକୁ ବିଜେ କରୁଛନ୍ତି । କାଳକ୍ରମେ ଏହି ମଣ୍ଡପଟି ଜରାଜୀର୍ଣ୍ଣ ହୋଇଗଲା । ଫଳରେ ବୀରକେଶରୀ ଦେବଙ୍କ ସମୟରେ ମେଘନାଦ ପାଚେରିର ବାହାରେ ଉତ୍ତରଦିଗରେ ଅନ୍ୟ ଗୋଟିଏ ଦୋଳବେଦୀ ତଥା ଦୋଳମଣ୍ଡପ ନିର୍ମାଣ ହୋଇଥିଲା । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଦୋଳପୂର୍ଣ୍ଣିମାଦିନ ଠାକୁରମାନେ ଦୋଳମଣ୍ଡପରେ ଥିବା ଦୋଳିରେ ବିଜେ କରି ଯଥାରୀତି ପୂଜା ପାଇଆସୁଛନ୍ତି ।

**ଯଜ୍ଞମଣ୍ଡପ :-**

ଗୁଣ୍ଡିଚା ମନ୍ଦିରର ପଶ୍ଚିମପଟେ ନୃସିଂହ ମନ୍ଦିର ଅବସ୍ଥିତ । ଏହି ମନ୍ଦିରଟି ଅତି ପ୍ରାଚୀନ ଓ ଏହାର ନାମ ଯଜ୍ଞ ନୃସିଂହ ଅଟେ । ଶାସ୍ତ୍ରରେ ଅଛି ପରମ ଶ୍ରୀବିଷ୍ଣୁଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ଏଠାରେ ଏହି ମନ୍ଦିରକୁ ପ୍ରତିଷ୍ଠା କରାଇ ପ୍ରଭୁ ଶ୍ରୀଜଗନ୍ନାଥ ମନ୍ଦିରର ନିର୍ମାଣ କରିବାପାଇଁ ପ୍ରଭୁ ଶ୍ରୀନୃସିଂହଙ୍କୁ ପାଖରେ ଉପାସନା କରିଥିଲେ । ଏଥିପାଇଁ ଏଠାରେ ସହସ୍ର ଅଶ୍ୱମେଧ ଯଜ୍ଞ କରିଥିଲେ । ଯେଉଁ ପୀଠରେ ସେ ସହସ୍ର ଅଶ୍ୱମେଧ ଯଜ୍ଞ କରିଥିଲେ, ସେହି ପୀଠଟି ଯଜ୍ଞପୀଠ ତଥା ଯଜ୍ଞମଣ୍ଡପ ରୂପେ ପରିଚିତ । କେହି କେହି ଗୁଣ୍ଡିଚା ମନ୍ଦିରକୁ ଯଜ୍ଞମଣ୍ଡପ କହିଥାନ୍ତି । ଆଜିକାଲି ପର୍ବପର୍ବାଣି

ସମୟରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମନ୍ଦିରରୁ ଶ୍ରୀନୃସିଂହଙ୍କ ପାଖକୁ ଆଜ୍ଞାମାଳ ଯାଉଅଛି ।

**ଅନ୍ତର୍ବେଦୀ ମଣ୍ଡପ :-**

ମହୋଦଧିଠାରୁ କଳ୍ପବଟ ମୂଳ ପର୍ଯ୍ୟନ୍ତ ସ୍ଥାନକୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅନ୍ତର୍ବେଦୀ ମଣ୍ଡପ କୁହାଯାଏ । ପୁରାଣରେ ବର୍ଣ୍ଣିତ ଅଛି ଏହି ସ୍ଥାନରେ ମୃତ୍ୟୁବରଣ କଲେ ମୋକ୍ଷଲାଭ ହୋଇଥାଏ । ମହାଭାରତରେ ବର୍ଣ୍ଣିତ ଅଛି ରାଜା ଯୁଧିଷ୍ଠିରଙ୍କ ସମୟରେ ଶ୍ରୀକ୍ଷେତ୍ରରେ କୌଣସି ମନ୍ଦିର ଓ ବିଗ୍ରହନଥିଲା । ଗୋଟିଏ ମହାନ ବେଦୀ ଥିଲା । ସେହି ବେଦୀକୁ ଅନ୍ତର୍ବେଦୀ ମଣ୍ଡପ କୁହାଯାଉଅଛି । ଏହି ମଣ୍ଡପଟି ପବିତ୍ର ତୀର୍ଥସ୍ଥାନ ଥିଲା ବୋଲି ପୁରାଣ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ଅଛି ।

କେହି କେହି ରତ୍ନମଣ୍ଡପ ଓ ଗୁଣ୍ଡିଚା ମଣ୍ଡପକୁ ଅନ୍ତର୍ବେଦୀ ମଣ୍ଡପ କହିଥାନ୍ତି । ଏଥି ସହିତ ଶ୍ରୀକ୍ଷେତ୍ରରେ ଅନ୍ୟ ମଣ୍ଡପମାନ ଅଛି । ଯଥା : ପ୍ରସାଦ ମଣ୍ଡପ, ବୈକୁଣ୍ଠ ମଣ୍ଡପ, ବକୁଳମଣ୍ଡପ ଓ ବଲ୍ଲଭ ମଣ୍ଡପ ।

* * * * * * *

# ଶ୍ରୀଜଗନ୍ନାଥ ଓ ଗରୁଡ଼ସ୍ତମ୍ଭ




ରତ୍ନସିଂହାସନରେ ବିରାଜିତ ଶ୍ରୀଜଗନ୍ନାଥ ସୃଷ୍ଟିର ଆଦ୍ୟକାଳରୁ ପରଂବ୍ରହ୍ମରୂପେ ଆଧାରିତ ହେଉଛନ୍ତି । ସେ ହେଉଛନ୍ତି ଛପନକୋଟି ଜୀବଜଗତର ପ୍ରାଣବିନ୍ଦୁ ତଥା ପ୍ରଭୁ ପରମେଶ୍ୱର, ଅଖିଳ ବ୍ରହ୍ମାଣ୍ଡର ପତି, ନିରାକାର, ପରଂବ୍ରହ୍ମ ଓ ଅସରନ୍ତି କୃପାର ଭଣ୍ଡାର । ଭଗବାନ ଶ୍ରୀବିଷ୍ଣୁ ବିଭିନ୍ନ ସମୟରେ ଓ ଭିନ୍ନ ଭିନ୍ନ ରୂପରେ ପବିତ୍ର ଭାରତ ଭୂମିରେ ଆବିର୍ଭୂତ ହୋଇଛନ୍ତି । ଏହି ଦେବଭୂମିରେ ଭଗବାନଙ୍କର ଚାରୋଟି ଧାମ ଅଛି ବୋଲି ଶାସ୍ତ୍ରାନୁମୋଦିତ । ଏହି ଚାରୋଟି ଧାମ ମଧ୍ୟରେ ଶ୍ରୀକ୍ଷେତ୍ର ଏକ ଶ୍ରେଷ୍ଠଧାମ ରୂପେ ବିବେଚିତ ହୋଇଅଛି । ଏହି ଧାମକୁ ଶ୍ରୀବିଷ୍ଣୁଙ୍କର ଭୋଜନଧାମ କୁହାଯାଏ । ଏହି ଧାମରେ ତ୍ରିଭୁବନପତି ଶ୍ରୀଜଗନ୍ନାଥଙ୍କର ନୀତ୍ୟଲୀଳା ବିଦ୍ୟମାନ ।

ଶାସ୍ତ୍ରାନୁମୋଦିତ ପ୍ରତ୍ୟେକ ଦେବଦେବୀଙ୍କର ନିର୍ଦ୍ଦିଷ୍ଟ ବାହନ ଅଛନ୍ତି । ଯଥା:- ଶ୍ରୀବ୍ରହ୍ମାଙ୍କର ହଂସ, ଶ୍ରୀବିଷ୍ଣୁଙ୍କର ଗରୁଡ଼, ଶ୍ରୀଶିବଙ୍କର ବୃଷଭ, ଶ୍ରୀସରସ୍ୱତୀଙ୍କର ହଂସ, ଶ୍ରୀଲକ୍ଷ୍ମୀଙ୍କର ପେଚକ, ଶ୍ରୀଦୁର୍ଗାଙ୍କର ସିଂହ, ଶ୍ରୀଗଣେଶଙ୍କର ମୂଷିକ, ଶ୍ରୀକାର୍ତ୍ତିକଙ୍କର ମୟୂର, ଶ୍ରୀଇନ୍ଦ୍ରଙ୍କର ଐରାବତ, ଶ୍ରୀଯମଙ୍କର ମଇଁଷି ଇତ୍ୟାଦି । ପ୍ରତ୍ୟେକ ଦେବଦେବୀଙ୍କର ବାହନର ମୂର୍ତ୍ତି ମନ୍ଦିରର ଦ୍ୱାର ଦେଶରେ ବିଦ୍ୟମାନ । ତଦ୍ୱାରା ତାହା କେଉଁ ମନ୍ଦିର ବାହନରୁ ସୂଚିତ ହୋଇଥାଏ । ତେଣୁ ଶ୍ରୀଜଗନ୍ନାଥ ସାକ୍ଷାତ ଶ୍ରୀବିଷ୍ଣୁ ହୋଇଥବାରୁ ତାଙ୍କ ସମ୍ମୁଖରେ ଗରୁଡ଼ ମୂର୍ତ୍ତି ରହିବା ସ୍ୱାଭାବିକ । ପରମାରାଧ୍ୟ ଶ୍ରୀଜଗନ୍ନାଥଙ୍କର ଏକାନ୍ତ ବିଶ୍ୱସ୍ତ ବାହନ ଗରୁଡ଼ଙ୍କର ତାଙ୍କ ସହିତ ରହିଛି ଚତୁର୍ଯୁଗର ଭକ୍ତିପୂତ ନିବିଡ଼ ସମ୍ପର୍କ ।

ପରମପୂଜ୍ୟ ଗରୁଡ଼ଙ୍କର ଆବିର୍ଭାବ ଓ ଶ୍ରୀବିଷ୍ଣୁଙ୍କ ବାହନ ହେବାର ଏକ ପୌରାଣିକ କିମ୍ବଦନ୍ତୀ ମହାଭାରତର ଆଦିପର୍ବ ୨୩ ଅଧ୍ୟାୟ ୧୬ ଓ ୧୭ ଶ୍ଳୋକରେ ଲିପିବଦ୍ଧ ହୋଇଅଛି । ସତ୍ୟଯୁଗରେ ଦକ୍ଷ ପ୍ରଜାପତିଙ୍କର କଦ୍ରୁ ଓ ବିନତା ନାମରେ ଦୁଇଜଣ ସୁକନ୍ୟା ଥିଲେ । ପିତା ଦକ୍ଷ ପ୍ରଜାପତି ସେହି କନ୍ୟାଦ୍ୱୟଙ୍କୁ ମହର୍ଷି କଶ୍ୟପଙ୍କ ସହିତ ବିବାହ କରାଇଥିଲେ । ସ୍ୱାମୀ କଶ୍ୟପ ଦୁଇ ପତ୍ନୀଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇ ବରମାଗିବାକୁ କହିଥିଲେ । କଦ୍ରୁ ଏକ ହଜାର ତେଜସ୍ୱୀ ନାଗପୁତ୍ର ବର ମାଗିଥିଲା ବେଳେ ବିନତା, କଦ୍ରୁ ପୁତ୍ରଙ୍କଠାରୁ ଅଧିକ ତେଜସ୍ୱୀ ଓ ବଳଶାଳୀ ମାତ୍ର ଦୁଇଟି ପୁତ୍ର ମାଗିଥିଲେ । କଶ୍ୟପ ଦୁଇ ପତ୍ନୀଙ୍କୁ ବର ପ୍ରଦାନ କରି ତପସ୍ୟା କରିବାକୁ ବନାନୁଗମନ କରିଥିଲେ । କିଛିଦିନ ପରେ ଏକ ହଜାର ଅଣ୍ଡାରୁ କଦ୍ରୁଙ୍କର ନାଗପୁତ୍ର ଜନ୍ମ ହୋଇଥିଲେ ମଧ ବିନତାଙ୍କର ପୁତ୍ର ଜନ୍ମ ହୋଇନଥିଲେ । ବ୍ୟାକୁଳମନା ମାତା ବିନତା ଅଧୈର୍ଯ୍ୟହୋଇ ଗୋଟିଏ ଅଣ୍ଡାକୁ ଭାଙ୍ଗି ଦେଇଥିଲେ । ସେହି ଭଗ୍ନ ଅଣ୍ଡାରୁ ଅର୍ଦ୍ଧବିକଶିତ ବାଳକ ଅରୁଣ ଆବିର୍ଭୂତ ହୋଇଥିଲେ । ବିକାଶରେ ବାଧା ସୃଷ୍ଟି ହୋଇଥିବାରୁ ଅରୁଣ ମାତା ବିନତାଙ୍କୁ କଦ୍ରୁଙ୍କର ଦାସୀ ହେବାପାଇଁ ଅଭିଶାପ ଦେଇ ଆକାଶକୁ ଉଡ଼ିଯାଇଥିଲେ । ପରବର୍ତ୍ତୀକାଳରେ ସେ ସୂର୍ଯ୍ୟଦେବଙ୍କର ସାରଥି ଆସନ ମଣ୍ଡନ କରିଥିଲେ । ଦ୍ୱିତୀୟ ଅଣ୍ଡାଟି ସମୟକ୍ରମେ ପରିପକ୍ୱ ହୋଇ ସେଥିରୁ ଗରୁଡ଼ ଜନ୍ମଲାଭ କରିଥିଲେ । ସେ ଜନ୍ମରୁ ମହାପରାକ୍ରମଶାଳୀ ଓ ଅତ୍ୟନ୍ତ ତେଜସ୍ୱୀ ଥିଲେ ।

ମହାବୀର ପରମ ଶ୍ରୀବିଷ୍ଣୁଭକ୍ତ ପୁତ୍ର ଗରୁଡ଼ କଦ୍ରୁଙ୍କର ଏକ ହଜାର ନାଗପୁତ୍ରଙ୍କୁ ସଂହାର କରିବା ସଙ୍ଗେ ସଙ୍ଗେ ମାତା ବିନତାଙ୍କୁ ଦାସତ୍ୱରୁ ଉଦ୍ଧାର କରିଥିଲେ । ପ୍ରକାଶଥାଉ କି ଗରୁଡ଼ ସେହିଦିନଠାରୁ ସର୍ପଙ୍କର ପରମ ଶତ୍ରୁରୂପେ ବିଦିତ । ପିତା କଶ୍ୟପଙ୍କର ବରପ୍ରଦାନ ଫଳରେ ପୁତ୍ର ଗରୁଡ଼ ସ୍ୱର୍ଗରେ ଦେବତାମାନଙ୍କୁ ପରାଜିତ କରି ଅମୃତକଳସ ଆଣିବାରେ ସମର୍ଥ ହୋଇଥିଲେ । ସେ ନିତ୍ୟମୁକ୍ତ ଅଖଣ୍ଡ ଜ୍ଞାନସମ୍ପନ୍ନ ହୋଇଥିବାରୁ ଉଡ଼ିବା ସମୟରେ ତାଙ୍କ ପକ୍ଷରୁ ସାମଗାନ (ବେଦ)ଧ୍ୱନିମାନ ନିଃସୃତ ହୋଇଥାଏ । ଶ୍ରୀମଦ୍‌ଭଗବତ ଗୀତାର ଦଶମ ଅଧ୍ୟାୟର ୩୦ତମ ଶ୍ଳୋକରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି । "ବୈନତେୟଶ୍ଚ ପକ୍ଷିଣାମ୍ ।"

ମୁଁ (ଶ୍ରୀକୃଷ୍ଣ) ପକ୍ଷୀମାନଙ୍କ ମଧ୍ୟରେ ଗରୁଡ଼ ଅଟେ । ଗରୁଡ଼ ଅମୃତ କଳସ ନେଇ ଫେରୁଥିବା ବେଳେ ତାଙ୍କ ଗତି ପଥରେ ଅକସ୍ମାତ ଭଗବାନ ଶ୍ରୀବିଷ୍ଣୁଙ୍କର ଆବିର୍ଭାବ ଘଟିଲା । ଗରୁଡ଼ଙ୍କର ତୀକ୍ଷ୍ଣବୁଦ୍ଧି, ତେଜସ୍ୱିତା ଓ ପ୍ରବଳ ପରାକ୍ରମ ଦେଖି ବିଷ୍ଣୁ ପ୍ରୀତ ହୋଇ ତାଙ୍କୁ ବରପ୍ରଦାନ କରିବା ପାଇଁ ଇଚ୍ଛା ପ୍ରକଟ କରିଥିଲେ । ସେ ଶ୍ରୀବିଷ୍ଣୁଙ୍କ ମାୟାରେ ବିମୋହିତ ହୋଇ ଶରଣାପନ୍ନ ପୂର୍ବକ କହିଥିଲେ, ହେ ପ୍ରଭୁ ! ସର୍ବଦା ଆପଣଙ୍କ ଧ୍ୱଜାରେ ସ୍ଥାନ ଦିଅନ୍ତୁ । ଅମୃତପାନକରି ଅଜୟ ଅମର ହେବାପାଇଁ ବରପ୍ରଦାନ କରନ୍ତୁ । ଶ୍ରୀବିଷ୍ଣୁ ତାଙ୍କ ଉପରେ ସୁପ୍ରସନ୍ନ ହୋଇ ସେହିଦୁଇଟି

ବର ପ୍ରଦାନ କରିଥିଲେ । ଏଥି ସହିତ ଶ୍ରୀବିଷ୍ଣୁ ତାଙ୍କ ବାହନ ହେବା ପାଇଁ ଗରୁଡ଼ଙ୍କୁ ବର ପ୍ରଦାନ କରିଥିଲେ । ଏହିପରି ଗରୁଡ଼ ଭଗବାନଙ୍କର ଯୁଗ ଯୁଗ ଧରି ବାହନ ହୋଇ ରହିଗଲେ ଓ ରହିଥିବେ ମଧ୍ୟ ।

ମହର୍ଷି ବ୍ୟାସକୃତ ମହାଭାରତ ୩୩ ଅଧ୍ୟାୟ ୧୬/୧୭ ଶ୍ଳୋକରେ ଉଲ୍ଲେଖିତ-

"ଧ୍ୱଜଂ ଚ ଚକ୍ରେ ଭଗବାନୁପରି ସ୍ୱାସ୍ଥ୍ୟସୀତିତମ୍

ଏବ ମସ୍ତିତି ତଂ ଦେବମୁକ୍ତ୍ୱା ନାରାୟଣଂ ଖଗଃ ।"

ତେଣୁ ଭଗବାନ ଶ୍ରୀବିଷ୍ଣୁଙ୍କ ଧ୍ୱଜାରେ ଗରୁଡ଼ ଥିବାର ଦେଖାଯାଏ । ସେ ନିଜର ବୁଦ୍ଧି, କୌଶଳ ଓ ଶକ୍ତି ବଳରେ ଶ୍ରୀବିଷ୍ଣୁଙ୍କର ବାହନ ହୋଇ ଜୀବନକୁ ସାର୍ଥକ କରିପାରିଛନ୍ତି । ସେଥିପାଇଁ ଆଜି ପ୍ରତ୍ୟେକ ଶ୍ରୀବିଷ୍ଣୁ ମନ୍ଦିରରେ ଗରୁଡ଼ ସ୍ଥାନ ପାଇଛନ୍ତି ।

ଶ୍ରୀକ୍ଷେତ୍ରାଧୀଶ ଶ୍ରୀଜଗନ୍ନାଥ ସ୍ୱୟଂ ପରମବ୍ରହ୍ମ ହୋଇଥିବାରୁ ପରମ ଭକ୍ତ ତଥା ଦାସ ଗରୁଡ଼ଙ୍କର ଆସ୍ଥାନ ସେଠାରେ ପ୍ରତିଷ୍ଠିତ ହୋଇ ବିଧିବିଧାନ ସହ ପୂଜାପାଉଛନ୍ତି । ଶ୍ରୀଗରୁଡ଼ସ୍ତମ୍ଭଟି ରତ୍ନସିଂହାସନଠାରୁ ୧୭୫ ଫୁଟ ଦୂରରେ ଏକ ସରଳରେଖାରେ ଆଧାରିତ ଜଗମୋହନରେ ଅବସ୍ଥିତ । ଏହାର ପଛପଟେ ଭୋଗମଣ୍ଡପ ଅବସ୍ଥିତ । ଜଗମୋହନର ଅନ୍ୟନାମ ନାଟ ମଣ୍ଡପ ଅଟେ । ଏହି ନାଟ ମନ୍ଦିରରେ ଗରୁଡ଼ଙ୍କ ପରି ବିଭିନ୍ନ ପ୍ରକାରର ପାର୍ଶ୍ୱ ଦେବଦେବୀ ଆସ୍ଥାନ ମଣ୍ଡିତ କରିଛନ୍ତି । ସେଗୁଡ଼ିକ ହେଲା- ଚର୍ଚ୍ଚା ଶ୍ରୀଗଣେଶ, ଖମ୍ବ ଶ୍ରୀଗାୟତ୍ରୀ, ଶ୍ରୀବକ୍ରନାରାୟଣ, ଖମ୍ବ ବିମଳା, ଖମ୍ବ ନୃସିଂହ, ଖମ୍ବ ଦକ୍ଷିଣକାଳୀ, ଖମ୍ବ ଶୀତଳା, ସୁଗ୍ରୀବ, ବିଭୀଷଣ, ମା'ମଙ୍ଗଳା, ଚୈତନ୍ୟ, ଶ୍ରୀକୃଷ୍ଣ, ଶ୍ରୀପଞ୍ଚମୁଖୀ ମହାବୀର ଓ ଗରୁଡ଼ ସ୍ତମ୍ଭ ଇତ୍ୟାଦି । ଏହିମାନଙ୍କ ମଧ୍ୟରେ ଭକ୍ତମାନଙ୍କର ଗରୁଡ଼ସ୍ତମ୍ଭ ମୁଖ୍ୟ ଆକର୍ଷଣ ଅଟେ । ଗରୁଡ଼ଙ୍କର ମହିମା ଓ ଗୁଣ ଗାରିମାର ପଟାନ୍ତର ନାହିଁ । କାରଣ ଯେପରି ପୌରାଣିକ ମତବାଦରେ ଶ୍ରୀଶିବଙ୍କ ମନ୍ଦିରରେ ବାହନ ବୃଷଭଙ୍କୁ ଦର୍ଶନ ନକରି ଶ୍ରୀଶିବଙ୍କୁ ଦର୍ଶନ କଲେ ଭକ୍ତ ମାନଙ୍କର ମନସ୍କାମନା ପୂର୍ଣ୍ଣ ହୋଇ ନଥାଏ, ଠିକ୍ ସେପରି ପ୍ରଥମେ ଗରୁଡ଼ଙ୍କୁ ଦର୍ଶନ ନ'କରି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ଫଳ ଲାଭ ହୋଇ ନଥାଏ ବୋଲି ପ୍ରବାଦ ଅଛି । ତେଣୁ ସମଗ୍ର ପୃଥିବୀର କୋଣ ଅନୁକୋଣରୁ ଆସୁଥିବା କୋଟି କୋଟି ଶ୍ରୀଜଗନ୍ନାଥପ୍ରେମୀ ଭକ୍ତ ଲୋକାଗ୍ରର ମତରେ ପ୍ରଥମେ ଗରୁଡ଼ସ୍ତମ୍ଭଙ୍କୁ ସ୍ପର୍ଶ କରନ୍ତି ଓ ଦୀପ ପ୍ରଦାନ କରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥାନ୍ତି ।

୧୦ଫୁଟ ଉଚ୍ଚତା ୩ଫୁଟ ଗୋଲେଇ ଆକାରର ଗରୁଡ଼ ସ୍ତମ୍ଭଟି ମନ୍ଦିର ନିର୍ମାଣର ପ୍ରାରମ୍ଭରୁ ବିଦ୍ୟମାନ । ମାର୍ବଲ ପ୍ରସ୍ତରାଂଶରେ ଗଠିତ ଏକ ଦୁଷ୍ପ୍ରାପ୍ୟ ଅଦ୍ୱିତୀୟ ପ୍ରସ୍ତରରେ ଗଠିତ । ଏଥିରେ ଗରୁଡ଼ (ଅଧା ମଣିଷ ଓ ଅଧା ଇଗଲ ପକ୍ଷୀ) ବିଦ୍ୟମାନ ହୋଇଥିବାରୁ ଏହାକୁ "ଗରୁଡ଼ଧ୍ୱଜ" ମଧ୍ୟ କୁହାଯାଇଥାଏ । ଏହାର ବର୍ଣ୍ଣ ଦେଖିବାକୁ ଧବଳ ଅଟେ । ଏହାକୁ ସ୍ପର୍ଶକଲେ

ଜଣାଯାଏ, ତାହା ପଥର ଅପେକ୍ଷା ନରମ ଓ କାଠ- ଠାରୁ ଶକ୍ତ ଅଟେ । ଗୋଟିଏ ପ୍ରସ୍ଫୁଟିତ ପଦ୍ମଫୁଲକୁ ଗୋଟିଏ ଲମ୍ବ ବୃନ୍ତ ସହିତ ଓଲଟାଇ ରଖିଲେ ଯେପରି ଦେଖାଯାଏ, ଏହାର ଆକାର ସେପରି ଅଟେ । ଏହାର ନିମ୍ନ ଅଂଶଟି ଅଧିକ ଆୟତନ ବିଶିଷ୍ଟ ଅଟେ । ଶୀର୍ଷ ଅଂଶରେ ଦୁଇଫୁଟର ଏକ ଗରୁଡ଼ ପ୍ରତିମା ତପସ୍ୟାରତ ଅବସ୍ଥାରେ ଭଗବାନଙ୍କୁ ଚାହିଁ ବସିଛନ୍ତି । ଏହି ପ୍ରତିମାଟି କଳା ମୁଗୁନି ପଥରରେ ନିର୍ମିତ । କେତେକ  ଗବେଷକ ଓ ଐତିହାସିକଙ୍କ ମତରେ ଏହି ଖମ୍ବରେ ନିହିତ ଅଛି ଏକ ମୂଲ୍ୟବାନ ରତ୍ନ ଖଚିତ ମଣି । ସେହି ମଣିଟି ଭଗବାନ ଶ୍ରୀବିଷ୍ଣୁଙ୍କର ପରମ ଆଦରଣୀୟ ଆଭରଣ ହୋଇଥିବାରୁ ତାହାର ସର୍ବଭୂତ ହିତକର ଅପାର ମହିମା ବର୍ଣ୍ଣନାତୀତ । ସେହି ଅପାର ମଣିକୁ ନିଜ ଶରୀରରେ ଗରୁଡ଼ ବହନ କରିଥିବାରୁ, ତାଙ୍କୁ ସ୍ପର୍ଶକଲେ ନିଜର ଅଶେଷ ମଙ୍ଗଳ ସାଧିତ ହୋଇଥାଏ ଓ ଶ୍ରୀଜଗନ୍ନାଥଙ୍କ କୃପା ମିଳିଥାଏ । ତେଣୁ ଲକ୍ଷ ଲକ୍ଷ ଭକ୍ତ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପୂର୍ବରୁ ଆଗ ଗରୁଡ଼ ସ୍ତମ୍ଭକୁ ଦର୍ଶନ କରି ଛାତିରେ ଲଗାଇଥାନ୍ତି । ଏହି ଖମ୍ବର ପ୍ରଧାନ ବିଶେଷତ୍ୱ ହେଲା ଅମାବାସ୍ୟା, ସଂକ୍ରାନ୍ତି, ଶନିବାର, ମଙ୍ଗଳବାର ଆଦି ତିଥିରେ ଭକ୍ତମାନେ ତାଙ୍କ ସ୍ନାନ ଜଳକୁ ସର୍ବ ରୋଗର ନିରାକରଣ ପାଇଁ ସେବନ କରିଥାନ୍ତି । ପ୍ରତିଦିନ ସକାଳେ ତିନି ଠାକୁରଙ୍କୁ ସ୍ନାନ କରାଯିବା ପରେ ଭକ୍ତ ଗରୁଡ଼ଙ୍କୁ ସ୍ନାନ କରାଯାଇଥାଏ । ଏହା ୧୦ଫୁଟ ଉଚ୍ଚତା ଉପରେ ଥିବାରୁ ସେବକମାନେ ଏକ କାଠ ନିଶୁଣି ମାଧ୍ୟମରେ ତାଙ୍କୁ ସ୍ନାନ କରାଇଥାଆନ୍ତି ।

ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟର ସେବକମାନେ ଶ୍ରୀଗରୁଡ଼ଙ୍କର ପୂଜାକାର୍ଯ୍ୟ କରିଥାନ୍ତି ଏବଂ ସେମାନେ ନୀଳଚକ୍ରରେ ବାନା ବାନ୍ଧିବା ସଙ୍ଗେ ସଙ୍ଗେ ମନ୍ଦିରରେ ଚୂନ ଧଉଳେଇବା କାର୍ଯ୍ୟ କରିଥାନ୍ତି । ସେମାନଙ୍କୁ ଗରୁଡ଼ ସେବାୟତ ବା ଚୂନରା କୁହାଯାଏ । ସେହି ଚୂନରା ସେବକମାନଙ୍କ ମଧ୍ୟରେ କେତେକ ଶାଢ଼ୀବନ୍ଧା ସେବକରୂପେ ପରିଚିତ । ମନ୍ଦିର ପରମ୍ପରା ଅନୁସାରେ ପୁରୁଖା ଓ ବିବାହିତ ସେବକମାନେ ଶାଢ଼ୀପିନ୍ଧା ସେବାୟତ ହୋଇଥାନ୍ତି । ସେହି ଶାଢ଼ୀପିନ୍ଧା ସେବାୟତମାନେ କେବଳ ଗରୁଡଙ୍କର ସେବାକାର୍ଯ୍ୟ କରିଥାନ୍ତି ।

ଶ୍ରୀକ୍ଷେତ୍ର ଧାମର ପୀଠାଧୀଶ ତଥା ଶ୍ରୀଜଗନ୍ନାଥ ଯେପରି ସମସ୍ତ ଠାକୁରଙ୍କ ମଧ୍ୟରେ "ବଡ଼" ଆଖ୍ୟାରେ ଆଧାରିତ ହୋଇଛନ୍ତି, ଯଥା ବଡ଼ଠାକୁର, ବଡ଼ଦାଣ୍ଡ, ବଡ଼ଚୂଳ, ବଡ଼ଧ୍ୱଜା, ବଡ଼ପଣ୍ଡା ଇତ୍ୟାଦି ଯେପରି ସମସ୍ତ ଗରୁଡ଼ମାନଙ୍କ ମଧ୍ୟରେ ଶ୍ରୀଜଗନ୍ନାଥ ମନ୍ଦିରରେ ବିରାଜିତ ଗରୁଡ଼ ମଧ୍ୟ ବଡ଼ । ସେ ହେଉଛନ୍ତି ଅନ୍ୟତ୍ର ବିଦ୍ୟମାନ ଗରୁଡ଼ଙ୍କ ମଧ୍ୟରେ ସକଳ ଶକ୍ତିର ଆଧାର, ସର୍ବଫଳଦାୟକ, ଦୟା ଓ କରୁଣାର ସାଗର ଓ ଦୁଃଖୀରଙ୍କିଙ୍କର ପରମବନ୍ଧୁ । ସେ ଯେପରି ସାକ୍ଷାତ  ଶ୍ରୀଜଗନ୍ନାଥଙ୍କର ସାନ୍ନିଧିଲାଭ କରି ଜୀବନଟିକୁ ସାର୍ଥକ କରାଇପାରିଛନ୍ତି ସେପରି କୋଟି କୋଟି ଭକ୍ତମାନଙ୍କୁ ଦର୍ଶନ ଦେଇ ସେମାନଙ୍କୁ ସତକର୍ମର ପଥ ପ୍ରଦର୍ଶକ କରାଇ ପାରିଛନ୍ତି ।

# ଶ୍ରୀ ମହାପ୍ରଭୁଙ୍କ ସୁନାବେଶ



ଯୁଗ ଯୁଗ ଧରି ପରମ ତୀର୍ଥକ୍ଷେତ୍ର ପୁରୀ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ରୂପେ ବିଶ୍ୱବିଦିତ । ଏହି କ୍ଷେତ୍ରସ୍ଥ ବଡ଼ଦେଉଳର ରତ୍ନସିଂହାସନରେ ବିରାଜିତ ଅଖିଳ ବ୍ରହ୍ମାଣ୍ଡର ପତି ତଥା ସର୍ବଦେବାଧିପତି, ଦାରୁମୂର୍ତ୍ତିମୁରାରି ପ୍ରଭୁ ଶ୍ରୀଜଗନ୍ନାଥ, ଜ୍ୟେଷ୍ଠଭ୍ରାତା ବଳଭଦ୍ର ଓ ଭଗ୍ନୀ ସୁଭଦ୍ରାଙ୍କର ସଂସ୍କୃତି ଓ ପରମ୍ପରା ଅତୀବ ମହାନ୍ । ଯାହାକୁ ଆଜି ପର୍ଯ୍ୟନ୍ତ ଜଗନ୍ନାଥପ୍ରେମୀ ଭକ୍ତ ସମାଜ, କବି, ଲେଖକ, ଗବେଷକ, ଐତିହାସିକମାନେ ଜାଣିବା, ବୁଝିବା ଓ ଲେଖିବାର ଶେଷ ସୋପାନରେ ଉପନୀତ ହୋଇପାରି ନାହାନ୍ତି । କାରଣ ସେ ଅଟନ୍ତି ଅନନ୍ତ, ନିରାକାର, ଅସୀମ, ଅଦୃଶ୍ୟ, ଅସ୍ପର୍ଶ ଓ ଅଭେଦ । ଶ୍ରୀଜଗନ୍ନାଥଙ୍କର ବାର ମାସରେ ତେର ପର୍ବ ପାଳନର ବିଧିବିଧାନ ଖଞ୍ଜା ଯାଇଅଛି । ତେଣୁ ବର୍ଷକ ୩୬୫ଦିନ ଏଠାରେ କିଛି ନା କିଛି ପର୍ବପର୍ବାଣି, ମେଳାମହୋତ୍ସବ, ପୂଜାପଦ୍ଧତି, ବେଶଭୂଷା ଇତ୍ୟାଦି ପାଳନ ହେଉଅଛି । ଯାହାକି ମାଦଳାପାଞ୍ଜିଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାରର ପୁରାଣଶାସ୍ତ୍ର, ବେଦବେଦାନ୍ତ ଓ ଉପନିଷଦ୍‌ରେ ଲିପିବଦ୍ଧ ହୋଇଅଛି । ଯେପରି ଯାତ୍ରାମାନଙ୍କ ମଧ୍ୟରେ ରଥଯାତ୍ରା ପୃଥିବୀ ବିଖ୍ୟାତ, ବେଶଭୂଷା ମଧ୍ୟରେ ପ୍ରଭୁଙ୍କର ସୁନାବେଶ ମଧ୍ୟ ସେପରି ଅଟେ । କାରଣ, ଏହା ରଥଯାତ୍ରା ଶେଷ ପର୍ଯ୍ୟାୟର ଏକ ଅଂଶବିଶେଷ । ବର୍ଷକ ମଧ୍ୟରେ ଶ୍ରୀମହାପ୍ରଭୁଙ୍କ ପାଖରେ ୩୨ପ୍ରକାରର ବେଶଭୂଷା ପାଳିତ ହେଉଥିଲେ ମଧ୍ୟ କେହି କେହି ଏହାକୁ ୨୪ପ୍ରକାରର କହିଥାନ୍ତି ।

ବିଗ୍ରହମାନେ ବିଭିନ୍ନ ତିଥିରେ ବିଭିନ୍ନ ଦେବଙ୍କ ଅବତାର ରୂପରେ ଭୂଷିତ ହେଉଥିଲେ ମଧ୍ୟ, ସେଥିମଧ୍ୟରୁ ବର୍ଷକ ମଧ୍ୟରେ ୫ ପ୍ରକାରର ଶ୍ରୀମହାପ୍ରଭୁଙ୍କୁ ସୁନାବେଶ କରାଯାଏ, ଯଥା- ବିଜୟାଦଶମୀ(ଦଶହରା), କାର୍ତ୍ତିକପୂର୍ଣ୍ଣମୀ, ପୌଷପୂର୍ଣ୍ଣମୀ, ଦୋଳପୂର୍ଣ୍ଣମୀ ଓ ଆଷାଢ଼ ଶୁକ୍ଳପକ୍ଷ ଏକାଦଶୀ । ସେଥିମଧ୍ୟରୁ ମନ୍ଦିର ଭିତରେ ରତ୍ନସିଂହାସନରେ ୪ ପ୍ରକାରର ସୁନାବେଶ ହୋଇଥାଏ । କିନ୍ତୁ ଗୋଟିଏ ସୁନାବେଶ ଯାହାକି ଆଷାଢ଼ ଶୁକ୍ଳ ଏକାଦଶୀ ତିଥିରେ ସିଂହଦ୍ୱାର ନିକଟରେ ମୁକ୍ତ ଆକାଶତଳେ ଶ୍ରୀଚତୁର୍ଦ୍ଧାବିଗ୍ରହମାନେ ରଥାରୂଢ଼ ଥିବା ସମୟରେ ହୋଇଥାଏ । ଏହି ବେଶ ମନ୍ଦିର ବାହାରେ ହେଉଥିବାରୁ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ଲୋକମାନେ ଶ୍ରୀମହାପ୍ରଭୁଙ୍କୁ ଦର୍ଶନ କରି ନିଜକୁ ଭାଗ୍ୟବାନ ମନେ କରିଥାନ୍ତି । ଏହି ଦିବସଟି ହରିଶୟନ ତଥା ବଡ଼ ଏକାଦଶୀରେ ହେଉଥିବାରୁ ଭକ୍ତ ସମାଜ ଶ୍ରୀମହାପ୍ରଭୁଙ୍କୁ ସୁନାବେଶ ରୂପରେ ଦର୍ଶନ କରି ଆତ୍ମ ସନ୍ତୋଷ ଲାଭ କରିବା ସଙ୍ଗେ ସଙ୍ଗେ ପୁଣ୍ୟ ଅର୍ଜନ କରିଥାନ୍ତି । କେହି କେହି ଏହି ବେଶକୁ ହରିଶୟନ ବେଶ ବୋଲି କହିଥାନ୍ତି ।

ଶ୍ରୀଜଗନ୍ନାଥଙ୍କର ଏହି ସୁନାବେଶ ବହୁ ପ୍ରାଚୀନ କାଳରୁ ଆରମ୍ଭ ହୋଇଥିଲା ବୋଲି କେହି କେହି ଗବେଷକ ମତ ପୋଷଣ କରିଛନ୍ତି । ଅତୀତରେ ରାଜାମହାରାଜାଙ୍କ ଶାସନ ସମୟରେ ଶ୍ରୀଜଗନ୍ନାଥଙ୍କୁ "ରାଜାଧିରାଜ" ବା ସମ୍ରାଟ ରୂପେ ବିବେଚିତ କରି ସମ୍ମାନ ପ୍ରଦର୍ଶନ କରୁଥିଲେ । ପ୍ରକାଶଥାଉକି ତ୍ରୟୋଦଶ ଶତାବ୍ଦୀରେ ଅନଙ୍ଗଭୀମ ଦେବ (୧୨୧୧-୧୨୩୮) ଶ୍ରୀଜଗନ୍ନାଥଙ୍କୁ ଉତ୍କଳର ସମ୍ରାଟ ତଥା ରାଷ୍ଟ୍ର ଦେବତା ରୂପେ ଅଭିହିତ କରି ନିଜକୁ ତାଙ୍କର ଜଣେ ଅକିଞ୍ଚନ ସେବକରୂପେ ଘୋଷଣା କରିଥିଲେ । ପରେ ତାଙ୍କ ପୁତ୍ର ନରସିଂହଦେବ (୧୨୩୮-୧୨୬୪)ନିଜକୁ ଶ୍ରୀପୁରୁଷୋତ୍ତମଙ୍କର ପୁତ୍ରରୂପେ ଅବିହିତ କରିଥିଲେ । ଭାନୁଦେବ (ତୃତୀୟ)(୧୩୦୮-୧୩୨୮) ଶ୍ରୀଜଗନ୍ନାଥଙ୍କୁ ରାଜାଧିରାଜ ରୂପେ ସ୍ୱୀକାର କରି ମହାପ୍ରଭୁଙ୍କ ନାମରେ ଅଙ୍କ ଗଣନା ଆରମ୍ଭ କରିଥିଲେ । ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ର ଦେବ (୧୪୩୫-୧୪୬୬) ଶ୍ରୀଜଗନ୍ନାଥଙ୍କୁ ଜାତୀୟ ଦେବତା ରୂପେ ଗ୍ରହଣ କରି ନିଜକୁ ତାଙ୍କର ଜଣେ ସେବକ ରୂପେ ଅଭିହିତ କରିଥିଲେ । ଗବେଷକମାନଙ୍କ ମତରେ ୧୨୩୨ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମଦେବ ଆଷାଢ଼ ଶୁକ୍ଳ ଏକାଦଶୀ ତିଥିରେ ସୁନାବେଶ ଆରମ୍ଭ କରିଥିଲେ । ବିଭିନ୍ନ ସମୟରେ ରାଜୁତି କରୁଥିବା ମହାରାଜାମାନେ ମହାପ୍ରଭୁଙ୍କ ସେବାପୂଜା ପାଇଁ ଅଜସ୍ର ସ୍ୱର୍ଣ୍ଣ, ରୌପ୍ୟ, ମୋତିମାଣିକ, ମୁକ୍ତା, ହୀରାନୀଳା ଆଦି ମୂଲ୍ୟବାନ ରତ୍ନପଥର ଆଣି ମହାପ୍ରଭୁଙ୍କୁ ଅର୍ପଣ କରିଥିଲେ । ୧୪୬୦ ଖ୍ରୀ.ଅରେ କପିଳେନ୍ଦ୍ର ଦେବ ଜୟଦୁର୍ଗାଙ୍କ କୃପାରୁ ସମଗ୍ର ଦକ୍ଷିଣଭାରତ ଜୟକରି ୧୬ଗୋଟି ହସ୍ତୀଉପରେ ବିପୁଳ ପରିମାଣ ଧନରତ୍ନ ବୋହିଆଣି ଶ୍ରୀମନ୍ଦିର ଭଣ୍ଡାରଘରେ ରଖିଥିଲେ । ଯାହାକି ଆଜି ସେହି ସବୁ ଧନରତ୍ନ ଶ୍ରୀଜଗନ୍ନାଥଙ୍କ ସମସ୍ତ ପୂଜା କାର୍ଯ୍ୟରେ ବ୍ୟବହୃତ ହେଉଅଛି ।

ଏହି ସବୁ ଧନରତ୍ନକୁ ସୁନାବେଶରେ ଶ୍ରୀଠାକୁରଙ୍କୁ ଭୂଷିତ କରିବାପାଇଁ ବଡଚଢ଼ାଉ ସେବାୟତମାନଙ୍କ ପରାମର୍ଶରେ ଏକ ନୀତି ପ୍ରଣୟନ କରାଯାଇଥିଲା । ରାଜାଙ୍କର ଶ୍ରୀଜଗନ୍ନାଥଙ୍କ ପ୍ରତି ଏତାଦୃଶ ଭକ୍ତି ଦେଖି ବଡଚଢ଼ାଉ ସେବକମାନେ ରାଜାଙ୍କୁ ପରାମର୍ଶ ଦେଉଥିଲେ ଯେ, ରତ୍ନସିଂହାସନରେ ଶ୍ରୀଠାକୁରଙ୍କର ସୁନାବେଶ ସବୁବର୍ଗର ଭକ୍ତମାନେ ଦେଖିବାର ସୁଯୋଗ ପାଆନ୍ତିନାହିଁ । ତେଣୁ ଆଷାଢ଼ଶୁକ୍ଳ ଏକାଦଶୀ ତିଥିରେ ମୁକ୍ତ ଆକାଶତଳେ ରଥଉପରେ ହେଉଥିବା ସୁନାବେଶରେ ଏହିସବୁ ମୂଲ୍ୟବାନ ଧାତୁରେ ନିର୍ମିତ ଅଳଙ୍କାର ବ୍ୟବହାର ହେଲେ ସମସ୍ତ ପ୍ରକାରର ଭକ୍ତମାନେ ଦର୍ଶନ କରି ଧନ୍ୟ ହେବେ । ବଡଚଢ଼ାଉ ସେବକମାନଙ୍କର ଶ୍ରଦ୍ଧା ଓ ଅନୁରୋଧକ୍ରମେ, ରାଜା ବଡଚଢ଼ାଉ ନାମକ ଏକ କଣ୍ଠମାଳା ସମେତ ଶ୍ରୀଭୁଜ, ଶ୍ରୀପୟର, ରତ୍ନପଦକ, ରତ୍ନ କିରୀଟ, କାନଫୁଲ, ମର୍କତମୁକୁଟ, ପଦପଲ୍ଲବ, ମୁଦି ଇତ୍ୟାଦି ୧୩୮ ପ୍ରକାରର ଅଳଙ୍କାରମାନ ଗଢ଼ି ସୁନାବେଶ ପ୍ରଥା ଆରମ୍ଭ କରିଥିଲେ ।

ସୁନାବେଶ ଦିନ ଅର୍ଥାତ୍ ଆଷାଢ଼ଶୁକ୍ଳ ଏକାଦଶୀ ଦିନ ଶ୍ରୀଚତୁର୍ଦ୍ଧାବିଗ୍ରହଙ୍କୁ ରଥ ଉପରେ ସକାଳ ମଙ୍ଗଳ ଆଳତି ଅନୁଷ୍ଠିତ ହୋଇଥାଏ । ତତ୍ପରେ କ୍ରମାନୁସାରେ ମଇଲମ, ତଡ଼ପଲାଗି, ଅବକାଶ, ଗୋପାଳବଲ୍ଲଭ ଓ ସକାଳ ଧୂପ ଅନୁଷ୍ଠିତ ହୁଏ । ସମୟକ୍ରମେ ଶ୍ରୀପ୍ରଭୁଙ୍କର ମଇଲମ ଶାଢ଼ି, ଖଣ୍ଡୁଆଲାଗି ଓ ସନ୍ଧ୍ୟା ଆଳତି ଓ ଏକାଦଶୀର ସର୍ବାଙ୍ଗ ନୀତି ହୁଏ । ସନ୍ଧ୍ୟା ସମୟରେ ସେବକମାନେ ଦୀର୍ଘ ଦୁଇଘଣ୍ଟାଧରି ଶ୍ରୀପ୍ରଭୁମାନଙ୍କୁ ସମସ୍ତ ପ୍ରକାର ମୂଲ୍ୟବାନ ଅଳଙ୍କାରମାନ ଭୂଷିତ କରିଥାନ୍ତି । ଏହି ସବୁ ମୂଲ୍ୟବାନ ଅଳଙ୍କାର ଭଣ୍ଡାର ଘରୁ ଆସିବା ସମୟରେ ପାଳିଆ ମେକାପ, ଖୁଣ୍ଟିଆସେବକ, ମାଜିଷ୍ଟ୍ରେଟ୍, ପୋଲିସଫୋର୍ସ ଓ ମନ୍ଦିର ଅଧିକାରୀମାନେ ଉପସ୍ଥିତ ଥାଆନ୍ତି । ତତ୍ ପରେ ପାଳିଆ ପୁଷ୍ପାଳକ, ଦଇତାପତି, ଖୁଣ୍ଟିଆ ମେକାପ, ତଳୁଛ ଓ ଭିତରଚ୍ଛ ପ୍ରଭୃତି ସେବାୟତମାନେ ଶ୍ରୀଠାକୁରଙ୍କୁ ଅଳଙ୍କାରମାନ ଭୂଷିତ କରିଥାନ୍ତି । ମହାପ୍ରଭୁ ସୁନାବେଶରେ ଥିବାବେଳେ ସନ୍ଧ୍ୟା ଧୂପ, ମହାଦୀପ ପ୍ରଦାନ ଓ ବନ୍ଦନା ନୀତିଗୁଡ଼ିକ ନିଷ୍ଠାର ସହ ଅନୁଷ୍ଠିତ ହୋଇଥାଏ । ଏହି ବେଶରେ କେଉଁ ଠାକୁରଙ୍କୁ କେଉଁ ପ୍ରକାରର ଅଳଙ୍କାର ଭୂଷିତ ହୋଇଥାଏ, ତାହାର ଏକ ନମୁନା ନିମ୍ନରେ ପ୍ରଦତ୍ତ ହୋଇଅଛି ।

ବଳଭଦ୍ରଙ୍କ ଅଳଙ୍କାର ଭିତରେ ଥାଏ - ଶ୍ରୀପୟର, ଶ୍ରୀଭୁଜ, କିରୀଟ, ଓଡ଼ିଆଣି, କୁଣ୍ଡଳ, ଚନ୍ଦ୍ରସୂର୍ଯ୍ୟ, ଆଡ଼କାଣୀ, ଘଘଡ଼ାମାଳି, କଦମ୍ବମାଳି, ତିଳକା, ଚନ୍ଦ୍ରିକା, ଅଳକା, ଝୋବାକଣ୍ଠି, ହଳ ଓ ମୂଷଳ, ବାହାଡ଼ାମାଳି, ବାଘନଖିମାଳି, ସେବତୀମାଳି, ତ୍ରିଖଣ୍ଡିକା, କମରପଟି, ଆଦି ଅଳଙ୍କାରରେ ବିମଣ୍ଡିତ ହୋଇଥାନ୍ତି ।

ଶ୍ରୀ ସୁଭଦ୍ରାଙ୍କ ଅଳଙ୍କାର ମଧ୍ୟରେ ଥାଏ :- କିରୀଟ, ଓଡ଼ିଆଣି, ଚନ୍ଦ୍ରସୂର୍ଯ୍ୟ, ଘଘଡ଼ାମାଳି, କଦମ୍ବମାଳି, ତଡ଼ଗା ଓ ସେବତୀମାଳି ।

ଶ୍ରୀଜଗନ୍ନାଥଙ୍କ ଅଳଙ୍କାର ମଧ୍ୟରେ ଥାଏ :- ଶ୍ରୀପୟର, ଶ୍ରୀଭୁଜ, କିରୀଟ, ଓଡିଆଣି, ଚନ୍ଦ୍ରସୂର୍ଯ୍ୟ, କାନ, ଆଡ଼କାନି, ଘାଘଡ଼ାମାଳି, କଦମ୍ବମାଳି, ତିଳକ, ଚନ୍ଦ୍ରିକା, ଅଳକା, ଝୋବାକଣ୍ଠି, ସୂର୍ଯ୍ୟଚକ୍ର, ରୌପ୍ୟଶଙ୍ଖ, ହରିଡ଼ା, କଦମ୍ବମାଳି, ବାହାଡ଼ାମାଳି, ତାବିଜମାଳି, ସେବତିମାଳି, ଓ ତ୍ରିଖଣ୍ଡିକା କମଳପତି ଆଦି ଅଳଙ୍କାରରେ ବିମଣ୍ଡିତ ହୁଅନ୍ତି ।

ଶ୍ରୀମହାପ୍ରଭୁମାନେ ରଥ ଉପରେ ବିଭିନ୍ନ ରଙ୍ଗର ପାଟବସ୍ତ୍ର, ମୂଲ୍ୟବାନ ଧାତୁଗୁଡ଼ିକର ଅଳଙ୍କାର ଓ ବିଭିନ୍ନ ରଙ୍ଗର ସୁଗନ୍ଧଫୁଲ ଦ୍ୱାରା ଶରୀରର ଆବରଣ ଅତି କମନୀୟ ଶୋଭା ବର୍ଦ୍ଧନ କରୁଥାଏ । ଏତଦ୍‌ବ୍ୟତୀତ ବିଭିନ୍ନ ରଙ୍ଗର ବିଜୁଳି ଆଲୋକ ତାଙ୍କ ଉପରେ ପଡ଼ି ସପ୍ତରଙ୍ଗ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଭକ୍ତ ଓ ଦର୍ଶକମାନଙ୍କ ମନକୁ ଆକର୍ଷିତ କରିଥାଏ । ରାତ୍ର କାଳର ଦୃଶ୍ୟ ଶ୍ରଦ୍ଧାଳୁ ଭକ୍ତମାନଙ୍କୁ ଯେତିକି ଆନନ୍ଦ ଦେଇଥାଏ, ତା'ଠାରୁ ଶତଗୁଣରେ ସୃଷ୍ଟିକରିଥାଏ ଆଧ୍ୟାତ୍ମିକ ପ୍ରେମ । ଲକ୍ଷ ଲକ୍ଷ ଭକ୍ତଙ୍କର ସମାବେଶ, ବିଭିନ୍ନ ପ୍ରକାରର ବାଦ୍ୟଯନ୍ତ୍ର ଯଥା: ଘଣ୍ଟଘଣ୍ଟା, କାହାଳୀ, ସଂକୀର୍ତ୍ତନ, ହରିବୋଲ ଓ ହୁଳହୁଳିରେ ସେହି ସ୍ଥାନର ଆଧ୍ୟାତ୍ମିକ ପରିବେଶକୁ ପ୍ରକମ୍ପିତ କରି ପକାଉଥାଏ । ଏହି ଉତ୍ସବକୁ ଶାନ୍ତିଶୃଙ୍ଖଳା ସହିତ ପରିଚାଳନା କରିବା ପାଇଁ ଶହ ଶହ ପୁଲିସ୍ ବାହିନୀ, ମନ୍ଦିର ପରିଚାଳନା ସଦସ୍ୟ, ଜିଲ୍ଲାସ୍ତରୀୟ ପ୍ରଶାସକ ସମେତ ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନ ଆପ୍ରାଣ ଉଦ୍ୟମ ଜାରି ରଖିଥାନ୍ତି ।ଏଥି ସହିତ ବିଭିନ୍ନ ଗଣମାଧ୍ୟମର ସଦସ୍ୟବୃନ୍ଦ ଟି.ଭି. ମାଧ୍ୟମରେ ସିଧା ପ୍ରସାରଣ,ସୂଚନା ଓ ଲୋକସଂପର୍କ ବିଭାଗର ଡାକବାଜି ଯନ୍ତ୍ରର ମାଧ୍ୟମରେ ଶ୍ରୀଠାକୁରମାନଙ୍କର ମହିମା ଓ ଗୁଣଗାରିମାକୁ ପ୍ରଚାର ଓ ପ୍ରସାର କରି ଏହି ପରିବେଶର ଦୃଶ୍ୟ ଓ ପ୍ରଭାବକୁ ଦ୍ୱିଗୁଣିତ କରିଥାଏ । ଦୀର୍ଘ ୫/୬ଘଣ୍ଟା ଧରି ରାତ୍ରିର ଶେଷ ପ୍ରହର ପର୍ଯ୍ୟନ୍ତ ଏହି ପରିବେଶ ସୃଷ୍ଟି କରିଥାଏ ଭକ୍ତମାନଙ୍କ ମନରେ ଅପାର ଆନନ୍ଦ ଓ ଐଶ୍ୱରିକ ପ୍ରେମଭାବ ! ଆଜିକାଲି ବିଭିନ୍ନ ଚ୍ୟାନେଲ ମାଧ୍ୟମରେ ସିଧା ପ୍ରସାରଣ ଦ୍ୱାରା ସମଗ୍ର ବିଶ୍ୱବାସୀ ସେମାନଙ୍କ ଘରେ ବସି ସେସବୁ ଦୃଶ୍ୟ ଦେଖି ଉପଭୋଗ କରିଥାନ୍ତି ।

* * * * * * *

# ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ବେଶ




ଶ୍ରୀକ୍ଷେତ୍ରସ୍ଥିତ ବଡ଼ ଦେଉଳ ରତ୍ନସିଂହାସନରେ ବିରାଜିତ ଜଗତର ନାଥ ପ୍ରଭୁ ଶ୍ରୀଜଗନ୍ନାଥ, ବଡ଼ଭାଇ ବଳଭଦ୍ର ଓ ଭଉଣୀ ମା'ସୁଭଦ୍ରା ଦେବୀଙ୍କର ପରମ୍ପରା ଓ ସଂସ୍କୃତି ଅତୀବ ମହାନ୍ । ମାଦଳା ପାଞ୍ଜିଠାରୁ ଆରମ୍ଭ କରି ବେଦବେଦାନ୍ତ, ଧର୍ମଶାସ୍ତ୍ର ଓ ପୁରାଣକୁ ପର୍ଯ୍ୟାଲୋଚନା କଲେ ମଧ୍ୟ ଏହାର ଆଦିଅନ୍ତରେ ଉପନୀତ ହେବା ଦୁରୂହ ବ୍ୟାପାର । ଏ ବିଶ୍ୱ ପ୍ରସିଦ୍ଧ ସଂସ୍କୃତିର ସ୍ରଷ୍ଟା ଅନ୍ୟ କେହି ନୁହଁନ୍ତି, କେବଳ ସ୍ୱୟଂ ପରଂବ୍ରହ୍ମ ଶ୍ରୀବିଷ୍ଣୁ ଅଟନ୍ତି । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ପ୍ରତିବାଦକ ଗ୍ରନ୍ଥରେ ବର୍ଣ୍ଣିତ ସତ୍ୟଯୁଗରେ ସୂର୍ଯ୍ୟବଂଶ ତଥା ପରମ ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନ ରାଜା ସହସ୍ର ସହସ୍ର ବର୍ଷଧରି ତପସ୍ୟା ବଳରେ ନାରଦ ମହାଋଷିଙ୍କ ସାହାଯ୍ୟରେ ଏହି ପୀଠରେ ତିନି ମୂର୍ତ୍ତିଙ୍କୁ ପ୍ରତିଷ୍ଠା କରାଇଥିଲେ । ଏହି ପୀଠର ଦାରୁବ୍ରହ୍ମ ବିଗ୍ରହଙ୍କର ପୂଜା ପଦ୍ଧତି, ରୀତିନୀତି, ଭୋଗସାମଗ୍ରୀ, ପର୍ବପର୍ବାଣି ଯେପରି ସର୍ବଧର୍ମ ସମନ୍ୱୟ ରକ୍ଷାକରି ବିଶ୍ୱପ୍ରସିଦ୍ଧି ଲାଭ କରିପାରିଛି ସେପରି ଏହାର ବେଶଭୂଷା ଭାବରୂପକ ରଜ୍ଜୁରେ ଭକ୍ତମାନଙ୍କୁ ବାନ୍ଧି ରଖିଛି ।

ପରଂବ୍ରହ୍ମ ଭଗବନ୍ ଶ୍ରୀବିଷ୍ଣୁଙ୍କର ସହସ୍ର ନାମ ମଧ୍ୟରୁ ଶ୍ରୀପୁରୁଷୋତ୍ତମ ନାମ ଅନ୍ୟତମ । ବିଭିନ୍ନ ଯୁଗରେ ଶ୍ରୀବିଷ୍ଣୁ ଅଶେଷ ରୂପରେ ଧରାପୃଷ୍ଠରେ ଅବତରଣ କରି ଦୁଷ୍ଟଦଳନ ଓ ସନ୍ଥପାଳନ କରିବାର କିମ୍ବଦନ୍ତୀମାନ ଆଧ୍ୟାତ୍ମିକ ଇତିହାସ ପୃଷ୍ଠାମଣ୍ଡନ କରିଅଛି । ଭଗବାନ

ଶ୍ରୀପୁରୁଷୋତ୍ତମଙ୍କଠାରୁ ଅବତାର ସୃଷ୍ଟି । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଏହ ସର୍ବଧର୍ମ ସମନ୍ୱୟ ପବିତ୍ର କ୍ଷେତ୍ରରେ ଭଗବନାଙ୍କର ସମସ୍ତ ଅବତାର ପ୍ରକାଶ ପାଇଛି । ତେଣୁ ଏହି ପୀଠ ଭଗବାନ ଶ୍ରୀବିଷ୍ଣୁଙ୍କର ନିତ୍ୟଲୀଳା ସ୍ଥଳୀ ରୂପେ ବିବେଚିତ । ସାଧାରଣତଃ ଶ୍ରୀକ୍ଷେତ୍ରଧାମରେ ଶ୍ରୀଠାକୁରମାନଙ୍କର ପାଳିତ ହେଉଥିବା ବେଶମାନ, ଅତୀତରେ ଭଗବାନ ଶ୍ରୀବିଷ୍ଣୁଙ୍କ ଅବତାରର ସ୍ମରଣୀୟ ଘଟଣାବଳୀରୁ ଆଧାରିତ । ତେଣୁ ବର୍ଷକ ୧୨ମାସରେ ତିଥି ଅନୁସାରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ବେଶରେ ଭୂଷିତ କରାଯାଇଥିବାର ବ୍ୟବସ୍ଥା ଆବହମାନ କାଳରୁ ପ୍ରଚଳିତ । ଏହି ସବୁ ବେଶକୁ ଦର୍ଶନ କରି ଶତଜନ୍ମର ପାପରୁ ମୁକ୍ତିଲାଭ କରି ଧର୍ମ ଅର୍ଜନ କରିବା ଉଦ୍ଦେଶ୍ୟରେ ଲକ୍ଷ ଲକ୍ଷ ପରମଭକ୍ତ ଦେଶ ବିଦେଶରୁ ଛୁଟି ଆସିଥାନ୍ତି ଶ୍ରୀକ୍ଷେତ୍ରର ବଡ଼ ଦେଉଳକୁ ।

ଭଗବାନ ପ୍ରଭୁ ଶ୍ରୀବିଷ୍ଣୁଙ୍କର ବିଭିନ୍ନ ଅବତାରର ଲୀଳାକୁ ଅବଲମ୍ବନ କରି ପ୍ରଭୁ ଶ୍ରୀଜଗନ୍ନାଥଙ୍କର ବେଶମାନ ହୋଇଥାଏ । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ସାଧାରଣତଃ ଦୁଇପ୍ରକାର ବେଶ ହୋଇଥାଏ । ଯଥା ଦୈନନ୍ଦିନ ଓ ବାର୍ଷିକ ବେଶ । ଦୈନନ୍ଦିନ ବେଶ ବା ଶୃଙ୍ଗାର ପ୍ରତିଦିନ ତିନିଥର ହୋଇଥାଏ । ପ୍ରଥମେ ବସ୍ତ୍ର ଶୃଙ୍ଗାର ବା ଅବକାଶ ବେଶ, ଦ୍ୱିତୀୟରେ ଭୂଷଣ ଶୃଙ୍ଗାର ବା ଧୂପ ବେଶ ଓ ତୃତୀୟରେ (ଶୟନକାଳ) ପୁଷ୍ପ ଶୃଙ୍ଗାର ବା ବଡ଼ସିଙ୍ଗାର ବେଶ କରାଯାଇଥାଏ । ବସ୍ତ୍ର ଶୃଙ୍ଗାର ବା ଅବକାଶ ବେଶ ପ୍ରତ୍ୟହ ଶ୍ରୀଜୀଉଙ୍କର ସକାଳ ସ୍ନାନଠାରୁ ଆରମ୍ଭ ହୋଇ ମଧ୍ୟାହ୍ନ ଧୂପ ପର୍ଯ୍ୟନ୍ତ ଲାଗି ହୋଇଥାଏ । ଦ୍ୱିତୀୟଟି ମଧ୍ୟାହ୍ନ ଧୂପ ବା ଛତ୍ର ଭୋଗପରେ ସନ୍ଧ୍ୟା ପର୍ଯ୍ୟନ୍ତ ଓ ତୃତୀୟଟି ସନ୍ଧ୍ୟ ଧୂପଠାରୁ ତା'ପରଦିନ ସକାଳ ପର୍ଯ୍ୟନ୍ତ ଲାଗି ହୋଇଥାଏ । ଏହି ଦୈନିକ ବେଶକୁ ସମ୍ପାଦନ କରିବାପାଇଁ ଥରକୁ ୨୪ଜଣ ହିସାବରେ ୩ଥର ପାଇଁ ୭୨ଜଣ ସେବାୟତ (ପୁଷ୍ପାଳକ) ନିଯୋଗ ହୋଇଥାନ୍ତି । ମାତ୍ର ବେଶପାଇଁ ସେମାନଙ୍କ ମଧ୍ୟରୁ ଥରକୁ ୩ଜଣ କରି ମୋଟ ୯ଜଣ ସେବାୟତ ନିଯୋଗ ହୋଇଥାନ୍ତି । ବେଶ ସମୟରେ ଯେଉଁସବୁ ଫୁଲମାଳ, ତୁଳସୀ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ବ୍ୟବହାର ହୋଇଥାଏ, ସେଗୁଡ଼ିକ ବିଭିନ୍ନ ମଠ ଯୋଗାଇଥାଏ । ବେଶ ସମୟରେ ଯେଉଁସବୁ ଫୁଲମାଳ ଅର୍ପଣ ହୋଇଥାଏ, ସେଥିରେ ଆଦୌ ଗଣ୍ଠିମାନ ପଡ଼ିନଥାଏ ।

ମହାପ୍ରଭୁମାନଙ୍କର ବାର୍ଷିକ ବେଶ ୨୪ଟି ପ୍ରକାରର ହୋଇଥିଲେ ମଧ୍ୟ ସାଧାରଣତଃ ସର୍ବମୋଟ୍ ୩୨ଟି ପ୍ରକାରର ବେଶ ଉତ୍ସବ ପାଳନ ହୋଇଥାଏ । ଏତଦ୍‌ବ୍ୟତୀତ "ରଘୁନାଥ ବେଶ" ପ୍ରତିବର୍ଷ ପାଳନ ହୋଇନଥାଏ । ଯେଉଁବର୍ଷ ବୈଶାଖ ମାସରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କର ଅଭିଷେକ ଉତ୍ସବ ପଡ଼ିଥାଏ, ସେହି ତିଥିରେ ଏହି ବେଶ ପାଳନର ବିଧି ଅଛି ।

**ଚନ୍ଦନଲାଗି ବେଶ**

ଏହି ବେଶ ବୈଶାଖ ମାସ ଅକ୍ଷୟ ତୃତୀୟାଠାରୁ ଆରମ୍ଭ ହୋଇ ଜ୍ୟେଷ୍ଠମାସ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ମହାଆଡ଼ମ୍ବରପୂର୍ଣ୍ଣ ଓ ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ବିଧିବିଧାନ ସହିତ ପାଳନ

ହୋଇଥାଏ । ଏହାକୁ କେହି କେହି ଚନ୍ଦନଯାତ୍ରା ଉତ୍ସବ କହିଥାନ୍ତି । ସୁସଜ୍ଜିତ ପାଲିଙ୍କିରେ ଆଧ୍ୟାତ୍ମିକ ବାଦ୍ୟଯନ୍ତ୍ର ତରଙ୍ଗରେ ଝପ ଖେଳିବା ଓ ଚନ୍ଦନ ଲାଗି ହେବାପାଇଁ ଶ୍ରୀଜୀଉମାନେ ନରେନ୍ଦ୍ର ପୁଷ୍କରିଣୀକୁ ଯାତ୍ରା କରିଥାନ୍ତି । ସେଠାରେ ସ୍ନାନ କରାଯାଇ ବିଭିନ୍ନ ସ୍ୱର୍ଣ୍ଣ ଅଳଙ୍କାର ଲାଗି ହୋଇଥାଏ । ସେବାୟତମାନେ ଠାକୁରଙ୍କୁ ଦୁଇଥର ସୁସଜ୍ଜିତ ନୌକାରେ ବସାଇ ନୌବିହାର (ଝପ) କରାଇ ଥାଆନ୍ତି । ତତ୍‌ପରେ ବନ୍ଦାପନା ଓ ଆଲଟ ଚାମର ହୋଇ ଠାକୁରଙ୍କୁ ଚନ୍ଦନଲାଗି ବେଶ କରାଯାଇଥାଏ । ଏହି ଦୃଶ୍ୟ ଉପଭୋଗ କରି ଧର୍ମଅର୍ଜନ କରିବାପାଇଁ ଲକ୍ଷ ଲକ୍ଷ ଭକ୍ତ ସମବେତ ହୋଇଥାନ୍ତି । ଏହି ଉତ୍ସବ ଓଡ଼ିଶାର ବିଭିନ୍ନ ଗ୍ରାମଗୁଡ଼ିକରେ ମଧ୍ୟ ପାଳନ ହେଉଅଛି ।

### ଗଜାନନ ବେଶ

ଏହି ବେଶର ପ୍ରବର୍ତ୍ତକ ମହାରାଷ୍ଟ୍ରର ସନ୍ଥ ଗଣପତି ଭଟ୍ଟ ଅଟନ୍ତି । ଏହି ବେଶ ପ୍ରତ୍ୟେକ ବର୍ଷ ଜ୍ୟେଷ୍ଠମାସ ପୂର୍ଣ୍ଣମୀତିଥିରେ ହୋଇଥାଏ । କେହି କେହି ଏହି ତିଥିକୁ ସ୍ନାନପୂର୍ଣ୍ଣମୀ ଉତ୍ସବ କହିଥାନ୍ତି । ସ୍ନାନ ମଣ୍ଡପରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଗଜାନନ ବେଶ ଧାରଣ କରି ଭକ୍ତଙ୍କୁ ଦର୍ଶନ ଦେଇଥାନ୍ତି ।

### ରୁକ୍ମିଣୀ ହରଣ ବେଶ

ଜ୍ୟେଷ୍ଠମାସ ଶୁକ୍ଳ ଏକାଦଶୀ ତିଥିରେ ଭଗବାନ ଶ୍ରୀବିଷ୍ଣୁ (ଶ୍ରୀକୃଷ୍ଣ) ମା'ରୁକ୍ମିଣୀ ଦେବୀଙ୍କୁ ବିବାହ କରିଥିଲେ । ସେହି କିମ୍ବଦନ୍ତୀକୁ ସ୍ମରଣ କରିବାପାଇଁ ପ୍ରତିବର୍ଷ ସେହି ତିଥିରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ରୁକ୍ମିଣୀହରଣ ବେଶରେ ଭୂଷିତ କରାଯାଇ ପୂଜା କରାଯାଏ ।

### ନବଯୌବନ ବେଶ

ନବଯୌବନ ବେଶ- ସ୍ନାନ ପୂର୍ଣ୍ଣମୀ ପରେ ପରେ ଶ୍ରୀମହାପ୍ରଭୁମାନେ ଦୀର୍ଘ ୧୫ଦିନ ଅସୁସ୍ଥ ହୁଅନ୍ତି । ଏହି ୧୫ଦିନ ମହାପ୍ରଭୁ ଅଣସର ଘରେ ଶୟନ ଅବସ୍ଥାରେ ରହିଥାନ୍ତି । ବିଜୟା ଅମାବାସ୍ୟାରେ ସୁସ୍ଥ ହୋଇ ନବଯୌବନ ଲାଭ କରି ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ତେଣୁ ଏହାକୁ ନବଯୌବନ ବେଶ କୁହାଯାଏ ।

### ସୁନା ବେଶ

ବର୍ଷକ ମଧ୍ୟରେ ମହାପ୍ରଭୁ ୫ଥର ସୁନାବେଶ ହୋଇଥାନ୍ତି । ଏହିବେଶଗୁଡ଼ିକ ଆଷାଢ଼ ଶୁକ୍ଳ ଏକାଦଶୀ, ଆଶ୍ୱିନ ଶୁକ୍ଳ ଏକାଦଶୀ, କାର୍ତ୍ତିକ ପୂର୍ଣ୍ଣମୀ, ପୌଷ ପୂର୍ଣ୍ଣିମା ଓ ଦୋଳ ପୂର୍ଣ୍ଣିମା ତିଥିରେ ପାଳନ କରାଯାଇଥାଏ । ଏହି ବେଶ ଚାରିଥର ବଡ଼ ଦେଉଳର ରତ୍ନସିଂହାସନରେ ପାଳିତ ହେଉଥିବାବେଳେ ଗୋଟିଏ ଥର ସିଂହଦ୍ୱାର ସମ୍ମୁଖରେ ବାହୁଡ଼ା ରଥ ଉପରେ ପବିତ୍ର ବଡ଼ଦାଣ୍ଡରେ ଖୋଲା ଆକାଶତଳେ ପାଳନ ହୋଇଥାଏ । ଏହି ଦିବସଟି ମହାନ୍ ରଥଯାତ୍ରାର

ଅନ୍ତିମ ଦିବସ ଆଷାଢ଼ମାସର ଶୁକ୍ଳ ଏକାଦଶୀ ତିଥିରେ ପାଳିତ ହୋଇଥାଏ । ଏହି ବେଶକୁ ରାଜରାଜେଶ୍ୱର ବେଶ କୁହାଯାଉଥିବା ବେଳେ, ଅନ୍ୟ ୪ଟି ବେଶକୁ ରାଜାବେଶ କୁହାଯାଇଥାଏ । ସବୁ ବେଶଠାରୁ ଏହି ବେଶ ସ୍ୱତନ୍ତ୍ର, ମହତ୍ତ୍ୱ ବହନ କରିଅଛି । କାରଣ ଠାକୁରମାନଙ୍କୁ ଏହି ବେଶ ମାଧ୍ୟମରେ ଜାତି, ଧର୍ମ, ବର୍ଣ୍ଣ, କଳା, ଗୋରା, ଧନି, ଦରିଦ୍ର, ସମ୍ପ୍ରଦାୟର ପରମଭକ୍ତ ସମାନ ଭାବରେ ଦର୍ଶନ କରିପାରନ୍ତି । ମହାପ୍ରଭୁଙ୍କ ସକଳ ବେଶରେ ମାଧୁର୍ଯ୍ୟ ଲାବଣ୍ୟ ପ୍ରକଟିତ ହେଉଥିବା ବେଳେ କେବଳ ଏହି ସୁନାବେଶରେ ଐଶ୍ୱର୍ଯ୍ୟ ପ୍ରାବଲ୍ୟ ପରିସ୍ଫୁଟ ହୋଇଥାଏ । କେହି କେହି ଏହି ବେଶକୁ ବଡ଼ ତଡ଼ାଉ ବେଶ କହିଥାନ୍ତି । ୧୩୮ଟି ପ୍ରକାରର ରତ୍ନ ଅଳଙ୍କାରରେ ଖଚିତ ହୋଇ ମହାପ୍ରଭୁ ସନ୍ଧ୍ୟାଠାରୁ ସମଗ୍ର ରାତିଟି ଅନିଦ୍ରା ହୋଇ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ଏହି କାର୍ଯ୍ୟ ମଧ୍ୟାହ୍ନ ଧୂପ ପରେ ସେବାୟତମାନଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ । ପାଳିଆ ମେକାପ, ଖୁଣ୍ଟିଆସେବକ, ପାଳିଆ ପୁଷ୍ପାଳକ, ଦଇତାପତି ଖୁଣ୍ଟିଆ ମେକାପ, ତଲୁଛ, ଭିତରଚ୍ଛୁ ସେବାୟତମାନେ ମାଜିଷ୍ଟ୍ରେଟ୍, ପୋଲିସ୍ ଫୋର୍ସ ଓ ମନ୍ଦିର ଅଧିକାରୀଙ୍କ ସମ୍ମୁଖରେ ତିନି ଠାକୁରଙ୍କୁ ସୁନାବେଶରେ ସଜ୍ଜିତ କରାଇଥାନ୍ତି ।

### ଚିତାଲାଗି ବେଶ

ଶ୍ରାବଣ ମାସ ଅମାବାସ୍ୟା ତିଥିରେ ପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା' ସୁଭଦ୍ରା ଚିତା ପିନ୍ଧନ୍ତି । ତେଣୁ ଏହାକୁ ଚିତାଲାଗି ବେଶ କୁହାଯାଏ ।

### ବନଭୋଜି ବେଶ

ଏହି ବେଶର ପ୍ରବର୍ତ୍ତକ ଶ୍ରୀଚୈତନ୍ୟ ଅଟନ୍ତି । ଭାଦ୍ରବ ମାସ କୃଷ୍ଣପକ୍ଷ ଦଶମୀ ତିଥିରେ ଏହି ବେଶ ହୋଇଥାଏ । ଏହା ଶ୍ରୀକୃଷ୍ଣଙ୍କର ଲୀଳାର ସ୍ମାରକୀରୂପେ ପାଳନ ହୋଇଥାଏ । ମଧ୍ୟାହ୍ନ ଧୂପ ପରେ, ଦକ୍ଷିଣ ଘରୁ ଶ୍ରୀରାମକୃଷ୍ଣ ଦୁଇ ବିଗ୍ରହଙ୍କୁ ଅଣାଯାଇ ଆଜ୍ଞାମାଳ ଲାଗି ହୋଇଥାଏ । ଶ୍ରୀରାମକୃଷ୍ଣଙ୍କୁ ନିଆଯିବା ପରେ ସନ୍ଧ୍ୟା ସମୟରେ ମହାପ୍ରଭୁ ଶ୍ରୀଜଗନ୍ନାଥ ବନଭୋଜି ବେଶରେ ଭୂଷିତ ହୋଇ ଲକ୍ଷ ଲକ୍ଷ ଭକ୍ତଙ୍କୁ ଦର୍ଶନ ଦେଇଥାଆନ୍ତି । ଏହି ବେଶରେ ଠାକୁରମାନେ ସ୍ୱହସ୍ତରେ ଶିକାରେ ରୂପା ପିଙ୍ଗଳର ଶର ଧରନ୍ତି ଓ ଅନ୍ୟ ହସ୍ତରେ ନଉଡ଼ି ଧରନ୍ତି । ଠାକୁରମାନଙ୍କୁ ପେଡ଼ାମାଳି ଲାଗି ହୋଇଥାଏ ।

### କାଳୀୟଦଳନ ବେଶ

ଏହି ବେଶର ପ୍ରବର୍ତ୍ତକ ଗଜପତି ମହାରାଜା ପ୍ରତାପ ରୁଦ୍ର ଦେବ ଅଟନ୍ତି । ଏହି ବେଶ ଭାଦ୍ରବମାସ କୃଷ୍ଣପକ୍ଷ ଏକାଦଶୀ ତିଥିରେ ହୁଏ । ଭଗବାନ ଶ୍ରୀକୃଷ୍ଣ ଯମୁନା ନଦୀ କୂଳରେ କାଳୀୟ ସର୍ପକୁ ଦଳନ କରିଥିବାରୁ ତାହାରି ସ୍ମାରକୀରୂପେ ଏହି ବେଶ ହୋଇଥାନ୍ତି । ଏହିଦିନ

ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା ଶ୍ରୀ ମଦନମୋହନ ଓ ଶ୍ରୀରାମକୃଷ୍ଣ ମାର୍କଣ୍ଡ ପୋଖରୀକୁ ଯାଇ ସେଠାରେ କାଳୀୟ ଦଳନ କରିଥାନ୍ତି ।

**ପ୍ରଲମ୍ବାସୁର ବେଶ**

ଏହି ବେଶର ପ୍ରବର୍ତ୍ତକ ବଳରାମ ଦାସ । ଏହା ଭାଦ୍ରବ ମାସ କୃଷ୍ଣପକ୍ଷ ଦ୍ୱାଦଶୀ ତିଥିରେ ପଡ଼ିଥାଏ । ଦ୍ୱାପର ଯୁଗରେ ଭଗବାନ ପ୍ରଭୁ ଶ୍ରୀକୃଷ୍ଣ ଏହି ଦିନ ପ୍ରଲମ୍ବାସୁର ଅସୁରକୁ ବଧ କରିଥିଲେ । ଏହି ସ୍ମୃତିକୁ ବହନ କରି ସେହି ତିଥିରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ପ୍ରଲମ୍ବାସୁର ବଧର ବେଶ କରାଯାଇ ପୂଜାଅର୍ଚ୍ଚନାର ବିଧିବିଧାନ ଅଛି ।

**ଶ୍ରୀକୃଷ୍ଣବଳରାମ ବେଶ**

ଏହି ବେଶର ପ୍ରବର୍ତ୍ତକ ଶ୍ରୀବଲ୍ଲଭାଚାର୍ଯ୍ୟ । ଏହା ଭାଦ୍ରବମାସ କୃଷ୍ଣପକ୍ଷ ତ୍ରୟୋଦଶୀ ତିଥିରେ ହୋଇଥାଏ । ସେହିଦିନ ଏକ ଶାନ୍ତ ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ଲକ୍ଷ ଲକ୍ଷ ଭକ୍ତଙ୍କ ସମାବେଶରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଏହି ବେଶରେ ଭୂଷଣ କରାଯାଇଥାଏ ।

**ବାମନ ବେଶ**

ଏହି ବେଶର ପ୍ରବର୍ତ୍ତକ କଳିଙ୍ଗ ବ୍ରାହ୍ମଣ ସମାଜ ଅଟନ୍ତି । ଭଗବାନ ଶ୍ରୀବିଷ୍ଣୁ ବାମନ ରୂପଧରି ବଳିକୁ ପାତାଳପୁରୀକୁ ଚାପିଥିଲେ । ଏଥିପାଇଁ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଭାଦ୍ରବମାସ ଶୁକ୍ଳ ଦ୍ୱାଦଶୀ ତିଥିରେ ବାମନ ବେଶରେ ଭୂଷିତ କରାଯାଇଥାଏ ।

**ରାଜବେଶ**

ଏହି ବେଶ ଆଶ୍ୱିନ ମାସ ଶୁକ୍ଳପକ୍ଷ ଦଶମୀ ତିଥିରେ ହୋଇଥାଏ । ମହାପ୍ରଭୁଙ୍କର ଅବକାଶ ଓ ଚନ୍ଦନ ଲାଗି ସରିବାପରେ ନୂଆ ଲୁଗା ପରିଧାନ ପୂର୍ବକ ବଡ଼ତଡ଼ାଉ (୩୨ମୂର୍ତ୍ତି)ଲାଗିହୋଇ ରାଜବେଶ ହୋଇଥାଏ ।

**ରାଧାଦାମୋଦର ବେଶ**

ଏହି ବେଶର ପ୍ରବର୍ତ୍ତକ ଗୌଡ଼ମାଧ୍ୱ ବୈଷ୍ଣବ ଗୋଷ୍ଠୀ ଅଟନ୍ତି । ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକମାସ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ଶ୍ରୀରାଧାଦାମୋଦର ବା ରାଇ ଦାମୋଦର ବେଶ ହୁଅନ୍ତି ।

**ହରିହରବେଶ**

ରାଧା ଦାମୋଦର ବେଶ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ମାସ ଶୁକ୍ଳ ଦଶମୀ ମଧ୍ୟରେ ଯେଉଁଦିନ ସୋମବାର ପଡ଼ିଥାଏ, ସେହିଦିନଗୁଡ଼ିକ ବଳଭଦ୍ର ହରିହର ବେଶ ହୋଇଥାନ୍ତି । ଅର୍ଦ୍ଧେକ କଳା ଓ ଅର୍ଦ୍ଧେକ ଧଳା ବେଶ ଧାରଣ କରିଥାନ୍ତି ।

**ଶ୍ରୀଲକ୍ଷ୍ମୀନାରାୟଣ ବେଶ**

ଏହି ବେଶ କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ ତିଥିରେ ହୋଇଥାଏ । ଏହାକୁ କେହି କେହି ଠିଆକିଆ ବେଶ ବୋଲି କହିଥାନ୍ତି ।

**ବାଙ୍କଚୂଡ଼ା ବେଶ**

ଏହି ବେଶ କାର୍ତ୍ତିକ ମାସ ଶୁକ୍ଳ ବାମନ ଦ୍ୱାଦଶୀ ଦିନ ଶ୍ରୀଜୀଉଙ୍କୁ ଲାଗି ହୋଇଥାଏ । କେହି କେହି ଏହି ବେଶକୁ ବାମନବେଶ ବୋଲି କହିଥାନ୍ତି ।

**ତ୍ରିବିକ୍ରମ ବେଶ**

କେହି କେହି ଏହି ବେଶକୁ ଆଡ଼କିଆ ବେଶ ବୋଲି କହିଥାନ୍ତି । ଏହି ବେଶ କାର୍ତ୍ତିକମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥିରେ ପାଳିତ ହୋଇଥାଏ ।

**ଶ୍ରୀଲକ୍ଷ୍ମୀନୃସିଂହ ବେଶ**

ଏହି ବେଶକୁ କେହି କେହି ଡାଳିକିଆ ବେଶ ବୋଲି କହିଥାନ୍ତି । ଏହି ବେଶ କାର୍ତ୍ତିକ ମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ହୋଇଥାଏ ।

**ରାଜ ରାଜେଶ୍ୱର ବେଶ**

କାର୍ତ୍ତିକମାସର ପୂର୍ଣ୍ଣିମା ତିଥିରେ ଏହି ବେଶ ହୋଇଥାଏ । ଏହି ବେଶରେ ସୁନାବେଶ ପରି ଶ୍ରୀଜୀଉଙ୍କୁ ସ୍ୱର୍ଣ୍ଣ ଅଳଙ୍କାର ଲାଗି ହୋଇଥାଏ ।

**ନାଗାର୍ଜୁନ ବେଶ**

ଏହି ବେଶର ପ୍ରବର୍ତ୍ତକ ହେଉଛନ୍ତି ପ୍ରଭୁ ସ୍ୱୟଂ ଶ୍ରୀପର୍ଶୁରାମ । ତେଣୁ କେହି କେହି ଏହି ବେଶକୁ ଶ୍ରୀପର୍ଶୁରାମ ବେଶ ବୋଲି କହିଥାନ୍ତି । ଏହି ବେଶ ପ୍ରତିବର୍ଷ ପଡ଼ିନଥାଏ । ଯେଉଁ ବର୍ଷ କାର୍ତ୍ତିକ ମାସର ପଞ୍ଚୁକ ୫ଦିନ ପରିବର୍ତ୍ତେ ୬ଦିନ ପଡ଼ିଥାଏ ସେହି ଷଷ୍ଠ ଦିନରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନାଗାର୍ଜୁନ ବେଶ ଲାଗି ହୋଇଥାଏ । ତେଣୁ ଅତୀତରେ ୧୯୯୪ ମସିହା ନଭେମ୍ବର ମାସ ୨୬ ତାରିଖରେ ଏହା ପଡ଼ିଥିଲା । ଏହି ବେଶ ସମ୍ପର୍କରେ ଏକ ପୌରାଣିକ କିମ୍ବଦନ୍ତୀ ଅଛି । ତାହା ହେଲା ମଧ୍ୟମ ପାଣ୍ଡବ ଧନୁର୍ଦ୍ଧାରୀ ଅର୍ଜୁନଙ୍କର ଅନ୍ୟତମ ପତ୍ନୀ ନାଗାବଳୀଙ୍କ ଗର୍ଭରୁ ନାଗାର୍ଜୁନ ନାମକ ଏକ ପୁତ୍ର ଜନ୍ମ ହୋଇଥିଲେ । ସେ ଅସୁରମାନଙ୍କୁ ନିଧନ କରିବାପାଇଁ ନାଗା ବେଶରେ ସମ୍ମୁଖ ଯୁଦ୍ଧ କରିଥିଲେ । ଏହି ବେଶ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣହୋଇ ଏକ ଆଧ୍ୟାତ୍ମିକ ଇତିହାସ ସୃଷ୍ଟି କରିଥିଲେ ।

**ଶ୍ରାଦ୍ଧବେଶ**

ଏହି ବେଶ ମାର୍ଗଶୀର ମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ, ଅମାବାସ୍ୟା ଓ ପ୍ରତିପଦା ତିଥିରେ

ତିନିଦିନ ଧରି ହୋଇଥାଏ । ପ୍ରଭୁ ଶ୍ରୀଜଗନ୍ନାଥ ଶ୍ରାଦ୍ଧବେଶ ହୋଇ ପିତା ନନ୍ଦ, ପିତା ବାସୁଦେବ ଓ ପିତା ଦଶରଥଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଓ ଦୀପ ଦାନ କରିଥାନ୍ତି ।

### ପଦ୍ମ ବେଶ

ଏହି ବେଶର ପ୍ରବର୍ତ୍ତକ ମହାତ୍ମା ସନ୍ଥ ରଘୁବୀରଦାସ । ଏହା ମାଘମାସ ଶୁକ୍ଳପକ୍ଷ ତୃତୀୟା ତିଥିରେ ଠାକୁରଙ୍କର ଚନ୍ଦନ ଲାଗି ପରେ ହୋଇଥାଏ । ତା'ପରେ ପହଡ଼ ପଡ଼ିଥାଏ । ସୋଲରେ ନିର୍ମିତ ପଦ୍ମଫୁଲରେ ଶ୍ରୀଠାକୁରଙ୍କୁ ବେଶ ହୋଇଥାଏ । ଏହି ପଦ୍ମଫୁଲକୁ ବଡ଼ଛତା ମଠ ଯୋଗାଇଥାଆନ୍ତି ।

### ଗଜଉଦ୍ଧାରଣ ବେଶ

ଏହି ବେଶର ପ୍ରବର୍ତ୍ତକ ଭାଷ୍ୟକାର ଶ୍ରୀରାମାନୁଜାଚାର୍ଯ୍ୟ । ମାଘମାସ ପୂର୍ଣ୍ଣିମା ତିଥିରେ ଏହି ବେଶ ଶ୍ରୀମହାପ୍ରଭୁମାନଙ୍କର ପାଳିତ ହୋଇଥାଏ । ସେବାୟତମାନେ ସନ୍ଧ୍ୟା ସମୟରେ ରତ୍ନସିଂହାସନ ଉପରେ ତିନି ଠାକୁରଙ୍କୁ ବିଧିବିଧାନ ସହ ବେଶ କରିଥାନ୍ତି । ସ୍ୱର୍ଣ୍ଣ ଅଳଙ୍କାର ସହ କନା, ଜରି, ସୋଲ, ଜମ୍ବୁରା ଓ କଇଁଥ ଅଠାରେ ବେଶ କରି ସିଂହାସନ ପାଖକୁ ନେଇଥାନ୍ତି । ଏହି ବେଶରେ କାଳିଆ ଠାକୁର ଚାରିଟି ହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରି ବାହନ ଗରୁଡ଼ଙ୍କ ଉପରେ ମା'ମହାଲକ୍ଷ୍ମୀଙ୍କ ସହିତ ବିରାଜମାନ ହୋଇଥାନ୍ତି । ଠିକ୍ ସେହିପରି ବଡ଼ଭାଇ ଶ୍ରୀବଳଭଦ୍ରଙ୍କ ହସ୍ତରେ ଶଙ୍ଖ, ଚକ୍ର, ମୂଷଳ, ହଳ ଧାରଣ କରି ହଳଧର ବେଶରେ ବିରାଜମାନ କରିଥାନ୍ତି । ସମ୍ମୁଖରେ ଦୁଇଟି ହସ୍ତୀ ଶୁଣ୍ଢରେ ପଦ୍ମକଢ଼ି ଧରି ଠାକୁରଙ୍କ ଉଦ୍ଦେଶ୍ୟରେ ଭକ୍ତିଅର୍ଘ୍ୟ ଢ଼ାଳିବା ଠାଣିରେ ଦଣ୍ଡାୟମାନ ହୁଅନ୍ତି । ଆଉ ମଧ୍ୟ ଏକ କୁମ୍ଭୀର ଗଜରାଜକୁ ଆକ୍ରମଣ ପୂର୍ବକ ଉପବେଶନ ହୋଇଥାନ୍ତି । ଏହି ଅପୂର୍ବ ଦୃଶ୍ୟକୁ ଦର୍ଶନ କରିବା ପାଇଁ ଲକ୍ଷ ଲକ୍ଷ ଭକ୍ତଙ୍କର ସମବେତ ମନ୍ଦିରର ପରିବେଶକୁ ଚଳଚଞ୍ଚଳ କରି ପକାଇବାର ଦୃଶ୍ୟର ପଟ୍ଟାନ୍ତର ନାହିଁ । ଏହି ବେଶକୁ ଭିତରଚ୍ଛୁ, ପୁଷ୍ପାଳକ, ଖୁଣ୍ଟିଆ ଓ ମେକାପ ସମ୍ପ୍ରଦାୟର ସେବକମାନେ ସମ୍ପାଦନ କରିଥାନ୍ତି ।

### ଚାଚେରୀ ବେଶ

ଫଗୁ ଦଶମୀରେ ମହାପ୍ରଭୁଙ୍କର ଚାଚେରୀ ଭୋଗ ଲାଗି ହୋଇ ଥାଏ । ଏହି ବେଶରେ ତିନି ଠାକୁରଙ୍କୁ ଲାଲ୍ କପଡ଼ା ପରିଧାନ କରାଯାଇଥାଏ । ମଧ୍ୟାହ୍ନ ଭୋଗପରେ ଶ୍ରୀଠାକୁରଙ୍କୁ ନୂଆ ଲୁଗା ଲାଗି ହୋଇଥାଏ । ମା'ମହାଲକ୍ଷ୍ମୀ ଓ ମା'ମହାସରସ୍ୱତୀ ଦକ୍ଷିଣ ଘରକୁ ବିଜେ କରିଥାନ୍ତି । ପରେ ପ୍ରଭୁ ଶ୍ରୀଜଗନ୍ନାଥ ଓ ପ୍ରଭୁ ଶ୍ରୀବଳଭଦ୍ର ବିଜେ କରିଥାନ୍ତି । ତତ୍‌ପରେ ପ୍ରଭୁ ଶ୍ରୀଜଗନ୍ନାଥ ବଲ୍ଲଭକୁ ଯାତ୍ରା ହୋଇଥାଏ । ସେଠାରେ ଭୋଗ ବନ୍ଦାପନା ହୋଇ ବଟବୃକ୍ଷ ମୂଳକୁ ବାହୁଡ଼ା କରିଥାନ୍ତି । ଠାକୁରମାନଙ୍କର ପହଣ୍ଡି ଏକ ଅପୂର୍ବ ଆଧ୍ୟାତ୍ମିକ ଭାବର ବାତାବରଣ ସୃଷ୍ଟି କରିଥାଏ । ଏହା ଦୋଳ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଳନ ହୋଇଥାଏ ।

# ଶ୍ରୀଜଗନ୍ନାଥଙ୍କ ଧୂପ, ଭୋଗ ଓ ରୀତିନୀତି



ଅନନ୍ତ ବ୍ରହ୍ମାଣ୍ଡର ପତି ତଥା ଗଦା, ପଦ୍ମ, ଶଙ୍ଖ ଓ ଚକ୍ର ଧାରଣକାରୀ ସ୍ୱୟଂ ବିଷ୍ଣୁ ବିଭିନ୍ନ ଯୁଗରେ ମାନବୀୟ ରୂପରେ ଧରାପୃଷ୍ଠରେ ଅବତରଣ କରି ତାଙ୍କର ଲୀଳା, କ୍ରୀଡ଼ା ମାଧ୍ୟମରେ ଦୁଷ୍ଟ ଦଳନ ଓ ସନ୍ଥ ପାଳନ କରିବାର କିମ୍ବଦନ୍ତୀମାନ ପୁରାଣଶାସ୍ତ୍ର, ବେଦବେଦାନ୍ତ, ଉପନିଷଦ ଓ କାବ୍ୟ କବିତାରେ ଲିପିବଦ୍ଧ ହୋଇଅଛି । ଏହାର ପ୍ରମାଣ ସ୍ୱରୂପ ପବିତ୍ରଭୂମି ଭାରତରେ ଚାରୋଟି ଧାମ ବିଦ୍ୟମାନ । ସେଗୁଡ଼ିକ ହେଲା, ସତ୍ୟଯୁଗରେ ଭାରତର ଉତ୍ତରଦିଗରେ ବଦ୍ରିନାଥ, ଜ୍ୟୋତିର୍ପୀଠ(ସ୍ନାନପୀଠ) ତ୍ରେତୟାଯୁଗରେ ଭାରତର ଦକ୍ଷିଣଦିଗରେ ରାମେଶ୍ୱର (ଶୟନପୀଠ), ଦ୍ୱାପରଯୁଗରେ ପଶ୍ଚିମ ଦିଗରେ ଦ୍ୱାରକାଧାମ (ଶାରଦାପୀଠ) ବେଶଭୂଷାପୀଠ ଓ କଳିଯୁଗରେ ପୂର୍ବଦିଗରେ ଶ୍ରୀଜଗନ୍ନାଥଧାମ (ଗୋବର୍ଦ୍ଧନପୀଠ) ଭୋଜନପୀଠରୂପେ ପ୍ରତିଷ୍ଠିତ । ଏହି ଚାରିଧାମ ମହାନ ଆଧାତ୍ମିକ ଶକ୍ତିର ଗୁରୁତ୍ୱ ବହନ କରି ସୃଷ୍ଟି କରିଅଛି ଏକ ମହାନ ଧର୍ମନଦୀ । ଏହି ଧର୍ମନଦୀ ତାର ସ୍ରୋତ ରୂପକ ଧର୍ମ ରଜ୍ଜୁରେ ବାନ୍ଧି ରଖିଅଛି ଭାରତ କାହିଁକି ସମଗ୍ର ବିଶ୍ୱର ଜନସମାଜ ତଥା ଭକ୍ତ ସମାଜକୁ । ଏହି ଚାରିଧାମ ମଧ୍ୟରେ ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥ ଧାମର ମହିମା ଓ ଗୁଣଗାରିମାର ବୈଶିଷ୍ଟ୍ୟ ସ୍ୱତନ୍ତ୍ର ଅଟେ । କାରଣ ଏହି ପୀଠର ସଂସ୍କୃତି,

ପରମ୍ପରା ଓ ମେଳା ମହୋତ୍ସବ ଯେପରି ବୈଚିତ୍ରମୟ, ସେପରି ଏହି ପୀଠର ଧୂପ ଓ ଭୋଗର ରୀତିନୀତି ଅଭୂତପୂର୍ବ । ପ୍ରତିଦିନ ସକାଳୁ ରାତ୍ରି ପର୍ଯ୍ୟନ୍ତ ପ୍ରଭୁଙ୍କ ନିକଟରେ ଛେକ ଛେକ କରି ଅର୍ପଣ ହୋଇଥାଏ ୫୬ ପ୍ରକାରର ଭୋଗ ।

ଏହି ସବୁ ଧୂପ ଓ ଭୋଗ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ ହେବାର ପଦ୍ଧତି କେବେ ଓ କିପରି ପାଳିତ ହୋଇଆସୁଅଛି, ତାହାର ଠିକ୍ ବିବରଣୀ ଜଣାନଥିଲେ ମଧ୍ୟ, ଏହା ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପରିବର୍ଦ୍ଧିତ ଓ ପରିସଂସ୍କୃତ ହୋଇଥିଲା ବୋଲି ପ୍ରମାଣ ଉପଲବ୍ଧ ହୁଏ । ଶ୍ରୀଶଙ୍କରାଚାର୍ଯ୍ୟ ୬ଟି ନିଯୋଗ ପ୍ରତିଷ୍ଠା କରି ଶ୍ରୀମନ୍ଦିରର ପୂଜା ପଦ୍ଧତି ବ୍ୟାପକ ପରିବର୍ତ୍ତନ କରିଥିଲେ । ପରବର୍ତ୍ତୀ ସମୟରେ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀରେ ତତ୍‌କାଳୀନ ଗଙ୍ଗବଂଶୀୟ ରାଜା ଅନଙ୍ଗଭୀମ ଦେବଙ୍କ ଦ୍ୱାରା ଶ୍ରୀମନ୍ଦିର ପୂର୍ଣ୍ଣାଙ୍ଗରୂପେ ନିର୍ମାଣ ହେବା ସଙ୍ଗେ ସଙ୍ଗେ ଛତିଶାନିଯୋଗ ରୂପେ ବିଭକ୍ତକରି ସେମାନଙ୍କ ମଧ୍ୟରେ ଶ୍ରୀଜୀଉମାନଙ୍କର ସମସ୍ତ ପ୍ରକାର ପୂଜା ପଦ୍ଧତି କାର୍ଯ୍ୟର ଶୁଭାରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ଭୋଇ ବଂଶର ପ୍ରଥମରାଜା ରାମଚନ୍ଦ୍ର ଦେବ (୧୫୬୮-୧୬୦୦) ଖ୍ରୀଷ୍ଟାବ୍ଦ କୁଜଙ୍ଗଗଡ଼ରୁ ବ୍ରହ୍ମ ଅଣାଇ ବିଧିପୂର୍ବକ ବନଯାଗ ଓ ବିଗ୍ରହ ନିର୍ମାଣକରି ରତ୍ନସିଂହାସନରେ ବିଜେ କରାଇଥିଲେ । ତତ୍‌ପରେ ୪ମାସ ଶୁଖିଲି ଭୋଗରେ ପୂଜାର୍ଚ୍ଚନା କରିଥିଲେ । ପରେ ସେ ବିଭିନ୍ନ ପଣ୍ଡିତମାନଙ୍କ ସହ ପରାମର୍ଶକ୍ରମେ ଶଙ୍ଖୁଡ଼ି ଭୋଗର ବ୍ୟବସ୍ଥା ଆରମ୍ଭ କରିଥିଲେ । ଏହା ମଧ୍ୟରେ ବିଭିନ୍ନ ବଂଶୀୟ ରାଜା ମହାରାଜାମାନେ ଯଥା- ମୁସଲମାନ, ଆଫଗାନ, ମରାଠା ଓ ଇଂରେଜ ଶାସକ ଦେଶକୁ ଶାସନ କରିଥିଲେ କିନ୍ତୁ ଶ୍ରୀମନ୍ଦିରର ରୀତି, ନୀତି ଓ ପୂଜାପଦ୍ଧତିର କିଛି ପରିବର୍ତ୍ତନ କରିନଥିଲେ । କିନ୍ତୁ ଏହି ସମୟରେ ବିଭିନ୍ନ ଧର୍ମର ଦୁର୍ବୃତ୍ତମାନେ ଶ୍ରୀମନ୍ଦିରକୁ ଆକ୍ରମଣ କରିଥିଲେ ମଧ୍ୟ ଏହାକୁ ପରିବର୍ତ୍ତନ କରାଇବାରେ ସମର୍ଥ ହୋଇନଥିଲେ ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଧାମ ଶ୍ରୀକ୍ଷେତ୍ରରେ ରହିଥିବା ଶ୍ରୀଜୀଉମାନଙ୍କର ପୀଠ ବିଶ୍ୱର ଏକ ଅନନ୍ୟ ମହାର୍ଘ୍ୟ ଧର୍ମାନୁଷ୍ଠାନ, ଯେଉଁଠି ସର୍ବଦା ଶୁଖିଲି ଓ ରନ୍ଧା ଭୋଗ ପ୍ରସାଦ ବିପୁଳ ପରିମାଣରେ ପ୍ରସ୍ତୁତି ହୋଇ ଅଗଣିତ ଭକ୍ତଙ୍କର ଉପଯୋଗ ହୋଇପାରୁଛି । ଠାକୁରଙ୍କପାଇଁ ପ୍ରତ୍ୟହ ଷାଠିଏ ପଉଟି ଭୋଗ ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତିରେ ସୂପକାରମାନଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଶ୍ରୀମନ୍ଦିରରେ ଖଞ୍ଜା ହୋଇଥିବା ଏକଶତ ଉଣେଇଶି (୧୧୯) ପ୍ରକାରର ସେବାୟତମାନଙ୍କ ମଧ୍ୟରେ ଏମାନଙ୍କ ସଂଖ୍ୟା ସର୍ବାଧିକ । ଏମାନେ ବିଭିନ୍ନ ନାମରେ ନାମିତ ଯଥା :- ସୂପକାର, ମହାଶୁଆର, ସାମନ୍ତରାୟ, ମହାନ୍ତି, ମହାପାତ୍ର, ସୁବୁଦ୍ଧି, ପାଢ଼ି, ପଢ଼ିଆରି, ପଣ୍ଡା, ଓ ସାହୁ ଇତ୍ୟାଦି । ଏମାନଙ୍କ ମଧ୍ୟରୁ ପ୍ରାୟ ପାଞ୍ଚଶତ (୫୦୦)ସେବାୟତ ରନ୍ଧନ କାର୍ଯ୍ୟ କରିଥାନ୍ତି । ମହାପ୍ରସାଦ ରନ୍ଧନକାରୀ ସେବାୟତମାନେ ମନ୍ଦିରର ସ୍ୱତ୍ୱଲିପି ଅନୁସାରେ ସତର୍କତା ସହିତ ରନ୍ଧନ କରିଥାନ୍ତି, ଏହି ସବୁ ଭୋଗସାମଗ୍ରୀ ପ୍ରସ୍ତୁତ ହେଉଥିବା ରୋଷଶାଳାକୁ "ହିଙ୍ଗୁଳାପୀଠ" କୁହାଯାଏ ।

କେହି କେହି ଏହି ପୀଠର ରୋଷଶାଳାକୁ ପୃଥିବୀର ସର୍ବବୃହତ ପାକଶାଳା ବୋଲି କହିଥାନ୍ତି । ଶ୍ରୀଜୀଉଙ୍କୁ ଦର୍ଶନକରି ଭକ୍ତମାନେ ଯେତିକି ଧର୍ମ ଅର୍ଜନ କରିଥାନ୍ତି, ଏହି ସବୁ ଭୋଗକୁ ସେବନ କରି ସେପରି ତୃପ୍ତି ଓ ସନ୍ତୋଷ ଲାଭ କରିଥାନ୍ତି, କାରଣ ଏହି ସବୁ ଭୋଗ ପ୍ରସ୍ତୁତି କରିବାରେ ସେବାୟତମାନଙ୍କର ନିଷ୍ଠା, ତ୍ୟାଗ, ସାଧନା ଓ ଅଭିଜ୍ଞତା ଫଳରେ ଏହାର ସୁସ୍ୱାଦ, ମହକ ଓ ସନ୍ତୋଷ ଇତ୍ୟାଦି ଆଣି ଦେଇଥାଏ ଭକ୍ତମାନଙ୍କୁ । ଏହି ସବୁ ଭୋଗ ବିକ୍ରୟ କେନ୍ଦ୍ରକୁ ଆନନ୍ଦବଜାର କୁହାଯାଇଥାଏ । ଏହାକୁ ଚଣ୍ଡାଳଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ଏକତ୍ରବସି ଭୋଜନ କରିଥାନ୍ତି । ଏଥିରେ କିଛି ପାତରଅନ୍ତର ବା ଛୁଆଁଅଛୁଆଁ ଭେଦ ନଥାଏ । କଥାରେ ଅଛି କୌଣସି ଭକ୍ତ ମନ୍ଦିରକୁ ଗଲେ ସେଠାକାର ଭୋଗ ସେବନ ନକରି ଫେରନ୍ତି ନାହିଁ । ଏତଦ୍‌ବ୍ୟତୀତ ଏହି ସବୁ ଭୋଗକୁ ଘରକୁ ନେଇ ବର୍ଷବର୍ଷ ଧରି ସାଇତି ରଖିଥାନ୍ତି । ଆଉ ମଧ୍ୟ ଏହା ବିଭିନ୍ନ ପ୍ରକାରର ଧାର୍ମିକ କାର୍ଯ୍ୟ ତଥା ବିବାହ, ବ୍ରତ, ହୋମ, ଯଜ୍ଞାଦି କାର୍ଯ୍ୟରେ ବ୍ୟବହୃତ ହୋଇଥାଏ ।

ଶ୍ରୀମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଅର୍ପିତ ଭୋଗସାମଗ୍ରୀକୁ ସାଧାରଣରେ "ଛପନଭୋଗ" କୁହାଯାଏ । କିନ୍ତୁ ପ୍ରତ୍ୟହ ଏଠାରେ ଅଧିକ ପ୍ରକାରର ଭୋଗ ପ୍ରସ୍ତୁତ ହୋଇଥାଏ । ୧୯୧୦ ମସିହା ବେଳକୁ ଏଠାରେ ପ୍ରାୟ ୪୫୩ ପ୍ରକାରର ବ୍ୟଞ୍ଜନ ଭୋଗ ଲାଗୁଥିଲା । କାଳକ୍ରମେ ଏହା ହ୍ରାସ ପାଇ ୧୫୦ ପ୍ରକାରକୁ ଆସିଥିଲା ।ବର୍ତ୍ତମାନ ୫୬ ପ୍ରକାରର ଭୋଗ ମହାପ୍ରଭୁଙ୍କ ନିକଟରେ ଦିନସାରା ୫ ପ୍ରକାର ଧୂପରେ ଅର୍ପଣ ହେବାର ବ୍ୟବସ୍ଥା ଅଛି । ଏହି ପାଞ୍ଚ ପ୍ରକାର ଭୋଗର ଏକ ତାଲିକା ନିମ୍ନରେ ପ୍ରଦତ୍ତ ହୋଇଅଛି ।

(୧) **ଗୋପାଳବଲ୍ଲଭ** :- ଏହି ଧୂପ ପ୍ରତିଦିନ ସକାଳୁ ପହୁଡ଼ ଫିଟିବାପରେ ସ୍ନାନ, ହୋମ, ବେଶଲାଗି, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା ଇତ୍ୟାଦି ପରେ ପରେ ହୋଇଥାଏ । ଏହି ଗୋପାଳବଲ୍ଲଭ ପୂଜାରେ ୧-ନଡ଼ିଆପାତି, ୨-ଖୁଆଲହୁଣି, ୩-ଦହିଓଳି, ୪-ବଲ୍ଲଭ, ୫-ନଡ଼ିଆକୋରା, ୬-ଖୁଆମଣ୍ଡା, ୭-ରମ୍ଭ, ୮-ଗୁଡ଼କେରା ଇତ୍ୟାଦି । ତିନିଗୋଟି ସୁବର୍ଣ୍ଣ ଥାଳିରେ ବଢ଼ାଯାଇ ଠାକୁରଙ୍କୁ ଭୋଗ କରାଯାଏ । ଏହାକୁ ଠାକୁରଙ୍କର ପ୍ରାତଃକାଳୀନ ଜଳଖିଆ କୁହାଯାଏ ।

(୨) **ସକାଳଧୂପ** :- ଏହାକୁ ରାଜଭୋଗ ମଧ୍ୟ କୁହାଯାଇଥାଏ । ଏହା ହେଉଛି ମହାପ୍ରଭୁଙ୍କର ପ୍ରଥମ ଶଙ୍ଖୁଡ଼ି ଭୋଗ । ଏହି ଭୋଗରେ ୯-ଅଦା ପାଚିଡ଼ି, ୧୦-ମହାଦେଇ, ୧୧-ଝଡି ଖେଚୁଡ଼ି, ୧୨- ବଡ଼ିପିଠା, ୧୩-ନାଡ଼ି, ୧୪-କାକରୁଆ, ୧୫-ହଂସକେଳୀ, ୧୬-ଯେନାମଣି, ୧୭-ମାଠପୁଳି, ୧୮-ଏଣ୍ଡୁରି, ୧୯-କାନିକା, ୨୦-ଶାଗ, ୨୧-ବୁନ୍ଦିଆଖିରି ଲାଗି ହୋଇଥାଏ । ଏହି ସବୁ ଭୋଗକୁ ପୂଜାପଣ୍ଡାମାନେ ସିଂହାସନ ଉପରେ ବସି ଭୋଗ କରିଥାନ୍ତି । କିନ୍ତୁ ଓଢ଼ଣ ଷଷ୍ଠୀଠାରୁ ଶ୍ରୀପଞ୍ଚମୀ ପର୍ଯ୍ୟନ୍ତ ଠାକୁରଙ୍କର ଘୋଡ଼ଲାଗି ନୀତି ହେଉଥିବାରୁ ପୂଜାପଣ୍ଡାମାନେ ସିଂହାସନର ତଳେ ବସି ପୂଜା କରନ୍ତି । ସମସ୍ତ ଭୋଗ ସାମଗ୍ରୀକୁ ମୁରୁଜ ପଡ଼ିଥିବା ସୀମା

ମଧ୍ୟରେ  ରଖି ପୂଜା କରାଯାଇଥାଏ । ମୁରୁଜ ସୀମା ବାହାରେ ରହିଲେ ତାହା ଶଙ୍ଖୁଡ଼ି ହୋଇଯାଏ । ତେଣୁ ତାହା ମହାପ୍ରସାଦ ହୋଇପାରେ ନାହିଁ । ଏଥି ସହିତ ଘଷାଜଳ ଓ ବିଡ଼ିଆପାନ ମଧ୍ୟ ଅର୍ପଣ ହୋଇଥାଏ ।

(୩) **ମଧ୍ୟାହ୍ନଧୂପ** :- ଏହି ଧୂପରେ ମହାପ୍ରଭୁଙ୍କ ପାଖରେ ୨୨-ମାଠପୁଳି, ୨୩-ଭାତକୁଡ଼ି, ୨୪-ଓରିଆଧାଳି, ୨୫-ସୁଆର. ୨୬-ବଡ଼ା; ୨୭-ମୁଗପାଇତି, ୨୮-ମରିଚିମାଳି, ୨୯-ବଡ଼ିଖିରସା, ୩୦-ବୁନ୍ଦିଆ, ୩୧- ସାତପଟିଆ ପିଠା, ୩୨-ଶ୍ରୀକରା, ମଧୁରିଚି, ୩୩-ମାଣ୍ଡୁଅ, ୩୪-ପାଗ ଆରିସା, ୩୫-ଖଇରଚୁଳ, ୩୬-ଖିରି, ୩୭-ତ୍ରିପୁରୀ, ୩୮-ବୁନ୍ଦିଆଖିରି, ୩୯-ଛେନା ଖିରିସା, ୪୦-କାନିକା ଅର୍ପଣ ହୋଇଥାଏ । ବେଳେ ବେଳେ ଏହି ଧୂପ ପରେ ମହାପ୍ରଭୁଙ୍କର ପହୁଡ଼ ପଡ଼ିଥାଏ । ପହୁଡ଼ ବେଳେ ତିନି ବାଡ଼ରେ ବିଡ଼ିଆପାନ ଓ ଘଷାଜଳ ଲାଗି ହୁଏ । ଏହାପରେ ତଳିଛ ମହାପାତ୍ର ସେବାୟତ ସିଂହାସନ ତଳେ ରହି ତିନି ବାଡ଼ରେ କର୍ପୂରଆଳତି, ୨୧ଟି ବତୀ ଆଳତି ଓ ସଞ୍ଜକାଳି ଆଳତି ଦେଇଥାଆନ୍ତି ।

(୪) **ସନ୍ଧ୍ୟାଧୂପ** :- ଏହି ଧୂପରେ ମହାପ୍ରଭୁଙ୍କ ପାଖରେ ୪୧-ମାଠପୁଳି, ୪୨-ସୁଆରପିଠା, ୪୩-ଚକିଅମାଲୁ, ୪୪- କେଳି, ୪୫-ଖୁଦୁପିତା, ୪୬-ମଣ୍ଡା (ନାନମାନ), ୪୭-ଖୁରୁମା, ୪୮-ଆରିଶାପିଠା, ୪୯-ଥାଳିଅନ୍ନ, ଅର୍ପଣ ହୋଇଥାଏ । ଏହି ଧୂପରେ କର୍ପୂର, ୨୧ବତୀ ଓ ପିଠୋଉ ଆଳତୀ ହେଲେ ମଧ୍ୟ ସ୍ୱତନ୍ତ୍ର ଭାବରେ "ଜୟମଙ୍ଗଳ" ଆଳତୀ ହୁଏ ।

(୫) **ବଡ଼ଶୃଙ୍ଗାର ଧୂପ** :- ଏହି ଧୂପରେ ମହାପ୍ରଭୁଙ୍କ ପାଖରେ ୫୦-ପାଞ୍ଚପଟିଆ ବିରିପିଠା, ୫୧-ଗଜା, ୫୨-ମିଠା ପଖାଳ, ୫୩-ସୁଗନ୍ଧ ପଖାଳ, ୫୪-ପାରିଜାତକ, ୫୫-ଦହି ପଖାଳ, ୫୬-ଚଢ଼େଇ ନଦା, ପରଖ ଘୃତ ଅର୍ପଣ ହେବା ସଙ୍ଗେ ସଙ୍ଗେ ପୂର୍ଣ୍ଣାହୁତି ଦିଆଯାଇଥାଏ । ଏହି ଧୂପରେ ମୁରୁଜ ପଡୁନଥିବାରୁ ଏହା ଶଙ୍ଖୁଡ଼ି ପ୍ରସାଦରୂପେ ବିବେଚିତ ହୋଇଥାଏ । ତତ୍‌ପରେ ଶ୍ରୀଜୀଉଙ୍କର ପହୁଡ଼ ନୀତି ହୋଇଥାଏ ।

ଏହି ପାଞ୍ଚ ପ୍ରକାରର ଧୂପ ଶ୍ରୀଠାକୁରଙ୍କ ନିକଟରେ ଦୈନନ୍ଦିନ ହୋଇଥିଲେ ମଧ୍ୟ, ଆଉ କେତୋଟି ଧୂପ ଓ ପୂଜା ଯଥା ଠାକୁରଙ୍କର ପର୍ବପର୍ବାଣି, ବେଶଭୂଷା, ଭକ୍ତମାନଙ୍କର ବରାଦୀ ଭୋଗ ହେବାର ବ୍ୟବସ୍ଥାମାନ ଅଛି । ଏହାର ଏକ ତାଲିକା ନିମ୍ନରେ ପ୍ରଦତ୍ତ ହୋଇଅଛି ।

**ଭୋଗମଣ୍ଡପ ଧୂପଃ**- ଏହି ଧୂପ ମଧ୍ୟାହ୍ନ ଧୂପ ପରେ ହୋଇଥାଏ । ସର୍ବସାଧାରଣ ଚାହିଦା ମୁତାବକ ଅର୍ଥାତ୍ କୌଣସି ମଠର ଯାତ୍ରୀ, ଅନୁଷ୍ଠାନ, ବରାଦୀ ଭକ୍ତମାନଙ୍କ ପାଇଁ ସ୍ୱତନ୍ତ୍ର ରୂପେ ହୋଇଥାଏ । ବେଳେ ବେଳେ ମଧ୍ୟାହ୍ନ ଧୂପ ସହିତ ଏହି ଧୂପ ମିଶିକରି ହୋଇଥାଏ । ତତ୍‌ପରେ

ପହୁଡ଼ ପଡ଼ିଥାଏ । କେତେବେଳେ ମଧ୍ୟାହ୍ନ ଧୂପ ପରେ ପହୁଡ଼ ଫିଟିଲେ ଏହି ଧୂପ ହୋଇଥାଏ । ଏହି ଧୂପକୁ କେହି କେହି "ଛତ୍ରଧୂପ" ବୋଲି କହିଥାନ୍ତି । ଏହି ଧୂପ ବାଧ୍ୟବାଧକତା ନୁହେଁ । ଆଉ ମଧ୍ୟ ବିଭିନ୍ନ ପର୍ବପର୍ବାଣିରେ ଏହି ଧୂପ ହୋଇଥାଏ । ମହାପ୍ରଭୁଙ୍କ ପାଖରେ ଏହି ଭୋଗ ପଞ୍ଚୋପଚାରରେ ପୂଜା ହୋଇଥାଏ । ଏଥିରେ ଅବଢ଼ା, ଡାଲି, ମହୁର, ଖଟା, ଶାଗ, କାନିକା, ଘିଅଅନ୍ନ, ଅଦା, ହେଙ୍ଗୁ ଖେଚୁଡ଼ି, ମେଥିପିତା ସହିତ ଖଜା, ଜଗନ୍ନାଥ ବଲ୍ଲଭ ଆଦି ପିଠା ଭୋଗ ହୋଇଥାଏ । କେତେକ ପର୍ବପର୍ବାଣିରେ ଏକାଧିକ ଭୋଗମଣ୍ଡପ ପୂଜା ବା ଭଅଣ୍ଡ ହୁଏ । ଏହାକୁ ପଛ ପହଣ୍ଡ କୁହାଯାଏ ।

**ଶୀତଳ ଭୋଗ :-** ରଥଯାତ୍ରା ସମୟରେ ମହାପ୍ରଭୁମାନେ ରଥାରୂଢ଼ ଅବସ୍ଥାରେ ବଡ଼ଦାଣ୍ଡରେ ଭୋଗ ହୋଇଥାଏ । ଏହି ଭୋଗ ଠାକୁର ବଳଗଣ୍ଡି ଛକଠାରେ ବିଶ୍ରାମରେ ଥିଲାବେଳେ ଅର୍ପଣ ହୋଇଥାଏ । ଏଥିରେ ଶ୍ରୀଠାକୁରମାନଙ୍କୁ ଅମୃତକୁଣ୍ଡ, କୋରା, ଖଇ, ପାଚିଲାକଦଳୀ, ନଡ଼ିଆ, ପଇଡ଼, ସପୁରୀ, ପଣସ, ରାଶିଲଡୁ ଆଦି ଭୋଗ ହୋଇଥାଏ ।

**ଗୁଣ୍ଡିଚା ମନ୍ଦିର ବା ଆଡ଼ପ ଭୋଗ :-** ଶ୍ରୀଜୀଉମାନେ ଗୁଣ୍ଡିଚା ମନ୍ଦିରର ରତ୍ନସିଂହାସନରେ ବିରାଜିତ ସମୟରେ ଏହି ଭୋଗ ହୋଇଥାଏ । ଏହି ଭୋଗରେ ଠାକୁରମାନଙ୍କୁ ସରପୁଳି, କାନ୍ତି, ହଁସବଲ୍ଲଭ, ପୀୟୂଷ ସୁନାଡ଼ି, ଖେଚୁଡ଼ି, ଡାଳିମ୍ବ ଲର୍ଦା କଦମ୍ବ, ସ୍ୱରସମୁଆଁ, ଗଜା, ଭଜା, ସରକାନ୍ତି, ଦୁଗ୍ଧଖିରି, ଗୋଟିକା, ଟାକୁଆ ଆଦି ଭୋଗ ହୋଇଥାଏ ।

**ଅଣସର ଭୋଗ:-** ମହାପ୍ରଭୁମାନେ ଅଣସର ଘରେ ରହିଥିବା ସମୟରେ ସେମାନଙ୍କୁ ଅର୍ପିତ ହେଉଥିବା ଭୋଗକୁ ଅଣସରଘର ଭୋଗ କୁହାଯାଏ । ଏହି ଭୋଗରେ ଶ୍ରୀଜୀଉମାନଙ୍କୁ ଧୂଆମୁଗ, ପଣା ସମେତ ଏକାଦଶୀ ଦିନ ଖଇ, କଦଳୀ, ପଣସ, ଆମ୍ବ, କୋରା, ଦଶମୂଳ ଭୋଗ ଅର୍ପଣ ହୋଇଥାଏ ।

**ଅଧରପଣା ଭୋଗ :-** ପୂର୍ବରୁ ଅଧରପଣା ଭୋଗ ସୁନାବେଶ ତଥା ବାହୁଡ଼ା ଏକାଦଶୀ ଦିନ ହେଉଥିଲା । ବର୍ତ୍ତମାନ ଏହା ତା'ପରଦିନ ଅର୍ଥାତ୍ ଆଷାଢ଼ ଶୁକ୍ଳ ଦ୍ୱାଦଶୀ ଦିନ ହେଉଅଛି । ଏକାବେଳେ ୯ ୨ ହାଣ୍ଡି ଅଧରପଣା ଭୋଗ ହୁଏ । ପ୍ରତି ରଥରେ ତିନି ହାଣ୍ଡି ଲେଖାଏଁ ଭୋଗ ହେଉଥିବା ବେଳେ ଶ୍ରୀବଳଭଦ୍ରଙ୍କ ରଥରେ ଥିବା ବିଜୟ ଓ ରାମକୃଷ୍ଣ ପ୍ରତିମା ପାଖରେ ଦୁଇ ହାଣ୍ଡି ଓ ଆଉ ଗୋଟିଏ ହାଣ୍ଡି ଶ୍ରୀଜଗନ୍ନାଥଙ୍କ ରଥରେ ଥିବା ମଦନମୋହନଙ୍କ ପାଖରେ ଭୋଗ ହୁଏ । ଏହି ପଣାରେ କ୍ଷୀର, ସର, ଛେନା, ନବାତ, ପାଚିଲାକଦଳୀ, ଗୋଲମରିଚ ଗୁଣ୍ଡ, ଜାଇଫଳ ଘୋରା, କର୍ପୂର ଓ ଜଳ ଆଦି ନଅଗୋଟି ଦ୍ରବ୍ୟ ପଡ଼ିଥାଏ ।

**ପହିଲି ଭୋଗ:-** ଧନୁ ସଂକ୍ରାନ୍ତିଠାରୁ ମକରସଂକ୍ରାନ୍ତି ପର୍ଯ୍ୟନ୍ତ ଠାକୁରମାନଙ୍କ ପାଖରେ ହେଉଥିବା ଭୋଗକୁ ପହିଲି ଭୋଗ କୁହାଯାଏ । ଏହି ଭୋଗରେ ଅବଢ଼ା ଓ ଅନ୍ୟାନ୍ୟ ସମେତ ମୂଳା ଓ ଦହି ଆଦିର ମିଶ୍ରଣରେ ଏକ ପ୍ରକାର "ମୂଳାରାଇତା" ଭୋଗ ହୋଇଥାଏ ।

**ଅନ୍ୟାନ୍ୟ ଭୋଗ :-** ମକର ସଂକ୍ରାନ୍ତି ଦିନ ମଧ୍ୟାହ୍ନ ଭୋଗ ପରେ ମକର ଚଉଳ ଓ ଧନୁମୁଆଁ ଭୋଗ ହୋଇଥାଏ । ସେହିପରି ଧନୁ ସଂକ୍ରାନ୍ତି ଦିନ ଧନୁ ମୁଆଁ ଭୋଗ ହୋଇଥାଏ । ବାହୁଡ଼ା ଦିନ ଛେନାପୋଡ଼, ଭାଦ୍ରବ କୃଷ୍ଣଦଶମୀ ଦିନ ଗୁଆକୋଳି ଓ ନଡ଼ିଆ, ଭାଦ୍ରବ ଅମାବାସ୍ୟା (ସପ୍ତପୁରୀ)ଦିନ ସକାଳ ଭୋଗରେ ପିଠା, ଭାଦ୍ରବ ଶୁକ୍ଳ ଦ୍ୱାଦଶୀ (ବାମନଜନ୍ମ) ଦିନ ଇନ୍ଦ୍ରଧ୍ୱଜ ପୂଜା ନିମନ୍ତେ ଦୁଇ ଓଳି ଅନ୍ନ ପୂଜାପାଇଁ ମହାସୁଆରମାନେ ମଣ୍ଡପକୁ ନେଇଥାନ୍ତି । କାର୍ତ୍ତିକ ମାସରେ ମହାପ୍ରଭୁଙ୍କର ଦୈନନ୍ଦିନ ନୀତି ପରି ନୀତି ହେଉଥିଲେ ମଧ ବାଲଧୂପ ସମୟରେ ଏକ ପ୍ରକାର ଲିଆ ଭୋଗ ହୋଇଥାଏ । ଏହାକୁ "ହରିବଲ୍ଲଭ ଲିଆ" କୁହାଯାଏ । ଚୈତ୍ର ଶୁକ୍ଳ ନବମୀ (ରାମନବମୀ) ଦିନର ପୂର୍ବଦିନ ରାତିରେ ଠାକୁରଙ୍କୁ ଜେଉଡ଼ ଭୋଗ ଓ ଅକ୍ଷୟ ତୃତୀୟାଠାରୁ ୨୧ଦିନ ଚନ୍ଦନ ମଣ୍ଡପରେ ମାଣ୍ଡୁଆ ଭୋଗ ଏବଂ ବିଡ଼ିଆ ମଣୋହି ହୁଏ । ବର୍ଷକ ମଧ୍ୟରେ ଶ୍ରୀମନ୍ଦିରରେ ଠାକୁରଙ୍କର ହେଉଥିବା ବେଶ ସମୟରେ ଏକ ପ୍ରକାର ଖିରି ଭୋଗ ହୋଇଥାଏ । ଏହା "ବେଶ ଖିରି" ନାମରେ ପ୍ରସିଦ୍ଧ । ଏହି ଖିରି କ୍ଷୀର, ସଚି, ଖୁଆ, ଚଉଳ ବା ସୁଜି ଆଦି ମିଶ୍ରଣରେ ପ୍ରସ୍ତୁତ ହୋଇଥାଏ । ଶ୍ରାବଣ ମାସର ଅମାବାସ୍ୟା (ଚିତାଲାଗି) ଦିନ ଶ୍ରୀଜୀଉଙ୍କୁ ମଧ୍ୟାହ୍ନ ଭୋଗ ପରେ ସୁସ୍ୱାଦ ଚିତଉ ପିଠା ଭୋଗ ହୋଇଥାଏ । ଶାସ୍ତ୍ରୀୟ ନୀତି ଅନୁସାରେ ନିଷ୍ଠାର ସହ ଠାକୁରଙ୍କ ପାଖରେ ହେଉଥିବା ଭୋଗକୁ ପ୍ରସାଦ କୁହାଯାଏ । କିନ୍ତୁ ଏହା ମା'ବିମଳାଙ୍କ ପାଖରେ ଅର୍ପଣ ହୋଇ ସାରିଲାପରେ ମହାପ୍ରସାଦ ହୋଇଥାଏ । ଏହି ମହାପ୍ରସାଦରେ ବହୁ ମାହାତ୍ମ୍ୟ ପରିଲକ୍ଷିତ ହୋଇଥାଏ । ତେଣୁ ଏହି ମହାପ୍ରସାଦକୁ ସେବନ କରିବା ପାଇଁ କେଉଁ ଦୂରଦୂରାନ୍ତରୁ ଲକ୍ଷଲକ୍ଷ ଭକ୍ତ ଅତ୍ୟନ୍ତ ଆଗ୍ରହର ସହିତ ଛୁଟି ଆସିଥାନ୍ତି ଶ୍ରୀଜଗନ୍ନାଥଙ୍କ ମନ୍ଦିରକୁ ।

ସର୍ବୋପରି ମାନବୀୟ ଧର୍ମରେ ବିବିଧତା ଓ ବିଭିନ୍ନତା ଥିଲେ ମଧ ଶ୍ରୀଜଗନ୍ନାଥଙ୍କ ଭୋଗ ସାମଗ୍ରୀ ସୃଷ୍ଟି କରି ପାରିଛି ପରସ୍ପର ମଧ୍ୟରେ ଶାନ୍ତି, ସାମ୍ୟ, ମୈତ୍ରୀ, ପ୍ରୀତି, ଏକତା ଓ ସଂହତି ।

"ଜଗଦାନନ୍ଦକନ୍ଦାୟ ପ୍ରଣତାର୍ତ୍ତିହରାୟ ଚ
ନୀଳାଚଳ ନିବାସାୟ ଜଗନ୍ନାଥାୟ ତେ ନମଃ ।।"

* * * * * * *

# ଶ୍ରୀମହାପ୍ରସାଦର ମାହାତ୍ମ୍ୟ

"ନୀଳାଚଳନିବାସାୟ ନିତ୍ୟାୟ ପରମାତ୍ମନେ
ବଳଭଦ୍ର ସୁଭଦ୍ରାଭ୍ୟାଂ ଜଗନ୍ନାଥାୟତେ ନମଃ" ॥



ବିଶ୍ୱ ବ୍ରହ୍ମାଣ୍ଡରେ ହିନ୍ଦୁ ଶାସ୍ତ୍ରାନୁମୋଦିତ ପବିତ୍ର ବସ୍ତୁ ହେଉଅଛି ଗଙ୍ଗାଜଳ, ବ୍ରଜଧୂଳି ଓ ଶ୍ରୀମହାପ୍ରସାଦ । ଏହି ତିନୋଟି ବ୍ରଜବସ୍ତୁ ଯେଉଁ ଭକ୍ତକୁ ପ୍ରାପ୍ତ ହୋଇଥାଏ, ତା'ର ଜୀବନ ଧନ୍ୟ ହୋଇଥାଏ । ତନ୍ମଧ୍ୟରୁ ମହାପ୍ରସାଦର ମାହାତ୍ମ୍ୟ ଅସାଧାରଣ ଗୁରୁତ୍ୱ ବହନ କରିଅଛି । ଏହାର ପ୍ରସ୍ତୁତିକରଣ ଯେପରି ସ୍ୱତନ୍ତ୍ର, ଠିକ୍ ସେପରି ଏହାର ପାକଶାଳା, ପୂଜାପଦ୍ଧତିର ନୀତି, ନିୟମ, ସେବାୟତ, ବ୍ୟବହାରିକ ଗୁଣଶୈଳୀ, ମହକ, ସ୍ୱାଦ, ଖାଇବାର ତୃପ୍ତି ଇତ୍ୟାଦି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଅଛି । ମାଦଳାପାଞ୍ଜିଠାରୁ ଆରମ୍ଭକରି ବିଭିନ୍ନ ପ୍ରକାର ପୁରାଣଶାସ୍ତ୍ର, ବେଦବେଦାନ୍ତ, ଉପନିଷଦ, କାବ୍ୟ କବିତା ପର୍ଯ୍ୟାଲୋଚନା କଲେ, ଏହାର ସମସ୍ତ ମହତଗୁଣ ଦୃଷ୍ଟିଗୋଚର ହୋଇଥାଏ । ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷରେ ଥିବା ସମସ୍ତ ଦେବଦେବୀମାନଙ୍କୁ ଅର୍ପିତ ହୋଇଥିବା ଭୋଗକୁ ପ୍ରସାଦ କୁହାଯାଇଥାଏ । କିନ୍ତୁ ଏହା ସତ୍ୟ ଯେ କେବଳ ଶ୍ରୀକ୍ଷେତ୍ରସ୍ଥିତ ଓଡ଼ିଶାର ବଡ଼ଠାକୁର, ଅଶେଷ ଆଶୀର୍ବାଦର ଭଣ୍ଡାର ତଥା ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ଭୋଗକୁ ପ୍ରସାଦ ପରିବର୍ତ୍ତେ ମହାପ୍ରସାଦ କୁହାଯାଏ । ବାସ୍ତବିକ ଏହା ସେବନର ଗୁଣ, ମହକ, ସ୍ୱାଦ, ତୃପ୍ତି ଓ ଗରିମା ସର୍ବବ୍ୟାପକ ରୂପେ ଆଦରଣୀୟ, ସମ୍ମାନନୀୟ ଓ ପ୍ରଶଂସନୀୟ ହୋଇପାରିଛି । ଏଥିସହିତ ଏହା ଆଧ୍ୟାତ୍ମିକ ଶକ୍ତିର ପ୍ରେମରସ ଭକ୍ତସମାଜକୁ ସ୍ୱର୍ଗପୁରୀ ପରି ଆନନ୍ଦ ପ୍ରଦାନ କରିପାରିଛି ।

ଏହି ମହାପ୍ରସାଦର ପ୍ରସ୍ତୁତିକରଣ ମଧ୍ୟ ବିଚିତ୍ର, ଯାହାକି ପୃଥିବୀର କୌଣସିଠାରେ ଏହିପରି ପ୍ରସ୍ତୁତିକରଣର ପ୍ରକ୍ରିୟା ବିରଳ ମାତ୍ର । ତେଣୁ ଏହି ପ୍ରସ୍ତୁତିର ପାକଶାଳାକୁ ପୃଥିବୀର ବୃହତ୍ତମ ପାକଶାଳା ଓ ଏହାର ବିକ୍ରୟ କେନ୍ଦ୍ରକୁ ଆନନ୍ଦବଜାର ବା ପୃଥିବୀର ବୃହତ୍ତମ ହୋଟେଲ ରୂପେ ଖ୍ୟାତି ଅର୍ଜନ କରିଅଛି । ଏହି ପାକଶାଳା ମଧ୍ୟ ମା'ହିଙ୍ଗୁଳା ପୀଠ ରୂପେ ଅଭିହିତ ହୋଇଅଛି । ଏହି ପୀଠରେ ଅଳ୍ପ ସମୟରେ ଲକ୍ଷ ଲକ୍ଷ ଭକ୍ତଙ୍କ ପାଇଁ ମହାପ୍ରସାଦ ପ୍ରସ୍ତୁତ ହୋଇଥାଏ । ଏହି ଖାଦ୍ୟ କେବଳ କାଠ ଜାଳେଣି ଦ୍ୱାରା ପ୍ରସ୍ତୁତ ହୋଇଥାଏ । ଆଉ ମଧ୍ୟ ଏହା କେବଳ କଳା ଓ ନାଲି ମାଟିରେ ନିର୍ମିତ ହାଣ୍ଡିରେ ପ୍ରସ୍ତୁତ ହୋଇଥାଏ । ଏହି ସବୁ ମାଟି ହାଣ୍ଡିକୁ (କୁଡୁଆ) ବିଭିନ୍ନ ଆକାରରେ କେବଳ ଗୋଟିଏ ସମ୍ପ୍ରଦାୟର ସେବାୟତ ନିର୍ମାଣ କରି ଯୋଗାଇଥାଆନ୍ତି । ସେହିପରି ଏକ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ସେବାୟତ (ସୂପକାର) ରନ୍ଧନ କରିଥାନ୍ତି । ପାକଶାଳାରେ ଛଅଟି ଶିଖା ଥିବା ଚୂଲିରେ ପ୍ରଥମ ଥାକରେ ୫ଟି ହାଣ୍ଡି, ଦ୍ୱିତୀୟ ଥାକରେ ତିନୋଟି ହାଣ୍ଡି ଓ ତୃତୀୟ ଥାକରେ ଗୋଟିଏ ହାଣ୍ଡି ରଖି ଖାଦ୍ୟ ପ୍ରସ୍ତୁତ ହୋଇଥାଏ । ପ୍ରଥମେ ପାଳିଆ ପୂଜାପଣ୍ଡା ଦ୍ୱାରା ରୋଷଘର ହୋମ ହୋଇଥାଏ । ତତ୍‌ପରେ ସୂପକାର ସେବାୟତମାନେ ପାଟିରେ ଏକ ପଟି ବାନ୍ଧି, ଶୁଦ୍ଧପୂତ ଭାବରେ ନିଷ୍ଠାର ସହ ପ୍ରଣବ ଉଚ୍ଚାରଣ କରି ହାଣ୍ଡିକୁ ଧୌତକରିଥାଆନ୍ତି । ମନ୍ମଥ ବୀଜରେ ପାକ ହାଣ୍ଡିରେ ଜଳପୂର୍ଣ୍ଣ କରି ଦଶାକ୍ଷର ମନ୍ତ୍ରରେ ଅରୁଆ ଚାଉଳ (ଅମୁଣିହା) । ମା'ଲକ୍ଷ୍ମୀ ବୀଜ ସ୍ମରଣ କରି ଚାଉଳ ହାଣ୍ଡିରେ ପକାଇଥାଆନ୍ତି ।

ଭିନ୍ନଭିନ୍ନ ପର୍ଯ୍ୟାୟରେ ଏହି ମହାପ୍ରସାଦର ପ୍ରସ୍ତୁତିକରଣ ବିଭିନ୍ନ ଶାସ୍ତ୍ର ଓ ମତବାଦରେ ଭିନ୍ନ ଭିନ୍ନ ସଂସ୍କାର ହୋଇଥାଏ । ପ୍ରଥମତଃ ପ୍ରସାଦର ଷଡ଼ଙ୍ଗସଂସ୍କାର ଦ୍ୱାରା ଅନ୍ନତ୍ୱର ବିଲୋପ କରାଯାଇ ବ୍ରହ୍ମତ୍ୱର ଆରୋପ କରାଯିବାରୁ ଏହାକୁ ମହାପ୍ରସାଦ କୁହନ୍ତି । ଏହି ଷଡ଼ଙ୍ଗ ସଂସ୍କାର ଗୁଡ଼ିକ ହେଲା - (୧) ମା'ମହାଲକ୍ଷ୍ମୀଙ୍କ ଦ୍ୱାରା ବୈଷ୍ଣବାଗ୍ନିରେ ରନ୍ଧନ (୨) ଶ୍ରୀଯନ୍ତ୍ର ଠାଆ ମୁରୁଜରେ ନୈବେଦ୍ୟ ନିମନ୍ତେ ସ୍ୱର୍ଣ୍ଣମୟ ପାତ୍ରରେ ପରିବେଷଣ (୩) ମନ୍ତ୍ରରାଜ ବା ଦ୍ୱିବିଂଶାକ୍ଷରୀ ଶ୍ରୀନୃସିଂହତାପିନୀୟ ପାତାଳ ନୃସିଂହ ମନ୍ତ୍ରରେ ପ୍ରୋକ୍ଷଣ, (୪) ଅଷ୍ଟଦଶାକ୍ଷର ଗୋପାଳ ମନ୍ତ୍ରରେ ନିବେଦନ, (୫) ଭୈରବୀ ଚକ୍ରରେ ଉଚ୍ଛିଷ୍ଟ ଭୈରବୀ ମା'ବିମଳାଙ୍କୁ ସମର୍ପଣ ଏବଂ (୬) ବିଶ୍ୱକେସନ, ଶୁକ, ପ୍ରହଲ୍ଲାଦ, ହନୁମାନ, ନାରଦ, ଜୈନ ତେୟ, ଦେବଳ ଓ ଇନ୍ଦ୍ରଦ୍ୟୁମ୍ନାଦି ଅଷ୍ଟ ସାତ୍ତ୍ୱିକ ବୈଷ୍ଣବଙ୍କ ଅବଶେଷ ଅନ୍ନବଳି ପ୍ରଦାନ ।

ଦ୍ୱିତୀୟତଃ ତାନ୍ତ୍ରିକ ମତବାଦରେ ମହାପ୍ରସାଦ ୧୧ଟି ସଂସ୍କାର ମାଧ୍ୟମରେ ହୋଇଥାଏ । ସେଗୁଡ଼ିକ ଯଥା :- (୧) ଚାଉଳକୁ ଅମୁଣିଆଁ କୁହାଯାଏ, (୨) ସେହି ଚାଉଳ ରନ୍ଧା ହେବା ପରେ ଅନ୍ନ, (୩) ସେହି ଅନ୍ନ ଭୈରବୀ ଚକ୍ର ଅଭିମୁଖେ ହେଲେ ତାହା ଛେକ (୪) ଛେକ ଭୈରବୀ ଚକ୍ରରେ ସଂସ୍ଥାପିତ ହେଲେ ତାହା ଭୋଗ, (୫) ତାହା ଶ୍ରୀଜୀଉଙ୍କୁ ଅର୍ପଣ ହେଲେ

ନୈବେଦ୍ୟ ହୁଏ, (୬) ନୈବେଦ୍ୟ ବଳି ଅର୍ପଣ ହେଲେ ତାହା ପ୍ରସାଦ, (୭) ସେହି ପ୍ରସାଦ ମା'ବିମଳାଙ୍କୁ ଅର୍ପଣ ହେଲେ ତାହା ମହାପ୍ରସାଦ, (୮) ତାହା ପାଞ୍ଚ ପରମେଶ୍ୱରଙ୍କ ଦୃଷ୍ଟି ପଥାରୂଢ଼ ହୋଇ ମୋକ୍ଷ ପ୍ରଦାନ କଲେ କୈବଲ୍ୟ, (୯) ସେହି କୈବଲ୍ୟ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସେବନ କରିବା ସମୟରେ ଅବଢ଼ା, (୧୦) ଅବଢ଼ାରୁ ନିର୍ମାଲ୍ୟ ଏବଂ (୧୧) ଏହି ନିର୍ମାଲ୍ୟ ପରଂବ୍ରହ୍ମଙ୍କ ସହିତ ସମାନ ହୋଇ ଊର୍ଦ୍ଧ୍ୱରେ ସଂସ୍ଥିତ ହୋଇଥାଏ । ଏହି ୧୧ଟି ସଂସ୍କାରରେ ରୂପାନ୍ତିରତ ହୋଇ ମାନବ ଜାତିର ଏକ ଅମୂଲ୍ୟ ପଦାର୍ଥ ରୂପେ ବିବେଚିତ ହୁଏ ।

ପରଂବ୍ରହ୍ମ ଶ୍ରୀବିଷ୍ଣୁ ତଥା ଦାରୁମୂର୍ତ୍ତି ମୁରାରି ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଭାରତରେ ଚାରୋଟି ଧାମ ବିଦ୍ୟମାନ । ଏହି ଧାମଗୁଡ଼ିକ ଶ୍ରୀବିଷ୍ଣୁଙ୍କର ଲୀଳା, କ୍ରୀଡ଼ା, ଭୋଜନ, ଶୟନ ପାଇଁ ଉଦ୍ଦିଷ୍ଟ । ସେଗୁଡ଼ିକ ହେଲା ଉତ୍ତରରେ ବଦ୍ରିନାଥ ପୀଠ ସ୍ନାନ କ୍ଷେତ୍ର, ପୂର୍ବରେ ଶ୍ରୀକ୍ଷେତ୍ର ଭୋଜନ ପୀଠ, ଦକ୍ଷିଣରେ ରାମେଶ୍ୱର ପୀଠ ଶୟନକ୍ଷେତ୍ର ଓ ପଶ୍ଚିମରେ ଦ୍ୱାରିକା ପୀଠ ବେଶଲାଗି କ୍ଷେତ୍ର ପାଇଁ ପ୍ରସିଦ୍ଧି ଲାଭ କରିଛି । ଯେହେତୁ ଶ୍ରୀକ୍ଷେତ୍ର ଧାମଟି ପରଂବ୍ରହ୍ମ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଭୋଜନପୀଠ, ତେଣୁ ଏହି ପୀଠରେ ୫୬ପଉଟି ପ୍ରକାରର ଭୋଗ ପ୍ରସ୍ତୁତ ହୋଇ ପ୍ରଭୁ ଶ୍ରୀଜୀଉଙ୍କୁ ସମର୍ପିତ ହୋଇଥାଏ । ଆଉ ମଧ୍ୟ ଏହି ଧାମ ଚାରିଧାମ ମଧ୍ୟରେ ସର୍ବାଧିକ ଗୁରୁତ୍ୱ ବହନ କରିଅଛି । ଏଥିପାଇଁ ଏକ ପୌରାଣିକ ଉପାଖ୍ୟାନ ନିମ୍ନରେ ପ୍ରଦତ୍ତ ହୋଇଅଛି । ତ୍ରେତୟା ଯୁଗରେ ମର୍ଯ୍ୟାଦା ପୁରୁଷୋତ୍ତମ ପ୍ରଭୁ ଶ୍ରୀରାମ, ମା'ସୀତା ଓ ଅନୁଜ ଲକ୍ଷ୍ମଣଙ୍କ ସହ ୧୪ବର୍ଷ ବନବାସ କରି ଲଙ୍କାର ରାଜା ରାବଣକୁ ବଧ କରିଥିଲେ । ୧୪ବର୍ଷପରେ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରି ଭାଇ ଲକ୍ଷ୍ମଣଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇଥିଲେ । କାରଣ ଇନ୍ଦ୍ରଜିତକୁ ଯିଏ ମାରିବ ସେ ୧୪ବର୍ଷ ବନବାସ କରିବା ସହିତ ଉଜାଗର, ଅନାହାରରେ ରହିଥିବେ ଓ ସ୍ତ୍ରୀମୁହଁ ଚାହିଁ ନଥିବେ । କିନ୍ତୁ ଲକ୍ଷ୍ମଣ ଇନ୍ଦ୍ରଜିତକୁ ମାରିଥିବାରୁ, ପ୍ରଭୁ ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ଏହି ସର୍ତ୍ତ କିପରି ପାଳନ କରିଥିଲ ବୋଲି ପଚାରିଲେ । ଅନୁଜ ଲକ୍ଷ୍ମଣ ଏହି ସବୁ ସର୍ତ୍ତର ପ୍ରାମାଣିକ ସତ୍ୟାସତ୍ୟ ଅଗ୍ରଜ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ବୁଝାଇ କହିଥିଲେ । ସେ ଲକ୍ଷ୍ମଣଙ୍କ-ଉପରେ ଯେତିକି ପ୍ରୀତ ହୋଇଥିଲେ, ତାହାଠାରୁ ଅଧିକ ପ୍ରୀତ ହୋଇଥିଲେ ଲକ୍ଷ୍ମଣଙ୍କ ସ୍ତ୍ରୀ ଉର୍ମିଳାଙ୍କ ଉପରେ । କାରଣ ସ୍ୱାମୀ ଲକ୍ଷ୍ମଣଙ୍କର ୧୪ବର୍ଷ ଅନୁପସ୍ଥିତିରେ ସ୍ତ୍ରୀ ଉର୍ମିଳା ମଧ୍ୟ ତାଙ୍କ ମୁହଁ ଦର୍ଶନ କରିନଥିଲେ । ଏହା ଥିଲା ଜଣେ ସ୍ତ୍ରୀର ବଳିଷ୍ଠ ତ୍ୟାଗ ଓ ସାଧନା । ତେଣୁ ପ୍ରଭୁ ଶ୍ରୀରାମଚନ୍ଦ୍ର ଉର୍ମିଳାଙ୍କ ଉପରେ ଅତ୍ୟନ୍ତ ପ୍ରୀତହୋଇ ଦୁଇଟି ବର ମାଗିବା ପାଇଁ ତାଙ୍କୁ କହିଥିଲେ । ଉର୍ମିଳା ପ୍ରଥମ ବରରେ ମାଗିଲେ, ହେ ମହାପ୍ରଭୁ ମୋତେ ଏପରି ବର ଅର୍ପଣ କରନ୍ତୁ, ମୁଁ ଯେପରି ଧୂପକାଠିର ମହକ ପରି ଆପଣଙ୍କ ସେବାରେ ମୋର ସମୟତକ ବିନିଯୋଗ କରିପାରିବି । ମର୍ଯ୍ୟଦା ପୁରୁଷୋତ୍ତମ ଉର୍ମିଳାଙ୍କୁ କହିଥିଲେ, ତୁମେ ଅପେକ୍ଷାକର । ମୁଁ କଳିଯୁଗରେ ଶ୍ରୀକ୍ଷେତ୍ରଧାମରେ ବଡ଼ ଦେଉଳର ରତ୍ନସିଂହାସନରେ ପ୍ରଭୁ

ଶ୍ରୀଜଗନ୍ନାଥ ରୂପେ ଅଧିଷ୍ଠିତ ହେବି । ଅନୁଜ ଲକ୍ଷ୍ମଣ ମୋର ଅଗ୍ରଜ ବଳଭଦ୍ର ରୂପେ ଅବତାର ନେଇ ମୋ ପାଖରେ ବସିଥିବେ । କିନ୍ତୁ ମା' ମହାଲକ୍ଷ୍ମୀ ମୋ ପାଖରେ ବସି ନଥିବେ । ତୁମେ ବିମଳା ରୂପରେ ବସି ମୋ ପ୍ରସାଦ ତୁମ ପାଖରେ ପୂଜା ସରିଲେ, ତାହା ମହାପ୍ରସାଦ ହେବ ଯାହାକି ଧୂପକାଠିର ସୁଗନ୍ଧପରି ଚଉଦିଗ ମହକାଇ ଦେବ । ତେଣୁ ତ୍ରେତୟା ଯୁଗର ଉର୍ମିଳା, କଳିଯୁଗରେ ମା'ବିମଳା ରୂପେ ଆବିର୍ଭୂତା ହେବେ । ଅନ୍ୟ ବରଟି ଥିଲା ତୁମେ କଳିଯୁଗରେ ଶ୍ରୀକ୍ଷେତ୍ରର ବଡ଼ ଦେଉଳରେ ଉପବିଷ୍ଟ ହୋଇଥିବା ବେଳେ ମୁଁ ବଙ୍କୋପସାରଗରେ ଉର୍ମିରୂପେ ଆସି ତୁମ ପଦଦ୍ୱୟ ସ୍ପର୍ଶ କରିବି । ପ୍ରଭୁ ଶ୍ରୀରାମ ଉର୍ମିଳାଙ୍କୁ ଦୁଇଟି ବରପ୍ରଦାନ କରିଥିଲେ, ଯାହାକି ଆଜି ତାହା ଦେଖିବାକୁ ମିଳୁଅଛି ।

ଅନ୍ୟ ଗୋଟିଏ ପୌରାଣିକ ଉପାଖ୍ୟାନରୁ ଉଦ୍ଧୃତ ଯେ, ଏକଦା ନାରଦମୁନି, ଶ୍ରୀବୈକୁଣ୍ଠପୁରୀର କ୍ଷେତ୍ରପତି ପରଂବ୍ରହ୍ମ ଶ୍ରୀବିଷ୍ଣୁଙ୍କର ମହାପ୍ରସାଦ ଖାଇବାକୁ ଇଚ୍ଛାପ୍ରକଟ କରିଥିଲେ । ମନଯାନରେ ବୈକୁଣ୍ଠପୁରୀ ଆସିଥିଲେ ସିନା, କିନ୍ତୁ କିପରି ମହାପ୍ରସାଦ ଖାଇବେ ସେଥିପାଇଁ ଏକ ଉପାୟ ଅବଲମ୍ବନ କରିଥିଲେ । ସେ ଦିନସାରା ଲୁଚି ରହି ରାତିର ଶେଷ ପ୍ରହରରେ ସ୍ତ୍ରୀରୂପରେ ବୈକୁଣ୍ଠପୁରୀର ଘରିପଟ ଛେରାପହଁରା କରିଥିଲେ । ଏହି ଘଟଣାଟି ମା'ମହାଲକ୍ଷ୍ମୀଙ୍କୁ ଅଛପା ନଥିଲା । ଦିନେ ମା'ମହାଲକ୍ଷ୍ମୀ ଦେବୀ ଉଜାଗର ରହି ଶେଷ ପ୍ରହରରେ ଛଦ୍ମବେଶରେ ଝାଡ଼ୁ ଦେଉଥିବା ସ୍ତ୍ରୀଲୋକଟିକୁ ଜଗି ଧରିଥିଲେ । ତୁମେ କିଏ ଓ କାହିଁକି ଝାଡ଼ୁ ଦେଉଅଛ ବୋଲି ତା'କୁ ପଚାରିଥିଲେ । ସ୍ତ୍ରୀଲୋକଟି ମା'ମହାଲକ୍ଷ୍ମୀଙ୍କୁ ପ୍ରଣାମ ପୂର୍ବକ କହିଲେ, ମା' ମୁଁ ହେଉଛି ନାରଦ । ପ୍ରଭୁ ଶ୍ରୀ ନାରାୟଣଙ୍କ ପ୍ରସାଦ ଖାଇବାପାଇଁ ମୋର ପ୍ରବଳ ଇଚ୍ଛା । ଏହା ଶ୍ରୀ ପ୍ରଭୁଙ୍କୁ କହିବାକୁ ଲାଜ ଲାଗୁଅଛି । ଆପଣ ଦୟାକଲେ ମୁଁ ପ୍ରସାଦ ଖାଇବି ଓ ମୁକ୍ତି ଲାଭ କରିପାରିବି । ମା'ମହାଲକ୍ଷ୍ମୀ ନାରଦଙ୍କୁ ଅସ୍ତୁ କହି ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ନାରଦଙ୍କର ସମସ୍ତ ବୃତ୍ତାନ୍ତ ମା'ମହାଲକ୍ଷ୍ମୀ ପ୍ରଭୁ ଶ୍ରୀନାରାୟଣଙ୍କୁ କହିବା ଫଳରେ ପ୍ରଭୁ ଶ୍ରୀନାରାୟଣ ତାଙ୍କ ମଧ୍ୟାହ୍ନ ଭୋଜନର ଅଧରାମୃତ ନାରଦଙ୍କୁ ଦେବାପାଇଁ କହିଥିଲେ । ନାରଦ ତାହା ଖାଇ ଦୀର୍ଘଦିନର ପିପାସା ପୂରଣ କରିଥିଲେ । ତତ୍‌ପରେ କୈଳାସ ପୁରୀରେ ପ୍ରଭୁ ଶ୍ରୀଶିବଙ୍କୁ ଦର୍ଶନ କରି ପ୍ରଭୁ ଶ୍ରୀନାରାୟଣଙ୍କ ମହାପ୍ରସାଦ ସେବନ କରିବାର ସମସ୍ତ ବୃତ୍ତାନ୍ତ କହିଥିଲେ । ଉତ୍ତରରେ କୈଳାସ ବିହାରୀ ଶ୍ରୀଶିବ ମୋ ପାଇଁ କାହିଁକି ଆଣିଲ ନାହିଁ ବୋଲି ପ୍ରଶ୍ନ କରିଥିଲେ । ନାରଦ ତାଙ୍କର ଆଙ୍ଗୁଠି ସନ୍ଧିରେ ଲାଗିଥିବା ଏକ କଣିକା ମହାପ୍ରସାଦ ପ୍ରଭୁ ଶ୍ରୀଶିବଙ୍କୁ ଖାଇବାକୁ ଦେଇଥିଲେ । ଶ୍ରୀଶିବ ତାହାକୁ ଖାଇ ମହା ଆନନ୍ଦରେ ତାଣ୍ଡବ ନୃତ୍ୟରେ ମଗ୍ନ ରହିଲେ । ଠିକ୍ ଏହି ସମୟରେ ମା'ପାର୍ବତୀ ସେଠାରେ ଉପସ୍ଥିତ ହୋଇ, ନାରଦଙ୍କଠାରୁ ମହାପ୍ରସାଦ ସେବନ କରିବା ଓ ତାଙ୍କ ପାଇଁ ଆଣି ନଥିବା ଶୁଣି ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଥିଲେ । ସେଠାରେ ଶପଥ କରି କହିଥିଲେ, ତୁମେ

ଦୁଇଜଣ ମହାପ୍ରସାଦ ଖାଇଲ ଓ ମୋ ପାଇଁ ଆଣିଲ ନାହିଁ । ଏଥିପାଇଁ ଚଣ୍ଡାଳଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ସମସ୍ତ ପ୍ରକାର ଭକ୍ତ ସମସ୍ତେ ଖାଇବେ ଓ ମୁଁ ସେହି ମହାପ୍ରସାଦର ଅଧିକାରିଣୀ । ଧ୍ୟାନମଗ୍ନ ହୋଇ ତାଙ୍କର ମନକଥା ପ୍ରଭୁ ଶ୍ରୀନାରାୟଣଙ୍କୁ ଜଣାଇଥିଲେ । ଶେଷରେ ପ୍ରଭୁ ଶ୍ରୀନାରାୟଣ କୈଳାସପୁରୀ ଆସି ମା'ପାର୍ବତୀଙ୍କ ନିକଟରେ ଉଭାହୋଇ ବରପ୍ରଦାନ କରିଥିଲେ । ପୁନରାୟ ମା'ପାର୍ବତୀ ପ୍ରଭୁ ଶ୍ରୀନାରାୟଣଙ୍କୁ ପ୍ରଶ୍ନ କରିଥିଲେ, ଏହା କେବେ ଓ କିପରି କାର୍ଯ୍ୟକାରୀ ହେବ । ପ୍ରଭୁ ଶ୍ରୀନାରାୟଣ ଉତ୍ତରରେ କହିଲେ, କଳିଯୁଗରେ ମୁଁ ନୀଳାଚଳରେ ଯେତେବେଳେ ଦାରୁବ୍ରହ୍ମରୂପରେ ଅବସ୍ଥାପନ ହୋଇଥିବି, ସେତେବେଳ ତୁମେ ମା'ବିମଳା ରୂପରେ ମୋର ପଶ୍ଚିମ ପାର୍ଶ୍ୱରେ ଅବସ୍ଥାପିତ ହେବ । ମୋ ଧୂପ ପରେ ପ୍ରସାଦ ତୁମର ପୂଜା ହେବ, ତା'ପରେ ତାହା ମହାପ୍ରସାଦରେ ପରିଣତ ହେବ । ତୁମକୁ ଅର୍ପଣ ନହେଲେ, ତାହା ମହାପ୍ରସାଦ ହେବ ନାହିଁ । ଯାହାକୁ ଚଣ୍ଡାଳଠାରୁ ବ୍ରାହ୍ମଣ, ସାନରୁ ବଡ଼, ଛୁଆଁ-ଅଛୁଆଁ, ସଙ୍କୁଡ଼ି-ଅଇଁଠା ଇତ୍ୟାଦି ଭେଦଭାବ ଭୁଲି ସମସ୍ତେ ଏକାଠି ଖାଇ ତୃପ୍ତି ଲାଭ କରିବେ । ଯାହାର ମହିମା, ଗୁଣ ଗାରିମା, ମହତ୍ୱ ଘରିଆଡ଼େ ମହକାଇ ଦେବ । ଯାହାକି ଆଜି ତାହା ଦେଖିବାକୁ ମିଳୁଅଛି ।

ମହାପ୍ରସାଦ ଶବ୍ଦଟି ଗୋଟିଏ ତାନ୍ତ୍ରିକ ଶବ୍ଦ । ମହା-ଅର୍ଥ ଶ୍ରେଷ୍ଠ ବା ବଡ଼, ପ୍ରସାଦ- ଅର୍ଥ ଭୋଗ, ଯାହାକି ଶ୍ରୀଠାକୁରଙ୍କୁ ଅର୍ପିତ ଭୋଗ । ଏହି ବଡ଼ ଭୋଗ ବା ମହାପ୍ରସାଦ ଶ୍ରୀଜଗନ୍ନାଥଙ୍କ ପାଖରେ କେବେଠାରୁ ପ୍ରଚଳନ ହୋଇ ଆସୁଅଛି, ତାହା ମାଦଳାପଞ୍ଜି, ବିଭିନ୍ନ ପୁରାଣ ଶାସ୍ତ୍ର, ତନ୍ତ୍ରଶାସ୍ତ୍ର ଇତ୍ୟାଦିରେ ସମ୍ପୂର୍ଣ୍ଣରୂପେ ବ୍ୟାଖ୍ୟା ହୋଇଅଛି । କିନ୍ତୁ ବର୍ତ୍ତମାନ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପୀଠରେ ମହାପ୍ରସାଦ ଯେପରି ପ୍ରଚଳନ ହେଉଅଛି, ଅତୀତରେ ସେପରି ହେଉନଥିଲା । ତେବେ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ମତରେ ତାହା ଗଜପତି ରାଜା ଯଯାତିକେଶରୀଙ୍କ (ଖ୍ରି ୫୨୨ରୁ ୫୯୮) ସମୟରୁ ପ୍ରଚଳନ ହେଉଅଛି । ଏଥିପାଇଁ ଯଯାତିଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କୁହାଯାଏ । ଅନିରୁଦ୍ଧ ଦାସଙ୍କ ମତରେ ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ପରାମର୍ଶକ୍ରମେ ଯଯାତି କେଶରୀ ଶ୍ରୀଜଗନ୍ନାଥଙ୍କ ପାଖରେ ଅନ୍ନଭୋଗର ପ୍ରଚଳନ କରାଇଥିଲେ । ଆଉ ମଧ୍ୟ ଶ୍ରୀଜଗନ୍ନାଥ କୈଫିୟତ ଗ୍ରନ୍ଥରେ ମହାପ୍ରସାଦ ସମ୍ବନ୍ଧରେ ଯାହାସବୁ ଉଲ୍ଲେଖ ଅଛି, ସେଥିରୁ ଜଣାଯାଏ ଏହା ଯଯାତି କେଶରୀଙ୍କ ସମୟରୁ ପ୍ରଚଳନ ହୋଇଆସୁଅଛି ।

ଅନ୍ୟ ଗୋଟିଏ ମତବାଦରେ ଗଜପତି ମହାରାଜା ଅନଙ୍ଗ ଉଦୟ ଦେବଙ୍କ (୧୨୩୦) ସମୟରୁ (ନଗରୀ ତାମ୍ର ଶାସନ ଅନୁସାରେ) ଶ୍ରୀମନ୍ଦିରରେ ଶ୍ରୀପୁରୁଷୋତ୍ତମଙ୍କୁ ପ୍ରତିଷ୍ଠା କରାଇଥିଲେ । ଛତିଶା ନିଯୋଗ ମଧ୍ୟ ପ୍ରବର୍ତ୍ତନ କରିଥିଲେ । ଏଥିସହିତ ସେ ତାଙ୍କର ସମସ୍ତ ରାଜସ୍ୱ ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିର ନିର୍ମାଣ କାର୍ଯ୍ୟରେ ବିନିଯୋଗ କରି ଶେଷରେ ତାଙ୍କର ସେବକ (ରାଉତ) ହୋଇ ରହିଥିଲେ । ଶ୍ରୀମନ୍ଦିରରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ରାଜାଧିରାଜ ବିଧିରେ ସେବା

କରିବା ସଙ୍ଗେ ମହାପ୍ରସାଦ ବିଜେ ପରେ ଶ୍ରୀମନ୍ଦିରରେ ଅବଢ଼ା ପ୍ରସ୍ତୁତ ହୋଇ ଅର୍ପଣ ହୋଇଥିଲା । ଏହାକୁ ନୀଳାଦ୍ରି ଅବଢ଼ା କୁହାଯାଏ ।

ମହାପ୍ରସାଦର ମାହାତ୍ମ୍ୟ ବଡ଼ ବିଚିତ୍ର । କାରଣ ଏହାର ପବିତ୍ରତା ସମ୍ବନ୍ଧରେ ହିନ୍ଦୁଧର୍ମର ଶାସ୍ତ୍ରମାନଙ୍କରେ ଯେପରି ଉଲ୍ଲେଖ ହୋଇଅଛି, ଠିକ୍ ସେପରି ଏହାର ବ୍ୟବହାରିକ ଉପଯୋଗିତା ଚୁମ୍ବକୀୟ ଶକ୍ତିପରି ବାନ୍ଧି ରଖିଅଛି । ବ୍ୟକ୍ତି ବ୍ୟକ୍ତି, ସାହିପଡ଼ିଶା, ବନ୍ଧୁବାନ୍ଧବ ଓ କୁଟୁମ୍ବମାନେ ଏହାକୁ ଖାଇବା ତ ଦୂରର କଥା, ଏହାର ନାମ ଧରିଲେ ବା ସ୍ପର୍ଶକଲେ ହୃଦୟ ମଧ୍ୟରେ ସୃଷ୍ଟି ହୋଇଥାଏ ଆଧାତ୍ମିକ ପ୍ରେମ । ଏତଦ୍‌ବ୍ୟତୀତ ସ୍ଥାନ, କାଳ, ପାତ୍ର, ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ମହାପ୍ରସାଦ ସୃଷ୍ଟି କରିଅଛି ଐକ୍ୟ, ମୈତ୍ରୀ ଓ ସଦ୍‌ଭାବ । ଓଡ଼ିଶା କାହିଁକି ସମଗ୍ର ଭାରତର ପ୍ରତ୍ୟେକ ପରିବାରରେ ଏହା ନିର୍ମାଲ୍ୟ ରୂପେ ପୂଜା ପାଉଅଛି । ପ୍ରତ୍ୟେକ ଧାର୍ମିକ ପର୍ବ ଓ ସାମାଜିକ ମେଳା, ମହୋତ୍ସବ, ପର୍ବପର୍ବାଣି, ବିଭା, ବ୍ରତ, ହୋମ, ଯଜ୍ଞ ଇତ୍ୟାଦି ଶୁଭ କାର୍ଯ୍ୟରେ ଏହାର ଉପଯୋଗିତା ଏକାନ୍ତ ଆବଶ୍ୟକ । ମାଲିମକଦ୍ଦମା, ସତ୍ୟପାଠ, ନିର୍ବନ୍ଧଘର ଇତ୍ୟାଦି କାର୍ଯ୍ୟରେ ଏହାକୁ ମାଧ୍ୟମ କରି ସତ୍ୟପାଠ ହୋଇଥାଏ । ଏହା ନ୍ୟାୟ, ସତ୍ୟ ଓ ଧର୍ମର ପ୍ରତୀକ । ଛୁଆଁ-ଅଛୁଆଁ, ସଙ୍ଖୁଡ଼ି-ଅଇଁଠା, ସାନ-ବଡ଼ ଭେଦଭାବ ଭୁଲି ଆବଳ ବୃଦ୍ଧବନିତା ତଥା ସ୍ୱାମୀ,ସ୍ତ୍ରୀ, ପୁଅ, ଝିଅ, ବାପା-ମାଆ ଗୋଟିଏ ପାତ୍ରରେ ବସି ସେବନ କରିବାର ବିଧି ସମାଜକୁ ଦେଉଅଛି ନୂତନ ଆଦର୍ଶ । ପ୍ରତ୍ୟହ ଲକ୍ଷ ଲକ୍ଷ ଭକ୍ତ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ଓ ପ୍ରସାଦ ସେବନ କରିବାପାଇଁ ଛୁଟି ଆସଥାନ୍ତି ଦୂରଦୂରାନ୍ତରୁ ଶ୍ରୀମନ୍ଦିର ପୀଠକୁ । ମହାପ୍ରସାଦକୁ ସଙ୍ଗରେ ନେଇ ଓ ତାହାକୁ ଶୁଖାଇ ନିର୍ମାଲ୍ୟ କରି ଗୃହଠାକୁରଙ୍କ ପରି ଘରେ ସାଇତି ରଖିଥାନ୍ତି ବର୍ଷ ବର୍ଷ ଧରି । ତାହାକୁ ସମସ୍ତ ଧାର୍ମିକ କାର୍ଯ୍ୟରେ ରଖି ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନାମରେ ପୂଜା କରିବାର ବିଧି ଭକ୍ତମାନଙ୍କର ମଙ୍ଗଳ କାମନା କରିଥାଏ । କଥାରେ ଅଛି ବିଶ୍ୱାସ ମୂଳେ ଭଗବାନ । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଓ ଏହାର ମହାପ୍ରସାଦ ସେବନ ଫଳରେ ଶତଜନ୍ମର ପାପ ମୋଚନ ହୋଇ ଶତଜନ୍ମର ଧର୍ମ ଅର୍ଜନ ହୋଇଥାଏ ବୋଲି ଦୃଢ଼ ଆତ୍ମବିଶ୍ୱାସ ସୃଷ୍ଟି କରିପାରିଛି, ଯାହାକି ଅନ୍ୟକୌଣସି ଭୋଗରେ ସେପରି ମହକ ନଥାଏ । ଏହାକୁ ସେବନ କରି ଭକ୍ତମାନେ ପରମ ଆନନ୍ଦ ଓ ତୃପ୍ତି ପାଇଥାନ୍ତି । ମହାପ୍ରସାଦରେ ପିଣ୍ଡଦାନ ଦେଲେ ଗୟା ଶ୍ରାଦ୍ଧ ଦେବାର ସମତୁଲ୍ୟ ଅଟେ ଓ ପିତୃଲୋକେ ମୁକ୍ତି ପାଇଥାନ୍ତି । ସର୍ବୋପରି ଏହାର ସେବନ ମାନସିକତାରେ ଆତ୍ମବିଶ୍ୱାସ ଲାଭ ହେବା ସଙ୍ଗେ ସଙ୍ଗେ ଶରୀରରେ ସୃଷ୍ଟି ହୋଇଥାଏ ଅମୃତ ପରି ପବିତ୍ରତା ।

ସାଧାରଣତଃ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦୁଇ ପ୍ରକାର ଭୋଗ ସମର୍ପିତ ହୋଇଥାଏ । ଯଥା : ସଙ୍ଖୁଡ଼ି ଓ ନିଃସଙ୍ଖୁଡ଼ି । ଅନ୍ନ, ଡାଲି, କାନେକା, ଡାଲମା, ବେସର, ଶାଗ, ଖଟା, ମହୁର ଇତ୍ୟାଦିକୁ ସଂଖୁଡ଼ି ଭୋଗ ଓ ଖଜା, ଫେଣୀ, ଆରିଷା, ପୁଳି, ନାଡ଼ି ଇତ୍ୟାଦିକୁ ନିଃସଙ୍ଖୁଡ଼ି ଭୋଗ

କୁହାଯାଇଥାଏ । ଦୈନିକ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଖରେ ବିଭିନ୍ନ ସମୟରେ ୫୬ପ୍ରକାରର ଭୋଗ ସମର୍ପିତ ହୋଇଥାଏ । ଏହାକୁ ୫୬ପଉଟି ଭୋଗ କୁହାଯାଇଥାଏ । ଏହି ସମସ୍ତ ପ୍ରକାରର ଭୋଗ ମନ୍ଦିର ଭିତରେ ଆନନ୍ଦବଜାରରେ ବିକ୍ରୟ ହୋଇଥାଏ । ମହାପ୍ରସାଦ ଶୁଖିଗଲା ପରେ ନିର୍ମାଲ୍ୟରେ ପରିଣତ ହୋଇଥାଏ । ଏହି ନିର୍ମାଲ୍ୟ ପ୍ରସ୍ତୁତପାଇଁ ମନ୍ଦିର ଭିତରେ ଏକ ସ୍ଥାନ ଅଛି, ଯାହାକୁ ନିର୍ମାଲ୍ୟଖଳା ବୋଲି କୁହାଯାଇଥାଏ । ଏହା ମନ୍ଦିରର ନୈରତ କୋଣରେ କୂର୍ମବେଢ଼ା ଓ ମେଘନାଦ ପାଚେରୀ ମଧ୍ୟରେ ଅବସ୍ଥିତ । ମହାପ୍ରସାଦ ବେଶି ଦିନ ରହିପାରେ ନାହିଁ । କିନ୍ତୁ ନିର୍ମାଲ୍ୟ ବର୍ଷ ବର୍ଷ ଧରି ରହିଥାଏ । ତେଣୁ ନିର୍ମାଲ୍ୟ ପ୍ରତ୍ୟେକ ଓଡ଼ିଆ ଘରେ ମହାପ୍ରସାଦର ବିକଳ୍ପ ରୂପେ ରହି ପୂଜା ପାଇଥାଏ । ମହାପ୍ରସାଦର ସେବନ ବେଳେ ବିଭିନ୍ନ ସତର୍କତା ଅବଲମ୍ବନ କରିବାକୁ ପଡ଼ିଥାଏ । ଏହି ସତର୍କତାକୁ ଅବମାନନା କଲେ ଶରୀରରେ ବିଭିନ୍ନ ରୋଗ ବ୍ୟାଧି ହୋଇଥାଏ । ଅତୀତରେ ଏହାର ବହୁଳ ଦୃଷ୍ଟାନ୍ତମାନ ଅଛି । ଏହି ସତର୍କତା ହେଲା କୌଣସି ଆସନରେ ବସି ସେବନ କରାଯାଏ ନାହିଁ । ଘର ତିଆରି ଖାଦ୍ୟ ସହିତ ଖିଆଯାଇନଥାଏ । ଖାଇ ସାରିବା ପରେ ହାତ ଓ ଏହାର ବାସନକୁସନ କୌଣସି ନଳା ବା ଅଇଁଠା ସ୍ଥାନରେ ନଧୋଇ ପୃଥକ ସ୍ଥାନରେ ଧୌତ ହୋଇଥାଏ ।

କେବଳ ଓଡ଼ିଶା କାହିଁକି ସମଗ୍ର ଭାରତର କୋଣ ଅନୁକୋଣରେ ମହାପ୍ରସାଦର ଚାହିଦା ଓ ମହତ୍ତ୍ୱ ଅତ୍ୟନ୍ତ ଆଦରଣୀୟ ଓ ପୂଜନୀୟ ହୋଇପାରିଛି ।

* * * * * * *

# କୋଇଲି ବୈକୁଣ୍ଠ



କୋଇଲି ବୈକୁଣ୍ଠ ନାମଟି ଶୁଣିଲେ କାହିଁକି, କେଜାଣି ଶରୀରଟି ଶିହରି ଉଠିବା ସଙ୍ଗେ ସଙ୍ଗେ ମନ ଭିତରେ ବୈରାଗ୍ୟ ଭାବ ସୃଷ୍ଟି ହୋଇଥାଏ । ଶ୍ରୀମନ୍ଦିରରେ ସହସ୍ରାଧିକ ପୀଠ, ମଣ୍ଡପ, କୁଣ୍ଡ, କୁଞ୍ଜ ଓ ମନ୍ଦିର ଥିଲେ ମଧ୍ୟ ଏହି ପୀଠଟି ବିଶେଷ ଗୁରୁତ୍ୱ ବହନ କରିଅଛି । କାରଣ ମାନବଙ୍କ ପରି ଶ୍ରୀଜଗନ୍ନାଥଙ୍କର ଜନ୍ମ ଓ ମୃତ୍ୟୁ ଲୀଳା ଏଠାରେ ପ୍ରକଟିତ ହୋଇଥାଏ । ଜୀବନର ଆଦ୍ୟ କାର୍ଯ୍ୟ ଜନ୍ମ ଓ ଶେଷ କାର୍ଯ୍ୟ ମୃତ୍ୟୁ । ମୃତ୍ୟୁ ପରେ ପାର୍ଥିବ ଶରୀର ଦାହ କିମ୍ୱା ସମାଧିସ୍ଥ ହୋଇଥାଏ । ଶ୍ରୀପ୍ରଭୁମାନଙ୍କର ଏହି ଦୁଇଟି ଲୀଳା କୋଇଲି ବୈକୁଣ୍ଠରେ ହେଉଥିବାରୁ, ଏହି ପୀଠର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ । ସେଥିପାଇଁ ଏହି ପୀଠଟି ଦୁଇଟି ନାମରେ ନାମିତ । ଯଥା ଶ୍ରୀପ୍ରଭୁମାନଙ୍କର ନବକଳେବର ସମୟରେ ଦାରୁବିଗ୍ରହ ନିର୍ମାଣ ପାଇଁ ଏହାର ନାମ ଦାରୁମଣ୍ଡପ ବା ରୂପମୟ ବୈକୁଣ୍ଠଧାମ ଓ ମୃତ୍ୟୁପରେ ଦାରୁ ସମାଧି ପାଇଁ ଏହାର ନାମ ଶ୍ମଶାନ କିମ୍ୱା କୋଇଲି ବୈକୁଣ୍ଠ କୁହାଯାଉଅଛି । ଏତଦ୍‌ବ୍ୟତୀତ ଏହି ପୀଠର ପ୍ରାକୃତିକ ସୌନ୍ଦର୍ଯ୍ୟ ମାଧୁରୀ ଅତ୍ୟନ୍ତ ମନୋହର ।

କୋଇଲି ବୈକୁଣ୍ଠ ପୀଠଟି ଶ୍ରୀମନ୍ଦିରର ଉତ୍ତର ଓ ପଶ୍ଚିମ ଦିଗରେ ତଥା କୂର୍ମ ବେଢ଼ା ଓ ମେଘନାଦ ପାଚେରି ମଧ୍ୟରେ ଅବସ୍ଥିତ । ଏହା ୨୫୦ଫୁଟ ଦୈର୍ଘ୍ୟ ଓ ପ୍ରସ୍ଥ ୧୫୦ଫୁଟ ବିଶିଷ୍ଟ ଏକ ଆୟତାକାର କ୍ଷେତ୍ର । ଶ୍ରୀମନ୍ଦିରର ଉତ୍ତରଦ୍ୱାରରେ ଥିବା ଗୁମୁଟି ଅତିକ୍ରମ କରି

ସୋପାନଗୁଡ଼ିକର ଡାହାଣପଟରେ କୋଇଲି ବୈକୁଣ୍ଠ ପଡ଼ିଥାଏ । ସେହିପରି ଶ୍ରୀମନ୍ଦିରରୁ ବାହାରି ଉତ୍ତରଦ୍ୱାର ଦେଇ ଆସିବା ବାଟରେ ବାମପଟେ ପଡ଼ିଥାଏ ଏହି ପୀଠ । ଏହି ପୀଠ ପ୍ରବେଶ ପଥର ଦ୍ୱାର ଦେଶରେ ଜୟ ବିଜୟ ନାମକ ମୂର୍ତ୍ତି ଦୁଇଟି ସତେ ଯେପରି ଭକ୍ତମାନଙ୍କୁ ପାଛୋଟି ନେବାପାଇଁ ଅପେକ୍ଷାରତ । ଏହାକୁ ଅତିକ୍ରମ କରି ଆଗକୁ ଗଲେ ଡାହାଣ ପଟେ ପଡ଼ିଥାଏ ଦୁଇ ମହଲା ବିଶିଷ୍ଟ ଏକ ସୁରମ୍ୟ ଅଟ୍ଟାଳିକା ଯାହାକୁ ବୈକୁଣ୍ଠଧାମ କୁହାଯାଏ । ଏହି ଧାମ ସମ୍ମୁଖରେ ସୁଶୋଭିତ କରୁଛି ସିମେଣ୍ଟରେ ନିର୍ମିତ ଚାରୋଟି ମୂର୍ତ୍ତି । ଯଥା :- ଗରୁଡ଼, ହନୁମାନ, ସୁଗ୍ରୀବ ଓ ବିଭୀଷଣ । ରେଲିଂଦ୍ୱାରା ଆବୃତ ହୋଇ ରହିଛି ଦୁଇଟି ଦ୍ୱାର । ପୂର୍ବପଟଦ୍ୱାର ଦେଇ ଭିତରକୁ ଗଲେ ଦେଖାଯାଏ କେତେ ଗୁଡ଼ିଏ କୋଠରୀ । ସେଥିମଧ୍ୟରୁ ଗୋଟିଏ କୋଠରୀ ଯାହାର ଲମ୍ବ ୩୦ଫୁଟ ଓ ପ୍ରସ୍ଥ ୨୦ଫୁଟ । ଏହି କୋଠରୀରେ ନବକଳେବର ସମୟରେ ବିଭିନ୍ନ ସ୍ଥାନରୁ ଦାରୁଗୁଡ଼ିକ ସଂଗୃହୀତ ହୋଇ ରହିଥାଏ । ଏହି ଘରେ ଖଚିତ ହୋଇଥିବା ଅନେକ ସୂକ୍ଷ୍ମ କାରୁକାର୍ଯ୍ୟର ସୁନ୍ଦର ଭାସ୍କର୍ଯ୍ୟ ଅତ୍ୟନ୍ତ ମନୋହର ଓ ହୃଦୟସ୍ପର୍ଶୀ । ତଳମହଲାଠାରୁ ଉପରମହଲାର ଗଠନ ଶୈଳୀ, ରଙ୍ଗ ଓ ବିଭିନ୍ନ ଫୁଲ ପତ୍ର ଚିତ୍ର ଗୁଡ଼ିକର ଶୋଭା ଅବର୍ଣ୍ଣନୀୟ ଅଟେ । ଏପରିକି ଏହି ଅଟ୍ଟାଳିକା ବୈକୁଣ୍ଠ ନାମର ଯଥାର୍ଥତା ପ୍ରତିପାଦନ କରିପାରିଛି । ନବକଳେବର ସମୟରେ ଦାରୁଘରର ପଛପଟେ ଅର୍ଥାତ୍ ଉତ୍ତର ପଶ୍ଚିମ ଦିଗରେ କେତେଗୁଡ଼ିଏ ଅସ୍ଥାୟୀ ଗୃହ ନିର୍ମାଣ ହୋଇ ଦାରୁ ନିର୍ମାଣ, ସ୍ନାନଗୃହ, ଯଜ୍ଞମଣ୍ଡପ ଅଧିବାସଗୃହ, ନୃସଂହମନ୍ଦିର, ବ୍ରହ୍ମ ପରିବର୍ତ୍ତନ ଗୃହ ଇତ୍ୟାଦିର କାର୍ଯ୍ୟ ସମ୍ପାଦନା ହୋଇଥାଏ ।

ନୂତନଦାରୁ ମୂର୍ତ୍ତିଗୁଡ଼ିକରେ ବ୍ରହ୍ମ ପ୍ରବେଶ କଲାପରେ, ପରିତ୍ୟକ୍ତ (ପୁରାତନ) ଦାରୁଙ୍କୁ ସମାଧିସ୍ଥ ଦିଆଯିବା ପୀଠକୁ କୋଇଲି ବୈକୁଣ୍ଠ କୁହାଯାଇଥାଏ । ଏହି ପୀଠଟି ୧୫ଫୁଟ ଲମ୍ବ ଓ ୧୦ଫୁଟ ପ୍ରସ୍ଥ ବିଶିଷ୍ଟ କ୍ଷେତ୍ର । ଏହାର ଚତୁଃପାର୍ଶ୍ୱରେ ଶିଆଳୀ, ମାଧବୀ, ମଧୁମାଳତୀ ଆଦି ତରୁଲତା ଦ୍ୱାରା ଆଚ୍ଛନ୍ନ ହୋଇ କୁଞ୍ଜବନ ପରି ଶୋଭା ପାଉଅଛି । ଏହି କୁଞ୍ଜବନ ଭିତରେ ଶ୍ରୀଜୀଉମାନଙ୍କୁ ସମାଧିସ୍ଥ ଦିଆଯିବାପାଇଁ ତିନୋଟି ସ୍ଥାନ ସୂଚିତ ହୋଇଅଛି । ଯାହାକୁ ଦେଖିଲେ ଜାଣିହେବ ଯେ, ଏହି ସ୍ଥାନଟି ସମାଧିପୀଠ ଅଟେ । ଏହାର ଚାରିପାଖରେ ଗୋଲାକାର ରୂପେ ଫୁଲ ଆଚ୍ଛନ୍ନ ହୋଇଅଛି । ସମାଧିପୀଠର ପୂର୍ବ ଦିଗରେ ଏକ ଛୋଟ ଶ୍ମଶାନଚଣ୍ଡୀ ମନ୍ଦିର ରହିଅଛି । ଶ୍ରୀପ୍ରଭୁମାନଙ୍କୁ ସମାଧିସ୍ଥ ଦେବାପୂର୍ବରୁ କାଠ ସୁଆଁସିଆ ସେବକମାନେ ୧୦ଫୁଟ ଲମ୍ବ ଓ ପ୍ରସ୍ଥକୁ ନେଇ ୮ଫୁଟ ଗଭିର ଏକ ଗାତ ଖୋଳିଥାନ୍ତି । ମାଦଳାପାଞ୍ଜିରେ ଏହି ଗର୍ଭଗୃହକୁ "ଭୂଇଁଭଣ୍ଡାର" ବୋଲି ବର୍ଣ୍ଣିତ ହୋଇଅଛି । ଏହି ଗର୍ଭଗୃହ ତଳେ ୧୦ଫୁଟ ଲମ୍ବ ଓ ପ୍ରସ୍ଥର ମାର୍ବଲ ଖୋଦିତ ହୋଇଥାଏ । ଏହି ପୀଠକୁ କୋଠସୁଆଁସିଆ ସେବକମାନେ ପାଳିକରି ଜଗିବା ସଙ୍ଗେ ସଙ୍ଗେ ଗଛଗୁଡ଼ିକର ଯତ୍ନ ନେଇଥାଆନ୍ତି ।

ଶ୍ରୀମନ୍ଦିରର ସଂସ୍କୃତି ଓ ପରମ୍ପରା ରୀତିନୀତି ଅନୁସାରେ ସେବାୟତମାନେ ନିର୍ଦ୍ଦିଷ୍ଟ ତିଥି ଓ ଶୁଭ ମୁହୂର୍ତ୍ତରେ ବିଧିବିଧାନ ସହ ଏହି ଦୁଇଟି କାର୍ଯ୍ୟ ତଥା ନୂତନ ଦାରୁ ନିର୍ମାଣ ଓ ପରିତ୍ୟକ୍ତ ଦାରୁ ସମାଧିସ୍ଥ କାର୍ଯ୍ୟ ସମ୍ପାଦନ କରିଥାନ୍ତି । ପ୍ରକାଶଥାଉକି ଏହି କାର୍ଯ୍ୟ ପ୍ରତ୍ୟେକବର୍ଷ ହୋଇନଥାଏ । ଯେଉଁବର୍ଷ ଯୋଡ଼ା ଆଷାଢ଼ ମାସ ପଡ଼ିଥାଏ, ସେହିବର୍ଷ ନବକଳେବର ପଡ଼ିଥାଏ । ସାଧାରଣତଃ ୧୨ବର୍ଷରୁ ୧୯ବର୍ଷ ମଧ୍ୟରେ ପଡ଼ିଥାଏ । ଯେଉଁବର୍ଷ ନବକଳେବର ପଡ଼ିଥାଏ, ସେହିବର୍ଷ ତାର ବିଭିନ୍ନ ପର୍ଯ୍ୟାୟ କାର୍ଯ୍ୟ ତଥା ବନଯାଗ ଯାତ୍ରା, ମା'ମଙ୍ଗଳାଙ୍କର ଦାରୁ ଚିହ୍ନଟପାଇଁ ଆଜ୍ଞାମାଳ ପ୍ରଦାନ, ଦାରୁଚ୍ଛେଦନ ଓ ଦାରୁ ସଂଗ୍ରହ ପରେ ମୂର୍ତ୍ତି ନିର୍ମାଣ ପାଇଁ ଥିବା ବୈକୁଣ୍ଠପୁରରେ ମହଜୁଦ୍ ରଖାଯାଇଥାଏ । ବିଭିନ୍ନ ସେବକମାନଙ୍କଦ୍ୱାରା ପର୍ଯ୍ୟାୟକ୍ରମେ ଦାରୁବିଗ୍ରହ ନିର୍ମାଣ, ସ୍ନାନ, ଯଜ୍ଞ, ପୂଜାବିଧି ଇତ୍ୟାଦି ହୋଇସାରିବା ପରେ ଆଷାଢ଼ମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ପୁରାତନ ବିଗ୍ରହଗୁଡ଼ିକରୁ ବ୍ରହ୍ମ ଆଣି ନୂତନ ବିଗ୍ରହରେ ରଖାଯାଇଥାଏ । ଏହାକୁ ବ୍ରହ୍ମ ପରିବର୍ତ୍ତନ କୁହାଯାଇଥାଏ । ଏହି କାର୍ଯ୍ୟ ଅତ୍ୟନ୍ତ ଗୁପ୍ତଭାବରେ ମଧ୍ୟରାତ୍ରିରେ ପୁରୁଖା ଦଇତାପତିମାନଙ୍କ ଦ୍ୱାରା ସମ୍ପାଦନ ହୋଇଥାଏ ।

ଆଷାଢ଼ ମାସ ଶୁକ୍ଳପକ୍ଷ ପ୍ରତିପଦା ଦିନ ନୂତନ ବିଗ୍ରହଙ୍କୁ ଅଣସର ଘରେ ରଖାଯାଇ, ପୁରାତନ ବିଗ୍ରହଗୁଡ଼ିକୁ କୋଇଲି ବୈକୁଣ୍ଠର ପୂର୍ବରୁ ପ୍ରସ୍ତୁତ ହୋଇଥିବା ସମାଧିସ୍ଥ ପୀଠକୁ ଅଣାଯାଇଥାଏ । ଏହି ପୀଠର ଗର୍ଭଗୃହରେ ନୂତନବସ୍ତ୍ର ପକାଯାଇ ପରିତ୍ୟକ୍ତ ବିଗ୍ରହମାନଙ୍କୁ ଶୁଆଇ ଦିଆଯାଇଥାଏ । ଏଥି ସହିତ ଅନ୍ୟାନ୍ୟ କାଷ୍ଠ ବିଗ୍ରହ ଛେଦନ ହୋଇ ବଳକା ଥିବା ଦାରୁ, ରଥଯାତ୍ରାରେ ବ୍ୟବହାର ହେଉଥିବା ପୁରୁଣା ଘୋଡ଼ା, ସାରଥି ପାର୍ଶ୍ୱଦେବଦେବୀଙ୍କୁ ସମାଧିସ୍ଥ ଦିଆଯାଇଥାଏ । ଆଉ ମଧ୍ୟ ମହାପ୍ରଭୁଙ୍କ ପାଇଁ ପ୍ରତିଦିନ ବିପୁଳ ପରିମାଣର ଭୋଗସାମଗ୍ରୀ ପ୍ରସ୍ତୁତ ହୋଇଥାଏ । କୌଣସି କାରଣରୁ ଯେଉଁଦିନ ଏହି ଭୋଗସାମଗ୍ରୀ ମାରା ହୋଇଥାଏ, ତାହା ଶ୍ରୀମହାପ୍ରଭୁଙ୍କ ପାଖରେ ଭୋଗ ନହୋଇ କୋଇଲି ବୈକୁଣ୍ଠରେ ପୋତା ହୋଇଥାଏ ।

ଏହି ପବିତ୍ର ପୀଠଟି ଶ୍ରୀମହାପ୍ରଭୁଙ୍କର ବୈକୁଣ୍ଠଧାମ ଓ ଶ୍ମଶାନ ହୋଇଥିଲେ ମଧ୍ୟ ଏହା ଗୋଟିଏ ତୀର୍ଥକ୍ଷେତ୍ର ରୂପେ ବିବେଚିତ । କାରଣ ଏହି ପୀଠର ପ୍ରାକୃତିକ ସୌନ୍ଦର୍ଯ୍ୟର ପରିବେଶ ଅତ୍ୟନ୍ତ ମନୋହର ଓ ଆନନ୍ଦଦାୟକ । ଶୀତଳ ସମୀରରେ ରଙ୍ଗ ବେରଙ୍ଗର ବିଭିନ୍ନ ଫୁଲର ସୁଗନ୍ଧ ଏହି ପରିବେଶକୁ ମହକାଇ ଦେବା ସଙ୍ଗେ ସଙ୍ଗେ ସବୁଜ କାନନର ଦୃଶ୍ୟ ମଧ୍ୟ ଭକ୍ତମାନଙ୍କର ହୃଦୟ ଓ ମନକୁ ଆକର୍ଷିତ କରିଥାଏ । ଏହି ପୀଠରେ ପଦାର୍ପଣ କଲେ ମନଭିତରେ ଥିବା ସମସ୍ତ ପ୍ରକାର ଦୁଶ୍ଚିନ୍ତା ତଥା ବାଦ, ଛେଦ, ଲୋଭ, ମୋହ, ମାୟା, କାମ, କ୍ରୋଧ, ଆସକ୍ତି ଉଭେଇ ଯାଇ ସୃଷ୍ଟି ହୋଇଥାଏ ଶାନ୍ତି, ମୈତ୍ରୀ, ଐକ୍ୟ, ସଦ୍‌ଭାବ ତଥା ଐଶ୍ୱରିକ ଭାବ । ଏଥି ସହିତ ଏହି ପୀଠରୁ ଦୈନିକ ବିପୁଳ ପରିମାଣର ଫୁଲ ଓ ତୁଳସୀ ପତ୍ର ସଂଗ୍ରହ ହୋଇ ଶ୍ରୀଜଗନ୍ନାଥଙ୍କ ସେବା

ରୀତିରେ ବ୍ୟବହାର ହୋଇଥାଏ । ଫୁଲ ଓ ତୁଳସୀମାଳ ତିଆରି ପାଇଁ ଏଠାରେ ଏକ ଛୋଟିଆ ଘର ରହିଅଛି ।

କୋଇଲି ବୈକୁଣ୍ଠର ନାମକରଣ ସମ୍ପର୍କରେ ବିଭିନ୍ନ ମତ ଜଣାଯାଏ । କିନ୍ତୁ ପ୍ରକୃତରେ ଏହାର ନାମ କୋଇଲି ବୈକୁଣ୍ଠ ପରିବର୍ତ୍ତେ କୈବଲ୍ୟ ବୈକୁଣ୍ଠ ଥିଲା । କାଳକ୍ରମେ ଏହାରନାମ କୈବଲ୍ୟ ଶବ୍ଦଟି ଅପଭ୍ରଂଶ ହୋଇ କୋଇଲି ହୋଇଅଛି ।

* * * * * * *

# ଶ୍ରୀଜଗନ୍ନାଥଙ୍କ ପରମ୍ପରାରେ ଗଜପତି ମହାରାଜା



ଶ୍ରୀକ୍ଷେତ୍ରସ୍ଥିତ ବଡ଼ ଦେଉଳର ରତ୍ନସିଂହାସନରେ ବିରାଜିତ ବିଶ୍ୱ ବ୍ରହ୍ମାଣ୍ଡର ପତି, ସର୍ବଦେବାଧିରାଜ ତଥା ଜଗତର ନାଥ ଶ୍ରୀ ଜଗନ୍ନାଥ ରୂପେ ଅଭିହିତ କରାଯାଇଅଛି । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି ଯେ, 'ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମ' । ତାଙ୍କର ପୂଜା ପଦ୍ଧତି, ରୀତିନୀତି, ସଂସ୍କୃତି ଓ ଗଜପତି ମହାରାଜାଙ୍କର ପରମ୍ପରା ଆଦିରୁ ଜଣାପଡ଼େ ଯେ, ସେ ଅଟନ୍ତି ମାନବୀୟ ଧର୍ମର ପ୍ରତୀକ । ସେହି ଦୁର୍ଲ୍ଲଭ ଠାକୁରଙ୍କର ସମସ୍ତ କାର୍ଯ୍ୟର ମୁଖ୍ୟ ପୁରୋଧା କେହି ନୁହନ୍ତି, ସେ ଅଟନ୍ତି ଓଡ଼ିଶାର ଗଜପତି ମହାରାଜା । ତେଣୁ ବଂଶାନୁକ୍ରମେ ସେ ଅଟନ୍ତି ଶ୍ରୀଜଗନ୍ନାଥଙ୍କର ଆଦ୍ୟ ଓ ମୁଖ୍ୟ ସେବକ । ଆଉ ମଧ ତାଙ୍କୁ ଓଡ଼ିଶାର ଠାକୁର ରାଜା କୁହାଯାଏ । ଯେପରି କାଶୀରାଜାଙ୍କୁ ନରପତି, ମହାରାଷ୍ଟ୍ର ରାଜାଙ୍କୁ ଛତ୍ରପତି ଓ ମଦ୍ର ରାଜ୍ୟର ରାଜାଙ୍କୁ ଅଶ୍ୱପତି କୁହାଯାଏ, ସେହିପରି ଓଡ଼ିଶାର ରାଜାଙ୍କୁ ଗଜପତି କୁହାଯାଏ । ଗଜପତି ମହାରାଜାଙ୍କୁ ଶ୍ରୀବିଷ୍ଣୁଙ୍କର ଚଳନ୍ତି ପ୍ରତିମା ରୂପେ ବିବେଚିତ କରାଯାଇଥାଏ । କାରଣ ସମଗ୍ର ଓଡ଼ିଶାର ପ୍ରଜା, ଜଗନ୍ନାଥପ୍ରେମୀ ଓ ସେବାୟତମାନେ ମଧ୍ୟ ଗଜପତି ମହାରାଜାଙ୍କୁ ବିଷ୍ଣୁଙ୍କ ପରି ସମ୍ମାନ ପ୍ରଦର୍ଶନ କରିଥାନ୍ତି । ଠାକୁରରାଜାଙ୍କ ନାମ ପୂର୍ବରୁ ବିଭିନ୍ନ ପ୍ରକାର ଉପାଧି ଭୂଷଣ ହୋଇ ଲେଖାଯାଇଥାଏ । ଯଥା ଶ୍ରୀ ଶ୍ରୀ ଶ୍ରୀମଦ୍ ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ କଳବର୍ଗେଶ୍ୱର ତ୍ରିକଳିଙ୍ଗାଧିପତି ବୀରାଧୀବର ଅଭିରାୟ ଭୂତ ଭୈରବ ଦୁଃସହ ଦୁଃଶାସନ

ଅନିକରଣେ ରାଉତରାୟ ଅତୁଳ ପରାକ୍ରମ ସଂଗ୍ରାମେ ସହସ୍ରବାହୁ କ୍ଷତ୍ରିୟ କୁଳ ଧୂମକେତୁ ଶ୍ରୀ ଶ୍ରୀ ଗଜପତି । ଗଜପତି ଅନ୍ତ, କର୍ମଣ ଚୋଡ଼ଗଙ୍ଗ ଦେବ (୧୦୭୭) ଖ୍ରୀଷ୍ଟାବ୍ଦ ଠାରୁ ଆରମ୍ଭ କରି ବର୍ତ୍ତମାନର ଗଜପତି ମହାରାଜା ୪ର୍ଥ ଦିବ୍ୟସିଂହ ଦେବ ୧୯୭୧ ଖ୍ରୀଷ୍ଟାବ୍ଦରୁ ଅଦ୍ୟାବଧି ପର୍ଯ୍ୟନ୍ତ ଏହି ମହାନ ଗଜପତି ପରମ୍ପରା ଚାଲି ଆସୁଅଛି ପ୍ରାୟ ଦୀର୍ଘ ୧୦୦୦ବର୍ଷ ଧରି । ଯେଉଁ ଠାକୁରଙ୍କୁ ଦର୍ଶନ କରିବାପାଇଁ ସ୍ୱର୍ଗର ଦେବତାମାନେ ଅପେକ୍ଷାରତ, ସେହି ମହିମାଧାରୀ, ଶ୍ରୀଜଗନ୍ନାଥଙ୍କର ଆଦ୍ୟ ଓ ମୁଖ୍ୟ ସେବକ ରୂପେ ସୁଯୋଗ ପାଇ ନିଜକୁ ଧନ୍ୟ ମଣିଥାନ୍ତି । ଭକ୍ତ ଓ ଭଗବାନଙ୍କ ପରି ନିବିଡ଼ ସମ୍ପର୍କ ଅନ୍ତର୍ନିହିତ ଅଛି ପରମ ଭକ୍ତ ଗଜପତି ମହାରାଜା ଓ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ।

ଯାହାର ଅନ୍ତ ନଥାଏ, ସେ ଅନନ୍ତ, ସେପରି ଅସରନ୍ତି, ଅମାପ, ଅସୀମ, ଅଦୃଶ୍ୟ, ଅସ୍ପର୍ଶ, ଅଚିନ୍ତ୍ୟ, ନିରାକାର ଆଦି ଗୁଣରେ ଆଧାରିତ, ସେହି ମହିମାଧାରୀ ଠାକୁର କେହି ନୁହଁନ୍ତି, ସେ ଅଟନ୍ତି ନୀଳକନ୍ଦର ବାସୀ ଦାରୁମୂର୍ତ୍ତିମୁରାରି, ଚକାଡୋଳିଆ, କହ୍ନେଇ ସାଆନ୍ତ ଶ୍ରୀଜଗନ୍ନାଥ । ଏହି ଠାକୁରଙ୍କର ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ, ସତ୍ୟଯୁଗରେ ନୀଳକନ୍ଦରର ଶିଖର ଅଂଶରେ ଥିବା ଏକ କଳ୍ପବୃକ୍ଷ କୁଞ୍ଜରେ ଗୁପ୍ତଭାବରେ ବିରାଜିତ ହୋଇ ବିଶ୍ୱାବସୁ ନାମକ ଏକ ଶବରଦ୍ୱାରା ପୂଜା ପାଉଥିଲେ । ମାଳବ ରାଜ୍ୟର ପରମ ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନ ନାମକ ଏକ ରାଜାଙ୍କ ଦ୍ୱାରା ସେଠାରେ (ନୀଳକନ୍ଦର) ଏକ ମନ୍ଦିର ନିର୍ମାଣ ହୋଇ ଦାରୁମୂର୍ତ୍ତି ରୂପେ ପୂଜା ପାଇବା ପାଇଁ ଇଚ୍ଛା ପ୍ରକଟ କରିଥିଲେ । ଶ୍ରେଷ୍ଠ ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନ ବହୁ ବାଧାବିଘ୍ନ ଓ ଘାତ ପ୍ରତିଘାତ ସମ୍ମୁଖୀନ ହୋଇ ସହସ୍ର ସହସ୍ର ବର୍ଷଧରି ମହର୍ଷି ନାରଦଙ୍କ ପରାମର୍ଶ କ୍ରମେ ଦାରୁମୂର୍ତ୍ତିମାନଙ୍କୁ ପ୍ରତିଷ୍ଠା କରାଇଥିଲେ । ଆଜି ଯେଉଁ ଦାରୁମୂର୍ତ୍ତିମାନ ଶ୍ରୀକ୍ଷେତ୍ରସ୍ଥିତ ବଡ଼ଦେଉଳର ରତ୍ନସିଂହାସନରେ ପୂଜିତ ହେଉଛନ୍ତି ସେ ହେଉଛନ୍ତି ସତ୍ୟଯୁଗର ନୀଳକନ୍ଦରରେ ବିରାଜିତ ନୀଳମାଧବଙ୍କର ସାକ୍ଷାତ୍ ବ୍ରହ୍ମ । ଠିକ୍ ସେହିପରି ଶ୍ରୀଜଗନ୍ନାଥଙ୍କର ଆଦ୍ୟ ଓ ମୁଖ୍ୟ ସେବକ ଓଡ଼ିଶାର ଠାକୁର ରାଜା ତଥା ଗଜପତି ମହାରାଜା ସତ୍ୟଯୁଗର ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ସ୍ୱରୂପ କହିଲେ ଅତ୍ୟୁକ୍ତି ହେବ ନାହିଁ । ଗଜପତି ମହାରାଜା କହିଲେ, ରାଜାରାଜୁଡ଼ାଙ୍କ ଶାସନ ଓ କ୍ଷମତାକୁ ବୁଝାଇ ନଥାଏ, କିନ୍ତୁ ସମର୍ପଣ, ଆଧ୍ୟାତ୍ମିକତା ଓ ପରମ୍ପରା ଇତ୍ୟାଦିକୁ ବୁଝାଇଥାଏ ।

ପ୍ରକାଶ ଥାଉକି ଯୁଗ ଯୁଗ ଧରି ଏହି ଠାକୁରଙ୍କର ସଂସ୍କୃତି, ପରମ୍ପରା, ରୀତିନୀତି, ଗଜପତିଙ୍କ ସେବା ନୀତି ଆଦି ସମ୍ପର୍କରେ କିଛି ଜଣାନଥିଲେ ବି, କିନ୍ତୁ ଇତିହାସ ସୃଷ୍ଟି ଓ ପ୍ରଚାର ପ୍ରସାର ଫଳରେ ଏହି ମହାନ ସଂସ୍କୃତି ପରମ୍ପରା ଲୋକ ଲୋଚନକୁ ଆସିଅଛି । ଶ୍ରୀଜଗନ୍ନାଥ ଯେପରି ସମଗ୍ର ବିଶ୍ୱବାସୀଙ୍କର ହର୍ତ୍ତାକର୍ତ୍ତା ଓ ଭାଗ୍ୟବିଧାତା ରୂପେ ବିଶ୍ୱାସ ଭାଜନ ସେପରି ଗଜପତି ମହାରାଜାଙ୍କର ସେବା ପରମ୍ପରା ବିଶେଷ ମହାନରୂପେ ସର୍ବଜନ ଆଦୃତ । କୁହାଯାଏ

ଯେ କେଶରୀ ବଂଶୀୟ ରାଜା ଜନ୍ମେଜୟ କେଶରୀ ରାଜତ୍ୱ ସମୟରେ (୫୨୦-୫୫୨ ଖ୍ରୀଷ୍ଟାବ୍ଦ) ସେଠାରେ ଥିବା ଏକ ଜରାଜୀର୍ଣ୍ଣ ପୁରାତନ ମନ୍ଦିରକୁ ସମ୍ପୂର୍ଣ୍ଣ ଭାଙ୍ଗି ଏକ ନୂତନ ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । ତତ୍‌ପରେ ତାଙ୍କ ପୁତ୍ର ଯଯାତି କେଶରୀ (୫୫୨-୫୯୮ ଖ୍ରୀଷ୍ଟାବ୍ଦ) ସେହି ମନ୍ଦିରର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିଥିଲେ । ଏହି ସମୟର ସଂସ୍କୃତି ସମ୍ପର୍କରେ ପ୍ରମାଣିକ ତଥ୍ୟ ମିଳେ ନାହିଁ । କିନ୍ତୁ ଗଙ୍ଗବଂଶୀୟ ରାଜା ଚୋଡ଼ଗଙ୍ଗ ଦେବ ସେହି ପବିତ୍ର କ୍ଷେତ୍ର ଉପରେ ଏକ ବିଶାଳକାୟ ନୂତନ ମନ୍ଦିର ନିର୍ମାଣ କରିଥିଲେ । ବିଭିନ୍ନ ପ୍ରକାର ପୂଜାନୀତି, ସଂସ୍କୃତି, ପରମ୍ପରା ଇତ୍ୟାଦିର ସୁବନ୍ଦୋବସ୍ତ କରାଇଥିଲେ । ଯାହାକି ଆଜି ସେହି ମନ୍ଦିର ମୁକସାକ୍ଷୀ ପରି ଦଣ୍ଡାୟମାନ । ସେହି ଦିନଠାରୁ କିଛି ବର୍ଷ ରାଜା ମହାରାଜାମାନେ ଘୋଷଯାତ୍ରା ପର୍ବ ଜାରି ରଖିଥିଲେ । କିନ୍ତୁ ବଡ଼ ଦୁଃଖ ଓ ପରିତାପର ଘଟଣା ଯେ ଥର ଥର କରି ବହୁବାର ରାଜନୈତିକ ସଙ୍କଟ ଓ ବହିଃଶତ୍ରୁଙ୍କ ଆକ୍ରମଣ ଫଳରେ ଶ୍ରୀମନ୍ଦିର ଛାଡ଼ି ବାହାରେ ଲୀଳା କରିଥିଲେ । ଏହି ପରିସ୍ଥିତିରେ ଓଡ଼ିଶାର ଗଜପତି ମହାରାଜାମାନେ ସେମାନଙ୍କ ଧନଜୀବନ ଠାରୁ ଅଧିକ ଭଲ ପାଉଥିବା ଶ୍ରୀଜଗନ୍ନାଥ ଓ ତାଙ୍କ ସଂସ୍କୃତି, ଗଜପତି ପରମ୍ପରା ଇତ୍ୟାଦିକୁ ଉଦ୍‌ଜୀବିତ ରଖିଛନ୍ତି । ଗଙ୍ଗବଂଶୀୟ ରାଜାଙ୍କ ପତନପରେ ଓଡ଼ିଶାର ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବଙ୍କ ସମୟରୁ ଶ୍ରୀଜଗନ୍ନାଥଙ୍କର ସଂସ୍କୃତି, ପରମ୍ପରା, ସେବାୟତ ଓ ଗଜପତିଙ୍କର ସେବାନୀତି ଇତ୍ୟାଦି ସମ୍ପର୍କର ପୂର୍ଣ୍ଣ ବିବରଣୀ ସ୍ୱୀକୃତି ଲାଭ କରିପାରିଛି । ୧୮୦୩ମସିହାରେ ଇଂରେଜ ସରକାର ଓଡ଼ିଶା ଆକ୍ରମଣ କରି ଶ୍ରୀଜଗନ୍ନାଥଙ୍କ ଅଚଳାଚଳ ଭୂସମ୍ପତ୍ତିକୁ ନିଜ ହାତକୁ ନେବାପାଇଁ ଉଦ୍ୟମ ଜାରି ରଖିଥିଲେ । କିନ୍ତୁ ତତ୍‌କାଳୀନ ମହାରାଣୀ ସୂର୍ଯ୍ୟମଣି ପାଟ ମହାଦେଈ ଇଂରେଜ ସରକାରଙ୍କ ବିରୁଦ୍ଧରେ ଏହି ଭୂସମ୍ପତ୍ତି ବ୍ୟାପାରରେ ଏକ ମୋକଦ୍ଦମା କରିଥିଲେ । ଏହି ମୋକଦ୍ଦମାରେ ପାଟରାଣୀ ବିଜୟଲାଭ କରିଥିଲେ । ବଂଶାନୁକ୍ରମେ ଗଜପତି ମହାରାଜାଙ୍କୁ ସେହି ଭୂସମ୍ପତ୍ତି ଓ ମନ୍ଦିର ଦାୟିତ୍ୱରେ ସୁପରିଟେଣ୍ଡେଣ୍ଟ ବା ପରିଚାଳକ ରୂପେ କାର୍ଯ୍ୟକରିବାକୁ ଇଂରେଜ ସରକାର ସ୍ୱୀକୃତି ପ୍ରଦାନ କରିଥିଲେ । ଏହି ମୋକଦ୍ଦମାରେ ପାଟରାଣୀଙ୍କ ଓକିଲରୂପେ ତତ୍‌କାଳୀନ ଓଡ଼ିଶାର ପ୍ରଖ୍ୟାତ ଆଇନଜୀବୀ ଉତ୍କଳ ଗୌରବ ମଧୁସୂଦନ ଦାସ ଲଢୁଥିଲେ । ସେ ଯେ କେବଳ ପାଟରାଣୀଙ୍କ ଓକିଲରୂପେ ଲଢୁଥିଲେ ତାହା ନୁହେଁ ସେ ଲଢୁଥିଲେ ଓଡ଼ିଶାର ମାନସମ୍ମାନ ତଥା ସ୍ୱାଭିମାନର ସୁରକ୍ଷା ପାଇଁ । ଏହିପରି ବହୁବାର ବହିଃଶତ୍ରୁଙ୍କ ଆକ୍ରମଣରୁ ଶ୍ରୀଜଗନ୍ନାଥଙ୍କୁ ସୁରକ୍ଷା ଦେବାରେ ଗଜପତି ମହାରାଜାମାନଙ୍କର ବୀରତ୍ୱ ଓ ସାହସିକତା ଓଡ଼ିଶାର ଗର୍ବ ଓ ଗୌରବର ଧ୍ୱଜା ତଥା ଶ୍ରୀଜଗନ୍ନାଥଙ୍କ ସଂସ୍କୃତିକୁ ବଜାୟ ରଖିପାରିଛି ।

ଶ୍ରୀମନ୍ଦିରର ମାନ, ସମ୍ମାନ ଓ ସ୍ୱାଭିମାନକୁ ସୁରକ୍ଷା ଦେବାରେ ଯେପରି ଗଜପତି ମହାରାଜାଙ୍କର ଗୁରୁଦାୟିତ୍ୱ, ସେହିପରି ମନ୍ଦିର ପରିଚାଳନା, ସଂସ୍କୃତି, ପୂଜାପଦ୍ଧତି, ମେଳା

ମହୋତ୍ସବ, ପର୍ବପର୍ବାଣି ଓ ମହାରାଜାଙ୍କର ପରମ୍ପରା ଇତ୍ୟାଦିରେ ସେପରି ଦାୟିତ୍ୱବହନ କରିଥାନ୍ତି । ଶାସ୍ତ୍ରୀୟ ମତବାଦାନୁସାରେ ଗଜପତି ମହାରାଜା ଯାତ୍ରାମାନଙ୍କରେ ଉପସ୍ଥିତ ରହି କିଛି କାର୍ଯ୍ୟ କରିବାର ବିଧିବିଧାନ ଅଛି । ପ୍ରକାଶଥାଉ କି ରଥଯାତ୍ରା ଓ ବାହୁଡ଼ାଯାତ୍ରା ଆରମ୍ଭରେ ରଥ ଉପରେ ଛେରାପହଁରା, ଚନ୍ଦନଯାତ୍ରା, ସ୍ନାନପୂର୍ଣ୍ଣିମା, ନବକଳେବରରେ ତାଙ୍କର ସେବାନୀତି ଏକାନ୍ତ ଅପରିହାର୍ଯ୍ୟ ଯାହାକୁ ଲେଖିବସିଲେ ଗୋଟିଏ ପୁରାଣ ହେବ । ଏହାର କିୟଦଂଶ ନିମ୍ନରେ ପ୍ରଦତ୍ତ ହୋଇଅଛି ।

ଗବେଷକ, ପ୍ରାବନ୍ଧିକ ଓ ଐତିହାସିକଙ୍କ ମତରେ ରଥଯାତ୍ରାରେ ଗଜପତି ମହାରାଜାଙ୍କର "ଛେରାପହଁରା" ପର୍ବଟି ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବଙ୍କ ସମୟରୁ ଆରମ୍ଭ ହୋଇଥିଲା । ଅତୀତରେ ତଥା ଗଜପତି ଦିବ୍ୟସିଂହଦେବଙ୍କ ରାଜୁତି ପର୍ଯ୍ୟନ୍ତ ଗଜପତି ମହାରାଜାମାନେ ରଥଯାତ୍ରାବେଳେ ଶ୍ରୀମନ୍ଦିର ପାହାଚଠାରୁ ସିଂହଦ୍ୱାର ଦେଇ ରଥପର୍ଯ୍ୟନ୍ତ ସୁବର୍ଣ୍ଣ ଖଡ଼ିକାରେ ଛେରାପହଁରା କରୁଥିଲେ । ତା'ପରେ ଶ୍ରୀଜୀଉମାନେ ପହଣ୍ଡି ହୋଇ ରଥ ଉପରକୁ ଯାଉଥିଲେ । କିନ୍ତୁ ଏହି ପ୍ରକାରର ଛେରାପହଁରା ପ୍ରଥା ଦିବ୍ୟସିଂହ ଦେବଙ୍କ ରୁଗ୍‌ଣ ପୁତ୍ର ରାଜା ମୁକୁନ୍ଦ ଦେବଙ୍କ ସମୟରୁ ବନ୍ଦ ହୋଇ ବର୍ତ୍ତମାନ ପ୍ରଚଳିତ ହେଉଥିବା ଛେରାପହଁରା ଚାଲୁଅଛି ।

ରଥଯାତ୍ରା ଦିନ ଅର୍ଥାତ୍ ଆଷାଢ଼ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଶ୍ରୀଜୀଉଙ୍କର ବିଧିବିଧାନ ସହ ପହଣ୍ଡି ହୋଇ ରଥାରୂଢ଼ ହେବାପରେ ସେବାୟତମାନେ ନୂତନ ପାଟ, ଫୁଲମାଳ ଓ ମୂଲ୍ୟବାନ ଅଳଙ୍କାର ଭୂଷିତ କରାଇଥାଆନ୍ତି । ତତ୍‌ପରେ ପଡ଼ିଥାଏ "ଛେରାପହଁରା" ମହାନ ରାଜକୀୟ ପର୍ବ । ଗଜପତି ମହାରାଜାଙ୍କୁ ନିମନ୍ତ୍ରଣ ସହ ପାଛୋଟି ଆଣିବାପାଇଁ ମନ୍ଦିରର ସେବାୟତ ସମେତ ପରିଚାଳନା ସଦସ୍ୟ ପୋଲିସ ଶ୍ରୀ ନଅର ଯାଇଥାଆନ୍ତି । ଶ୍ରୀ ନଅରରେ ମହାରାଜା ଏହି ସୁସମ୍ବାଦ ପାଇଲାମାତ୍ରେ ରାଜକୀୟ ଢାଞ୍ଚାରେ ଶୁକ୍ଳ ରଙ୍ଗର ଚୁଡ଼ିଦାର, କୁର୍ତ୍ତା, ମୁଣ୍ଡମୁକୁଟ ଓ ଅଣ୍ଟାରେ ଏକ ଖଣ୍ଡା ବାନ୍ଧି କନକଦୁର୍ଗା, ଶ୍ରୀଗଣେଶ, ଶ୍ରୀବିଷ୍ଣୁ, ଶ୍ରୀଶିବ ଓ ସୂର୍ଯ୍ୟ ପାଞ୍ଚଦେବଙ୍କୁ ଉପାସନା କରିଥାନ୍ତି । ଏହା ପୂର୍ବରୁ ବ୍ରତପାଳନ କରି କିଛି ଖାଦ୍ୟ ଗ୍ରହଣ କରିନଥାନ୍ତି । ରାଜଗୁରୁଙ୍କଦ୍ୱାରା ଦଶବିଧ ଉପଚାରରେ ମଙ୍ଗଳା ରୋପଣ କର୍ମ ହୋଇଥାଏ । ତତ୍‌ପରେ ଗଜପତି ଏକ "ତାମ୍‌ଯାନ"ରେ ଉପବେଶନ କରି ଓ ତାଙ୍କ ରାଜପରିବାରର ରାଜଗୁରୁ, ମନ୍ତ୍ରୀ, ଥାଟରାଜା, କୁମାର ସାହେବ, ପରିଛା, ବକ୍‌ସିଙ୍କ ସହିତ ଶ୍ରୀମନ୍ଦିର ଅଭିମୁଖେ ଯାତ୍ରା ଆରମ୍ଭ କରିଥାନ୍ତି । ବଡ଼ଦାଣ୍ଡରେ ମହାସମୁଦ୍ରର ଜଳରାଶି ପରି ଦେଶ ବିଦେଶରୁ ଆସିଥିବା ଲକ୍ଷ ଲକ୍ଷ ଭକ୍ତ, ପର୍ଯ୍ୟଟକ, ସାଧୁ, ସନ୍ଥ ଇତ୍ୟାଦି ଜନସ୍ରୋତକୁ ଭେଦକରି ଯିବାର ଦୃଶ୍ୟ ଅତ୍ୟନ୍ତ ମନୋହର । ଏଥିସହିତ ଶୋଭାଯାତ୍ରାର ଆଗେ, ଆଗେ, ଛତ୍ରୀ, ତରାଶ ସମେତ ସଂକୀର୍ତ୍ତନ, ହରିବୋଲ, ହୁଳହୁଳିର ଦୃଶ୍ୟ ଓ ନାଦ ସେହି ସ୍ଥାନଟିରେ ଏକ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରିଥାଏ । କିନ୍ତୁ ଅତୀତରେ ମହାରାଜା ଗଜ ଉପରେ ବସି ଛେରାପହଁରା କରିବାପାଇଁ ଆସୁଥିଲେ । ତେଣୁ ତାଙ୍କୁ ଗଜପତି ଉପାଧି ଭୂଷଣ କରାଯାଇଥିଲା ।

ଏହି ପବିତ୍ର ଶୋଭାଯାତ୍ରାକୁ ଦ୍ୱିଗୁଣିତ କରିପକାଉଥାଏ ମହାରାଜାଙ୍କ ସମ୍ମୁଖରେ ଯାଉଥିବା ଶ୍ରୀଜଗନ୍ନାଥଙ୍କର ଶ୍ୱେତଛତ୍ର, ଚାମର ଓ ଆଲଟ । ଲକ୍ଷ ଲକ୍ଷ ଶ୍ରଦ୍ଧାଳୁ ଭକ୍ତଙ୍କର ଆବେଗଭରା ହୃଦୟ ଓ ଅପଲକ ନୟନର ଚାହାଣି ସୃଷ୍ଟି କରିଥାଏ ଶ୍ରୀଜଗନ୍ନାଥଙ୍କ ପ୍ରତି ଭକ୍ତିଭାବ ଓ ଗଜପତିଙ୍କ ପ୍ରତି ସମ୍ମାନ ସୂଚକ ।

ଏହି ଅମୃତମୟ ପରିବେଶକୁ ଭେଦକରି ଗଜପତିଙ୍କର ତାମ୍‌ଯାନ ଗାଡ଼ିଟି ଲାଗିଯାଇଥାଏ ବଡ଼ଭାଇ ବଳଭଦ୍ରଙ୍କ ରଥ ନିକଟରେ । ଦଇତାପତିମାନେ ତାଙ୍କୁ ଚାରମାଳ ଦେଇ ରଥ ଉପରକୁ ପାଛୋଟିନେଇ ଯାଆନ୍ତି । ପୂର୍ବରୁ ରଥ ଉପରେ ପ୍ରସ୍ତୁତ ହୋଇ ରହିଥିବା ଚନ୍ଦନ ଓ ରୂପାର ଧୂପଦାନି ସହିତ "ଘଟୁଆରି", ଶ୍ୱେତବର୍ଣ୍ଣର ପୁଷ୍ପ ସହିତ "ଦୟଣାମାଳୀ", ରୂପାପାତ୍ର ଧରି "ମୁଦୁଲି" ସୁନା ଆଳତି, କର୍ପୂର ଆଲଟ ଚାମର ଧରି 'ମେକାପ' ଓ ପାଣିଝରି ଧରି ଗରାବଡୁ ସେବକମାନେ ଅପେକ୍ଷା କରିଥାନ୍ତି । ପ୍ରଥମେ ଗଜପତି ମହାରାଜା ବଳଭଦ୍ରଙ୍କ ରଥ ଉପରକୁ ଯାଇ ଗର୍ଭଗୃହରେ ଠାକୁରଙ୍କୁ ପ୍ରଣିପାତ କରିଥାଆନ୍ତି । ତତ୍‌ପରେ ଗରାବଡୁଙ୍କ ଠାରୁ ଜଳ ନେଇ ହସ୍ତ ଧୌତ କରି ଦୁଇଟି ଶୁକ୍ଳପାଟ ଠାକୁରଙ୍କୁ ଅର୍ପଣ କରିଥାଆନ୍ତି । ସେଠାରେ ଉପସ୍ଥିତ ଥିବା ସେବକଙ୍କଠାରୁ ଫୁଲ, ଚନ୍ଦନ, ଧୂପ ଓ ଆଳତି ନେଇ ଠାକୁରଙ୍କୁ ଅର୍ପଣ କରିଥାନ୍ତି । ତତ୍‌ପରେ ଗର୍ଭଗୃହରୁ ରଥ ଚକଡ଼ାକୁ ଫେରି ଆସନ୍ତି । ମୁଖ୍ୟ ଆକର୍ଷଣ ଛେରାପହଁରା ପର୍ବ ପାଇଁ କାହାଳୀ ବାଜି ସୂଚନା ଦେଇଥାଏ । ଭଣ୍ଡାର ମେକାପ ଶ୍ୱେତପୁଷ୍ପକୁ ଏକ ରୂପାପାତ୍ରରେ ଧରି ରଥର ଚତୁଃପାର୍ଶ୍ୱରେ ପକାଇ ରଥ ମାର୍ଜନା କରିଥାନ୍ତି । ଗଜପତି ମହାରାଜା ଏକ ସୁନା ଖଡ଼ିକା ଧରି ରଥର ଚାରିପଟକୁ ଓଳାଇ ଥାଆନ୍ତି । ତତ୍ପରେ ଗଜପତି ବହଳିଆ ଚନ୍ଦନପାଣି ରଥଚକଡ଼ାର ଚାରିପଟେ ପକାଇଥାନ୍ତି, ଏହାକୁ କୁହାଯାଏ ଛେରାପହଁରା ପର୍ବ । ଏହି ପରି ରୀତିନୀତି ଅନୁସାରେ ଗଜପତି ମହାରାଜା ଦେବୀ ସୁଭଦ୍ରା ତଥା ଦେବଦଳନ ଓ ପ୍ରଭୁ ଶ୍ରୀଜଗନ୍ନାଥ ତଥା ନନ୍ଦିଘୋଷ ରଥରେ ଛେରାପହଁରା କରିଥାନ୍ତି । କୌଣସି କାରଣରୁ ଗଜପତି ଅନୁପସ୍ଥିତ ରହିଲେ "ମୁଦିରସ୍ତ" ସେବକ ଏହି କାର୍ଯ୍ୟ ସମ୍ପାଦନା କରିଥାନ୍ତି ।

ବାହୁଡ଼ା ଯାତ୍ରାରେ ଶ୍ରୀଜୀଉମାନେ ଗୁଣ୍ଡିଚାମନ୍ଦିରରୁ ପହଣ୍ଡି ହୋଇ ରଥତ୍ରୟରେ ଉପବେଶନ ହେଲେ, ଗଜପତି ମହାରାଜା ମ୍ଲାନ ପଟୁଆରରେ ଗୁଣ୍ଡିଚାମନ୍ଦିର ନିକଟରେ ଥିବା ରଥ ଗୁଡ଼ିକରେ ଛେରାପହଁରା କରିବାପରେ ରଥଟଣା ହୋଇଥାଏ । ମୁକ୍ତ ଆକାଶତଳେ ବଡ଼ଦାଣ୍ଡପରି ଏକ ପବିତ୍ର କ୍ଷେତ୍ରରେ ଅନୁଷ୍ଠିତ ହେଉଥିବା ରଥଯାତ୍ରାରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଦେଶ ବିଦେଶରୁ ଆସିଥିବା ଲକ୍ଷ ଲକ୍ଷ ଭକ୍ତଙ୍କର ଶ୍ରୀଜୀଉମାନଙ୍କ ଦର୍ଶନ, ଛେରାପହଁରା, ଓ ରଥଟଣା ପର୍ବଗୁଡ଼ିକ ଦେଉଥାଏ ଅପୂର୍ବ ଆନନ୍ଦ । ଯାହାକି ଦର୍ଶକମାନଙ୍କର ଶତଜନ୍ମର ପାପନାଶ ହେବା ସଙ୍ଗେ ସଙ୍ଗେ ସୃଷ୍ଟି ହୋଇଥାଏ ଅଜସ୍ର ପୁଣ୍ୟ ।

ଏହି ମହାନ କାର୍ଯ୍ୟକୁ ଏକ ଦେବକାର୍ଯ୍ୟରୂପେ ଅଭିହିତ ହୋଇଥିଲେ ମଧ୍ୟ କେହି କେହି ଏହି କାର୍ଯ୍ୟ ଏକ ଘୃଣ୍ୟକାର୍ଯ୍ୟ ବୋଲି କହିଥାନ୍ତି । କାରଣ ଏହି କାର୍ଯ୍ୟ ନିମ୍ନ ଜାତିର ତଥା ଚଣ୍ଡାଳମାନେ କରିଥାନ୍ତି । ଏଥିପାଇଁ ଏକ ପ୍ରବାଦ ଅଛି ଯେ, ତତ୍‌କାଳୀନ ଗଜପତି ମହାରାଜା ଏହି କାର୍ଯ୍ୟ କରୁଥିବାରୁ କାଞ୍ଚିର ରାଜା ଶାଲ୍ୱ ନରସିଂହ ତାଙ୍କର କନ୍ୟା ରୂପାମ୍ବିକାଙ୍କୁ ବିବାହ ପାଇଁ ଅସ୍ୱୀକାର କରି ଚଣ୍ଡାଳ ରୂପେ ଆକ୍ଷେପ କରିଥିଲେ । ଏହି ଅପବାଦକୁ ଶ୍ରୀକ୍ଷେତ୍ରର ଠାକୁରରାଜା ପୁରୁଷୋତ୍ତମ ଦେବ ସହ୍ୟ ନକରି ଓ ପ୍ରତିଶୋଧ ପରାୟଣ ହୋଇ କାଞ୍ଚିରାଜାଙ୍କ ସହ ଯୁଦ୍ଧ କରି ପରାସ୍ତ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କ ଶରଣାପନ୍ନ ହୋଇ ଦ୍ୱିତୀୟଥର ଯୁଦ୍ଧ କରି ବିଜୟ ଲାଭ କରିଥିଲେ । କଥିତ ଅଛି ଏହି ଯୁଦ୍ଧରେ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ସ୍ୱୟଂ ଧଳା ଓ କଳା ଘୋଡ଼ାରେ ଯୁଦ୍ଧ କ୍ଷେତ୍ରକୁ ରାଜାଙ୍କୁ ଜୟ କରିବାପାଇଁ ଯାଇଥିଲେ । ଯୁଦ୍ଧକ୍ଷେତ୍ରକୁ ଯିବା ବାଟରେ ଦୁଇଭାଇ ଚିଲିକା ନିକଟରେ ଥିବା ମାଣିକ ଗଉଡୁଣୀଠାରୁ ଦହି ପିଇ ପଇସା ନଦେଇ ପାରି ନିଜର ହସ୍ତର ମୁଦ୍ରିକା ପ୍ରଦାନ କରିଥିଲେ । ସେହି ମୁଦ୍ରିକାକୁ ଦେଖି ରାଜା ପୁରୁଷୋତ୍ତମ ଜାଣିପାରିଥିଲେ ଯେ ସ୍ୱୟଂ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ତତ୍‌ପରେ ମହାରାଜା ସେଠାରେ ମାଣିକପାଟଣା ନାମରେ ଏକ ଗ୍ରାମ ବସାଇଥିଲେ । ଅଦ୍ୟାବଧି ସେହି ଗ୍ରାମଟି ସେଠାରେ ବିଦ୍ୟମାନ । ଗଜପତି ମହାରାଜ କାଞ୍ଚିରାଜାଙ୍କ କନ୍ୟା ରୂପାମ୍ବିକାଙ୍କୁ ବିବାହ ନକରି ତାଙ୍କ ମନ୍ତ୍ରୀଙ୍କୁ ପରାମର୍ଶ ଦେଲେ ତାଙ୍କୁ ଏକ ଚଣ୍ଡାଳକୁ ବିବାହ ଦେଇଦିଅ । ସୁଚତୁର ମନ୍ତ୍ରୀ କନ୍ୟାଟିକୁ କାହାକୁ ବିବାହ ନଦେଇ ମହାରାଜା ଛେରାପହଁରା କରୁଥିବା ସମୟରେ ଶ୍ରେଷ୍ଠ ଚଣ୍ଡାଳରୂପେ ଅଭିହିତ କରାଇ ରୂପାମ୍ବିକାଙ୍କୁ ତାଙ୍କୁ ଅର୍ପଣ କରଥିଲେ । ଆଗ ବରଣମାଳ ଓ ତା'ପରେ ବିବାହ କରି ପଦ୍ମାବତୀ ନାମକରଣ କରି ପାଟରାଣୀ ରୂପେ ଗ୍ରହଣ କରିଥିଲେ । ଏହି ସେବା ଏକ ମହାନ ସେବା । ଲକ୍ଷେରାଜାଙ୍କର ମଉଡ଼ମଣି ଗଜପତି ରାଜକୀୟ ସ୍ୱାଭିମାନଠାରୁ ଦୂରରେ ରହି, ଏହି ସେବାକୁ ନିଜ ଜୀବନର ବ୍ରତରୂପେ ପାଳନ କରିବା ଏକ ବିରଳ ଆଦର୍ଶ ।

ଶାନ୍ତି, ମୈତ୍ରୀ ଓ ପ୍ରୀତିର ପ୍ରତୀକ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନବକଳେବରରେ ଗଜପତି ମହାରାଜାଙ୍କ ଅବଦାନର ପଟାନ୍ତର ନାହିଁ । ଯେଉଁ ବର୍ଷ ଆଷାଢ଼ମାସଟି ମଳମାସ ପଡ଼େ ସେହି ବର୍ଷ ଶ୍ରୀଠାକୁରଙ୍କର ନବକଳେବର ହୋଇଥାଏ । ଏହା ପ୍ରାୟ ୧୧ ବା ୧୯ ବର୍ଷ ମଧ୍ୟରେ ଥରେ ପଡ଼ିଥାଏ । ଏହି ଉତ୍ସବର ଅବ୍ୟବହିତ ପୂର୍ବରୁ ଗଜପତି ମହାରାଜା ସମ୍ପୃକ୍ତିଥିବା ସମସ୍ତ ସେବାୟତଙ୍କ ସହିତ ପରାମର୍ଶ କରିଥାନ୍ତି । ସେହି ବର୍ଷ ଚୈତ୍ରମାସ ଶୁକ୍ଳପକ୍ଷ ଦଶମୀ ଦିନ ନବକଳେବରର ପ୍ରଥମ ପର୍ଯ୍ୟାୟ ପର୍ବ ବନଯାଗ ଯାତ୍ରା ଆରମ୍ଭ ହୋଇଥାଏ । ଏହିଦିନ ମନ୍ଦିର ଭିତରେ ଥିବା ସମସ୍ତ କାର୍ଯ୍ୟ ବିଧିବିଧାନ ସହ ସମ୍ପାଦନ କରି ସଂପୃକ୍ତ ସେବାୟତମାନେ ଶ୍ରୀନଅରକୁ ଯାତ୍ରା କରିଥାନ୍ତି । ବିରାଟ ପଟୁଆରରେ ଶ୍ରୀନଅରରେ ପହଞ୍ଚିବା ପୂର୍ବରୁ ଗଜପତି ମହାରାଜା ଶୁଭ

ମୁହୂର୍ତ୍ତରେ ଅନୁକୂଳାଦି କର୍ମସହ ପ୍ରଥମେ ଶ୍ରୀହସ୍ତ ଛୁଆଁ ଗୁଆ ବନଯାଗ ଯାତ୍ରାପାଇଁ ରାଜଗୁରୁଙ୍କୁ ଅର୍ପଣ କରିଥାନ୍ତି । ରାଜଗୁରୁ ସେହି ଗୁଆକୁ ବିଦ୍ୟାପତି, ବିଶ୍ୱାବସୁଙ୍କୁ ଅର୍ପଣ କରିଥାନ୍ତି । ସେହିପରି ସ୍ନାନପୂର୍ଣ୍ଣିମାପରେ ଆଷାଢ଼ କୃଷ୍ଣପକ୍ଷ ଦ୍ୱିତୀୟା ତିଥିରେ କୋଇଲି ବୈକୁଣ୍ଠରେ ନବକଳେବରର ଅନ୍ତର୍ଯାଗ ପର୍ବ ଆରମ୍ଭ ପୂର୍ବରୁ ଗଜପତି ମହାରାଜା ସ୍ୱୟଂ ଦଇତାପତି ଓ ବ୍ରାହ୍ମଣମାନଙ୍କୁ ଗୁଆ ଟେକି ଦେଇ "ଗୁଆ ଟେକା ନୀତି" ପାଳନ କରିଥାନ୍ତି । ନବକଳେବରର ଶେଷ ପର୍ଯ୍ୟାୟ ହେଉଥିବା ୧୧ ଦିନ ଧରି ଯଜ୍ଞଶେଷରେ ଗଜପତି ମହାରାଜା ସୁସଜ୍ଜିତ "ତାମ୍ ଯାନ"ରେ କୋଇଲି ବୈକୁଣ୍ଠ ଯାଇ ଯଜ୍ଞରେ ପୂର୍ଣ୍ଣାହୁତି ଦେଇଥାନ୍ତି । ଏହି ନୀତି ମହାନ ଅଟେ ।

ଏତଦ୍‌ବ୍ୟତୀତ ଗଜପତି ମହାରାଜ ଶ୍ରୀଜଗନ୍ନାଥଙ୍କ ଚନ୍ଦନଯାତ୍ରା ପ୍ରଥମ ଓ ଶେଷ ଦୁଇଦିନ ଛେରାପହଁରା କରିଥାନ୍ତି । ସ୍ନାନ ପୂର୍ଣ୍ଣିମାଦିନ ସ୍ନାନବେଦୀରେ ଓ ଦୋଳଯାତ୍ରାଦିନ ଦୋଳବେଦୀରେ ଗଜପତି ମହାରାଜା ଶ୍ରୀଠାକୁରମାନଙ୍କର ଛେରାପହଁରା କରିଥାନ୍ତି । ଦୋଳପୂର୍ଣ୍ଣିମୀ ଓ ବାମନ ଜନ୍ମଦିନ ପର୍ବରେ ସେ ଦକ୍ଷିଣଦ୍ୱାର ଦେଇ ଶ୍ରୀମନ୍ଦିରରେ ପ୍ରବେଶ କରି ରାଜନୀତି ସମ୍ପନ୍ନ କରିଥାନ୍ତି । ଗଲାବେଳେ ପାଲିଙ୍କିରେ ବସି ଛତ୍ରୀ, ତ୍ରାସ, କାହାଳୀ ବାଦ୍ୟର ସମାବେଶରେ ଶ୍ରୀମନ୍ଦିରକୁ ଯିବାର ଦୃଶ୍ୟ ଅତ୍ୟନ୍ତ ମନୋହର ଅଟେ । "ଗହଣ ବିଜେ" ସମୟରେ ସେ ପାଟ ମହାଦେବୀଙ୍କ ସହିତ ଶ୍ରୀମନ୍ଦିରରେ ବିଜେ କରନ୍ତି । ସେତେବେଳେ ମନ୍ଦିର ପୂର୍ଣ୍ଣ ଶୋଧ କରାଯାଇଥାଏ । ଆଶ୍ୱିନ ଷୋହଳ ପୂଜାରେ ତାଙ୍କଦ୍ୱାରା ପ୍ରଦତ୍ତ ଗୁଆ ଓ ନଡ଼ିଆ ବିମଳା ଓ ଅନ୍ୟଦେବୀଙ୍କ ନିକଟରେ ବ୍ରାହ୍ମଣମାନଙ୍କ ଦ୍ୱାରା ବରଣ ହେବାପରେ ଯଥାରୀତି କର୍ମ ଆରମ୍ଭ ହୋଇଥାଏ । ବାହୁଡ଼ାରେ ଶ୍ରୀଲକ୍ଷ୍ମୀନାରାୟଣ ଭେଟ ପର୍ବର ଦିବସରେ "ଶ୍ରୀନଅର" ଦୁଆରେ ବନ୍ଦାପନା ଆଦି ନୀତି ସମ୍ପାଦନା କରିଥାନ୍ତି । ଚମ୍ପକ ଦ୍ୱାଦଶୀଦିନ ବରକନ୍ୟାଙ୍କୁ ଶ୍ରୀନଅର ଦୁଆରକୁ ପାଛୋଟି ନେଇ ରାଜନୀତି କର୍ମ ସମ୍ପାଦନ କରିଥାନ୍ତି । ଏହି ସବୁ ନୀତିକୁ "ଗଜପତି ମହାରାଜା ସେବା" ବୋଲି କୁହାଯାଇଥାଏ ।

ଶ୍ରୀମନ୍ଦିରର ରତ୍ନସିଂହାସନକୁ ଉଠି ବିଗ୍ରହମାନଙ୍କୁ ପୂଜାର୍ଚ୍ଚନା କରିବାର ଅଧିକାର କେବଳ ନେପାଳ ରାଜାଙ୍କର ଅଛି । ଯାହାକି ଶ୍ରୀଜଗନ୍ନାଥଙ୍କର ଆଦ୍ୟସେବକ ଗଜପତି ମହାରାଜାଙ୍କୁ ମଧ ଦିଆଯାଇନାହିଁ । କୁହାଯାଏ ନବମ ଶତାବ୍ଦୀର ପ୍ରାରମ୍ଭରେ ଶ୍ରୀଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ଶ୍ରୀଜଗନ୍ନାଥ ଧାମରେ ରହଣି କାଳରେ ମୂଲ୍ୟବାନ ଶାଳଗ୍ରାମ ଶିଳା ଆଣିବାପାଇଁ ଭାରତୀ ଆଚାର୍ଯ୍ୟଙ୍କୁ ନେପାଳକୁ ପଠାଇଥିଲେ । ତତ୍‌କାଳୀନ ନେପାଳର ନରେଶ ଥିଲେ ସୂର୍ଯ୍ୟବଂଶୋଦ୍ଭବ ଲିଚ୍ଛବି ବଂଶୀୟ ଶଙ୍କର ଦେବ । ନେପାଳ ରାଜା ଶାଳଗ୍ରାମ ଶିଳା ସମେତ ଶ୍ରୀବିଷ୍ଣୁଶିଳା, କସ୍ତୁରୀ, ସ୍ୱର୍ଣ୍ଣ ଓ ରୌପ୍ୟାଦି ଦାନ କରିଥିଲେ । ଯାହାକି ରତ୍ନସିଂହାସନ ନିର୍ମାଣରେ ଲାଗିଥିଲା । ତେଣୁ ସେହିଦିନଠାରୁ ନେପାଳର ରାଜାଙ୍କୁ ଏହି ପରମ୍ପରା ଅର୍ପଣ କରାଯାଇଅଛି ।

୧୯୬୦ ମସିହାରୁ ସରକାର ଶ୍ରୀମନ୍ଦିରର ପରିଚାଳନା ଦାୟିତ୍ୱ ନିଜ ହାତକୁ ନେଇ ଏକ ପରିଚାଳନା କମିଟି ଗଠନ କରିଛନ୍ତି । ଏଥିରେ ଗଜପତି ମହାରାଜା ସଭାପତି ଅଛନ୍ତି । କିନ୍ତୁ ଏହାପୂର୍ବରୁ ତାଙ୍କର ବହୁ ଦାୟିତ୍ୱ ଥିଲା, ଏବେ ସେ ସବୁ ଦାୟିତ୍ୱ ଏତେ ନାହିଁ । ଗଜପତି ମହାରାଜ ଶ୍ରଦ୍ଧା ଓ ଭକ୍ତିପୂତ ଭାବରେ ଶ୍ରୀମନ୍ଦିରର ସମସ୍ତ କାର୍ଯ୍ୟରେ ନିଜକୁ ସମର୍ପିତ କରି ଓଡ଼ିଶା କାହିଁକି ସମଗ୍ର ବିଶ୍ୱରେ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ଓ ସେବକରୂପେ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ଏହାହିଁ ଜନସମାଜ ପାଇଁ ଏକ ନିରନ୍ତର ମାର୍ଗଦର୍ଶନ ।

* * * * * * *

# ପୁରୁଷୋତ୍ତମ କ୍ଷେତ୍ର ଓ ପଞ୍ଚତୀର୍ଥ



ଭାରତ କାହିଁକି ସମଗ୍ର ବିଶ୍ୱଦରବାରରେ କ୍ଷେତ୍ର, ପୀଠ ତଥା ଧାମମାନଙ୍କ ମଧ୍ୟରେ ଓଡ଼ିଶାର ପୁରୁଷୋତ୍ତମ କ୍ଷେତ୍ର ଅତୀବ ମହାନ୍ । ଏହି କ୍ଷେତ୍ରର ସଂସ୍କୃତି, ପରମ୍ପରା, କଳା ତଥା ଭାସ୍କର୍ଯ୍ୟ ଆକର୍ଷିତ କରିପାରିଛି ବିଶ୍ୱର ଆଧ୍ୟାତ୍ମିକ ପ୍ରେମୀମାନଙ୍କୁ । ଏଠାରେ ଥିବା ଶତ ଶତ ମନ୍ଦିର, ଆଶ୍ରମ, ମଠ, ଗାଦି ଓ ତୀର୍ଥକ୍ଷେତ୍ରମାନ ସୃଷ୍ଟି କରିପାରିଛି ଐଶ୍ୱର୍ଯ୍ୟପୁରୀ ପରି ପବିତ୍ର ପରିବେଶ । ବିଭିନ୍ନ ଧର୍ମଗୁଡ଼ିକ ମଧ୍ୟରେ ଭିନ୍ନ ମତବାଦଥିଲେ ମଧ୍ୟ କିନ୍ତୁ ସବୁଧର୍ମର ସମନ୍ୱୟ ଘଟିଛି ଏହି ଦେବକ୍ଷେତ୍ରରେ । ଏହି ପୁରୁଷୋତ୍ତମ ପୀଠର ବଡ଼ଠାକୁର ଜଗତରନାଥ ପ୍ରଭୁ ଶ୍ରୀଜଗନ୍ନାଥ ତଥା ଅଶେଷ କରୁଣାର ସାଗର ଓ ବ୍ରହ୍ମାଣ୍ଡପତି ବଡ଼ ଭାଇ ବଳଭଦ୍ର, ଭଉଣୀ ମା ସୁଭଦ୍ରାଙ୍କ ସହ ବିରାଜିତ ଶ୍ରୀମନ୍ଦିରର ରତ୍ନସିଂହାସନରେ । ସେ କେହି ନୁହନ୍ତି, ସେ ଅଟନ୍ତି ସାକ୍ଷାତ ପରଂବ୍ରହ୍ମ ଶ୍ରୀବିଷ୍ଣୁ ।

ପ୍ରଭୁ ଶ୍ରୀବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରେ ପୁରୁଷୋତ୍ତମ ନାମ ଅନ୍ୟତମ, ଠିକ୍ ସେପରି ଅଶେଷ କ୍ଷେତ୍ରାନୁସାରେ ପୁରୁଷୋତ୍ତମ କ୍ଷେତ୍ର ମଧ୍ୟ ଅନ୍ୟତମ । ପୁରୁଷୋତ୍ତମ କ୍ଷେତ୍ରର ଅନ୍ୟ ନାମଗୁଡ଼ିକ ହେଲା, ଶ୍ରୀକ୍ଷେତ୍ର, ନୀଳାଚଳକ୍ଷେତ୍ର, ଶଙ୍ଖକ୍ଷେତ୍ର, ଶ୍ରୀଜଗନ୍ନାଥ କ୍ଷେତ୍ର, ପତିତପାବନ କ୍ଷେତ୍ର, ଦାରୁକ୍ଷେତ୍ର, ମୁକ୍ତିକ୍ଷେତ୍ର, ଦଶଅବତାର କ୍ଷେତ୍ର, ଜମ୍ବୁକ୍ଷେତ୍ର, ଦିବ୍ୟକ୍ଷେତ୍ର, ଭୋଗକ୍ଷେତ୍ର ଇତ୍ୟାଦି ।

ପୁରୁଷୋତ୍ତମ କ୍ଷେତ୍ରର ମହିମା ଓ ଗୁଣଗାରିମା ପୃଥିବୀର ଅନ୍ୟ କୌଣସି ଧର୍ମପୀଠରେ ଦେଖିବା ବିରଳ । ଏହି କ୍ଷେତ୍ରର ତଥ୍ୟ ଓ ତତ୍ତ୍ୱକୁ ହୃଦୟଙ୍ଗମ କରିବା କୌଣସି ଜ୍ଞାନୀ, ଗୁଣୀ, ବୁଦ୍ଧିଜୀବୀ, ସାଧୁ, ସନ୍ଥ ଓ ମୁନି ଋଷିମାନଙ୍କ ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ । ନୀଳ ଆକାଶର ପରିସୀମା ତଥା ଆକୃତି ଯେପରି ଅନନ୍ତ, ଅସୀମ ଠିକ୍ ସେପରି ପୁରୁଷୋତ୍ତମ କ୍ଷେତ୍ରର ସଂସ୍କୃତି, ପୂଜାପଦ୍ଧତି ଓ ବେଶଭୂଷା ମଧ୍ୟ ବୈଚିତ୍ର୍ୟମୟ । ଏହି କ୍ଷେତ୍ର ମହତ୍ତ୍ୱର ଗଭୀରତା ଅମାପ ଓ ଅତୁଳନୀୟ ଅଟେ । ଆତ୍ମିକ ଚେତନା ରୂପରେ ଏହି କ୍ଷେତ୍ରରାଜ ଶ୍ରୀପୁରୁଷୋତ୍ତମ ସବୁଠାରେ ବିରାଜିତ । ସେ ସବୁଠାରେ ଅଛନ୍ତି, ପୁଣି କେଉଁଠାରେ ନାହାଁନ୍ତି । ସେ ଧନୀର ଦେବତା ଓ ଗରିବର ମଧ୍ୟ ଦେବତା । ପରମଭକ୍ତ ତାଙ୍କୁ ଯେପରି ଡାକନ୍ତି, ସେ ସେପରି ଦର୍ଶନ ଦେଇଥାନ୍ତି । ସେ ଦୁଷ୍ଟ, ଗର୍ବ, ଅହଂକାରୀ ଲୋକମାନଙ୍କ ପାଖରୁ ଦୂରେଇ ଯାଆନ୍ତି ଓ ଭଦ୍ର, ନମ୍ର, ଭକ୍ତି ଓ ସତ୍ୟବାନ୍‌ଙ୍କ ପାଖରେ ସର୍ବଦା ଥାଆନ୍ତି । ତେଣୁ ଯେଉଁ କ୍ଷେତ୍ରରେ ଅଧିଷ୍ଠିତ ଦେବ ପୁରୁଷୋତ୍ତମ, ସେହି କ୍ଷେତ୍ରର ପବିତ୍ରତା ତଥା ମହନୀୟତା କେତେ, ଏଥିରୁ ଅନୁମେୟ ।

ଶ୍ରୀପୁରୁଷୋତ୍ତମଙ୍କର ସଂସ୍କୃତି ଓ ପରମ୍ପରା ରହସ୍ୟମୟ । ଏହି କ୍ଷେତ୍ରରେ ଥିବା ଅନ୍ୟାନ୍ୟ ମନ୍ଦିର, ମଠ, ଗାଦି ଓ ତୀର୍ଥକ୍ଷେତ୍ରଗୁଡ଼ିକର ମାହାତ୍ମ୍ୟ ଓ ଗୁରୁତ୍ୱ ମଧ୍ୟ ବିଚିତ୍ରମୟ । ଏହି କ୍ଷେତ୍ରକୁ ଅଶେଷ ଧାମ ନାମରେ ପୁରାଣ ଶାସ୍ତ୍ରଗୁଡ଼ିକରେ ସୂଚିତ ହୋଇଅଛି । ବିଭିନ୍ନ ଯୁଗରେ ସ୍ୱୟଂ ପ୍ରଭୁ ଶ୍ରୀବିଷ୍ଣୁ ଭିନ୍ନ ଭିନ୍ନ ରୂପରେ ଅବତାର ଗ୍ରହଣ କରିଥିଲେ । କାରଣ ଯେତେବେଳେ ଧରାପୃଷ୍ଠରେ ପାପଭାର ପୂରିଯାଇଥାଏ ଓ ଅନ୍ୟାୟ ଅତ୍ୟାଚାରରେ ସାଧୁସନ୍ଥମାନେ ନିଷ୍ପେଷିତ ହୁଅନ୍ତି, ସେତେବେଳେ ଭଗବାନ ମାନବ ରୂପରେ ମର୍ତ୍ତ୍ୟମଣ୍ଡଳରେ ଦୁଷ୍ଟମାନଙ୍କୁ ନିପାତ କରି ସନ୍ଥମାନଙ୍କୁ ପାଳନ କରିଥାନ୍ତି ।

ଶ୍ରୀପୁରୁଷୋତ୍ତମ ପୁଣ୍ୟଭୂମି ଭାରତବର୍ଷରେ ତାଙ୍କର ନିତ୍ୟଲୀଳା ପ୍ରକଟ କରିବାପାଇଁ ୪ଟି ସ୍ଥାନ ଅଛି । ଏହି ଚତୁର୍ଦ୍ଧାମ ମଧ୍ୟରେ ପୁରୁଷୋତ୍ତମ ଧାମ ଶ୍ରେଷ୍ଠ ରୂପେ ବିବେଚିତ । କାରଣ ଭଗବାନ ଶ୍ରୀପୁରୁଷୋତ୍ତମଙ୍କ ନିତ୍ୟଲୀଳା ଭୂମିରୂପେ ପୁରାଣରେ ପ୍ରସିଦ୍ଧି ଲାଭ କରିଅଛି । ଭାରତର ଉତ୍ତରଦିଗରେ ବଦ୍ରିନାଥ-ସ୍ନାନପୀଠ, ପଶ୍ଚିମରେ ଦ୍ୱାରିକା ବେଶଭୂଷା ପୀଠ, ଦକ୍ଷିଣରେ ଶ୍ରୀରାମେଶ୍ୱରଠାରେ ଶୟନପୀଠ ଓ ପୂର୍ବରେ ପୁରୁଷୋତ୍ତମରେ ଭୋଜନପୀଠରୂପେ ବିରାଜିତ । ଭାଗବତରେ ବର୍ଣ୍ଣିତ ଅଛି -

"ସକଳ ତୀର୍ଥ ତୋ ଚରଣେ,<br>ବଦ୍ରିକା ଯିବି କି କାରଣେ ।"

ଅଖିଳବ୍ରହ୍ମାଣ୍ଡ ସୃଷ୍ଟି ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ର ମର୍ତ୍ତ୍ୟଲୋକରେ ବୈକୁଣ୍ଠପୁରୀ ନାମରେ ବିବେଚିତ । କାରଣ ଭଗବାନ ବିଭିନ୍ନରୂପରେ ଓ ସମୟରେ ଏହି ଦେବପୀଠ ଉପରେ ମାନବ ରୂପେ ଜନ୍ମଲାଭ କରି ତାଙ୍କର ଲୀଳା ପ୍ରକଟ କରିଥାନ୍ତି । ଏହି ପବିତ୍ରଭୂମି ତାଙ୍କର ବାସସ୍ଥାନ

ଅଟେ । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି ସ୍ୱୟଂ ଭଗବାନ ଏହି କ୍ଷେତ୍ରରେ ଦଶାବତାର ହୋଇଥିଲେ । ତେଣୁ ସେ ସଦା ସର୍ବଦା ଏହି କ୍ଷେତ୍ରରେ ବିରାଜିତ । ପରମଭକ୍ତ ଜୟଦେବଙ୍କ ଦ୍ୱାରା ଲିଖିତ "ଗୀତଗୋବିନ୍ଦ" କାବ୍ୟରେ ଦଶାବତାର ସମ୍ପର୍କରେ ବିସ୍ତୃତ ସ୍ଥାନ ପାଇଅଛି । ଯଥା- ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ପର୍ଶୁରାମ, ରାମ, ବଳରାମ, ବୁଦ୍ଧ ଓ କଲ୍କୀ ଅବତାର ।

ଏଠାରେ ଥିବା ଶତ ଶତ ମଠମାନଙ୍କ ମଧ୍ୟରେ ଦଶାବତାର ନାମରେ ଏକମଠ ବିଦ୍ୟମାନ । ଅତୀତରେ ଏହି ମଠ ଥିଲା ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ଜୟଦେବଙ୍କର ଆଶ୍ରମ, ଯାହାକି ଆଜି ସେହି ଆଶ୍ରମ ଦଶାବତାର ମଠରେ ପରିଣତ ହୋଇଅଛି ।

କଥାରେ ଅଛି ତୀର୍ଥମୟୀ ପୁଣ୍ୟଧାମ ଶ୍ରୀକ୍ଷେତ୍ର । ସେହି ଶତ ଶତ ତୀର୍ଥମଧ୍ୟରେ ପଞ୍ଚତୀର୍ଥର ଆଧ୍ୟାତ୍ମିକ ମହିମା ଓ ଗୁଣଗାରିମାର ମହାନ୍ ଗୁରୁତ୍ୱ ବହନ କରିଛି । ଦେଶବିଦେଶରୁ ଅସଂଖ୍ୟ ଭକ୍ତ ଓଡ଼ିଶାର ବଡ଼ଠାକୁର ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ଏହି କ୍ଷେତ୍ରରେ ଥିବା ପଞ୍ଚତୀର୍ଥ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଥାନ୍ତି । ଚତୁର୍ଦ୍ଦଶ ଶତାବ୍ଦୀରେ ରଚିତ ଶ୍ରୀକ୍ଷେତ୍ର ମାହାତ୍ମ୍ୟ ସମ୍ବଳିତ ବ୍ରହ୍ମପୁରାଣରେ ପଞ୍ଚତୀର୍ଥ ସମ୍ବନ୍ଧରେ ସୂଚନା ଦିଆଯାଇଅଛି ।

ଶ୍ରୀପୁରୁଷୋତ୍ତମ ଠାକୁରଙ୍କ ସହିତ ଏହି ପାଞ୍ଚଟି ତୀର୍ଥର ନିବିଡ଼ ସମ୍ପର୍କ ରହିଅଛି । ପରସ୍ପର ମଧ୍ୟରେ ଥିବା ଏହି ସମ୍ପର୍କ ସୃଷ୍ଟି କରିପାରିଛି ପରମ ଭକ୍ତମାନଙ୍କ ହୃଦୟ ମନ୍ଦିରରେ ଆଧ୍ୟାତ୍ମିକର ଚେତନାଶକ୍ତି ଓ ଐଶ୍ୱରିକ ପ୍ରେମ । ଆଉ ମଧ୍ୟ ଶ୍ରୀପୁରୁଷୋତ୍ତମ ଧର୍ମସ୍ରୋତରେ ଏହି ପଞ୍ଚତୀର୍ଥର ମହତ୍ତ୍ୱ ସୃଷ୍ଟି କରିଛି ଏକ ମହାନ୍ ଧର୍ମନଦୀର ସ୍ରୋତ । କଥିତ ଅଛି ଏହି ମହାନ୍ ଧର୍ମସ୍ରୋତକୁ ଯେଉଁ ଭକ୍ତ ସ୍ପର୍ଶକଲା, ତା'ର ସମସ୍ତ ପାପକ୍ଷୟ ହେବା ସଙ୍ଗେସଙ୍ଗେ ପୁନର୍ଜୀବନ ପର୍ଯ୍ୟନ୍ତ ଧର୍ମ ଅର୍ଜନ କରିଥାଏ । ଏତଦ୍‌ବ୍ୟତୀତ ଶରୀରର ସମସ୍ତ ରୋଗରୁ ମୁକ୍ତ ହୋଇଥାଏ । ପୂର୍ବପୁରୁଷଙ୍କୁ ଏଠାରେ ପିଣ୍ଡଦାନ ଦେଲେ, ସେମାନଙ୍କର ଆତ୍ମା ମୁକ୍ତିଲାଭ କରିଥାଏ । ସେହି ପଞ୍ଚତୀର୍ଥଗୁଡ଼ିକର ନାମ ଯଥା - ୧- ମାର୍କଣ୍ଡେୟ ପୁଷ୍କରିଣୀ, ୨-ଶ୍ୱେତଗଙ୍ଗା, ୩-ରୋହିଣୀକୁଣ୍ଡ, ୪-ମହୋଦଧି, ୫-ଇନ୍ଦ୍ରଦ୍ୟୁମ୍ନ ସରୋବର ।

## ମାର୍କଣ୍ଡେୟ ପୁଷ୍କରିଣୀ

ପଞ୍ଚତୀର୍ଥ ମଧ୍ୟରେ ମାର୍କଣ୍ଡେୟ ପୁଷ୍କରିଣୀ ତୀର୍ଥଟି ଅନ୍ୟତମ । ପ୍ରଭୁ ଶ୍ରୀଜଗନ୍ନାଥ ମନ୍ଦିରର ଉତ୍ତରରେ ମାର୍କଣ୍ଡେଶ୍ୱର ସାହିରେ ଏହି ପୁଷ୍କରିଣୀଟି ଅବସ୍ଥିତ । ଏହାର କ୍ଷେତ୍ରଫଳ ୧.୬ହେକ୍ଟର । ଏହାର ତୀରଦେଶରେ ମାର୍କଣ୍ଡେଶ୍ୱର ଶିବ ମନ୍ଦିର ଓ ପ୍ରଭୁ ଅଷ୍ଟଶମ୍ଭୁ ମନ୍ଦିର ଦଣ୍ଡାୟମାନ । ଏହାର ଉତ୍ତରପଟେ ଏକ ବଟବୃକ୍ଷ ତଳେ ଅଷ୍ଟମାତୃକା ମୂର୍ତ୍ତି ଓ ଶ୍ରୀମୃତ୍ୟୁଞ୍ଜୟ ଲିଙ୍ଗ ଅଛି । ପୁରାଣ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ବ୍ରହ୍ମାଣ୍ଡ ପ୍ରଳୟ ସମୟରେ ସମସ୍ତ ଜୀବଜଗତ ଜଳରେ ବିଲୀନ

ହୋଇଯାଇଥିଲେ । ସେତେବେଳେ ମାର୍କଣ୍ଡେୟ ମହର୍ଷି ଜଳରେ ଭାସି ଭାସି ଶ୍ରୀକ୍ଷେତ୍ରରେ ଥିବା କଳ୍ପବଟ ପାଖରେ ପହଞ୍ଚି ଦେଖିଲେ ସ୍ୱୟଂ ଭଗବାନ ଗଛର ଏକ ପତ୍ରରେ ଅଙ୍ଗୁଷ୍ଠ ପ୍ରମାଣ ପୁରୁଷ ରୂପେ ଶୟନ କରିଛନ୍ତି । ସିଦ୍ଧ ମହର୍ଷି ସ୍ୱୟଂ ପରଂବ୍ରହ୍ମଙ୍କୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ତାଙ୍କ ପାଟି ମାଧ୍ୟମରେ ଗର୍ଭଗୃହ ଭିତରକୁ ନେଇଗଲେ । କିଛି କାଳ ତାଙ୍କପାଟି ଭିତରେ ଅବସ୍ଥାପନ କରିବା ପରେ ପଦାକୁ ଆସି ଭଗବାନଙ୍କୁ ପ୍ରାର୍ଥନା କଲେ । ଯଦିଓ ଋଷିପ୍ରତିମ ଭଗବାନଙ୍କ ପେଟ ଗହ୍ୱରରେ ବିଭିନ୍ନ ଅଲୌକିକ ଘଟଣା ଦର୍ଶନ ଓ ଆହରଣ କରିଥିଲେ, କିନ୍ତୁ ଆତ୍ମଜ୍ଞାନ ଲାଭ କରିପାରିନଥିଲେ । ତେଣୁ ଋଷି କିଛି କାଳ ତପସ୍ୟାମଗ୍ନ ହୋଇ ରହିଥିଲେ । ଋଷିଙ୍କ ତପସ୍ୟାରେ ପ୍ରୀତହୋଇ ଭଗବାନ କହିଥିଲେ, ଏହି ପୁରୁଷୋତ୍ତମ ପୀଠଟି ହେଉଛି ଏକ ପବିତ୍ର ଓ ଧର୍ମ ଆହରଣ କରିବାର ପ୍ରକୃତପୀଠ । ଆଉ ମଧ୍ୟ ମୋର ନିତ୍ୟଲୀଳା ପୀଠ । ଏଠାରେ ପ୍ରଳୟ ହୁଏ ନାହିଁ । ତୁମପାଇଁ ମୁଁ ଗୋଟିଏ ବାସସ୍ଥଳୀ କରିଦେବି । ତେଣୁ ତୁମେ ଏଠାରେ ବସତି ସ୍ଥାପନ କର । ସେହି ସତ୍ୟଲୀଳାସ୍ଥଳୀ ତଥା ମାର୍କଣ୍ଡେୟ ପୁଷ୍କରିଣୀ ତଟରେ ରହି ମୋର ଦ୍ୱିତୀୟ ତନୁ ପ୍ରଭୁ ଶିବଙ୍କୁ ଆରାଧନା କର । ଫଳରେ ତୁମେ ମୃତ୍ୟୁକୁ ଜୟ କରିପାରିବ । ସେହିଦିନଠାରୁ ସେହି ଗର୍ଭଟି ମାର୍କଣ୍ଡେୟ ଋଷିଙ୍କ ନାମାନୁସାରେ ମାର୍କଣ୍ଡେୟ ପୁଷ୍କରିଣୀ ରୂପେ ସୁବିଦିତ । ଯାହାକି ଆଜି ଏହି ପୀଠଟି ଏକ ମହାନ୍ ତୀର୍ଥକ୍ଷେତ୍ର ରୂପେ ବିବେଚିତ । କଥିତ ଅଛି ଏହି ଜଳରେ ସ୍ନାନ କରି ଶିବଙ୍କୁ ଦର୍ଶନ କଲେ ଶତଜନ୍ମର ପାପ ନାଶ ହେବା ସଙ୍ଗେ ସଙ୍ଗେ ପୁଣ୍ୟ ଅର୍ଜନ ହୋଇଥାଏ ।

## ଶ୍ୱେତଗଙ୍ଗା

ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଥିବା ତୀର୍ଥମାନଙ୍କ ମଧ୍ୟରେ ଶ୍ୱେତଗଙ୍ଗା ଅନ୍ୟତମ । ଏହା ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମନ୍ଦିର ତଥା ଓଡ଼ିଶାର ବଡ଼ମନ୍ଦିରର ଦକ୍ଷିଣରେ ଓ ବାଲିସାହିରେ ଅବସ୍ଥିତ । ଏହି ଧର୍ମକ୍ଷେତ୍ରର ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ମତ ଥିଲେ ମଧ୍ୟ ପୌରାଣିକ ମତବାଦାନୁସାରେ ଏକଦା ଶ୍ୱେତ ନାମକ ସତ୍ୟସନ୍ଧ ମହାରାଜା ରାଜତ୍ୱ କରୁଥିଲେ । ସେହି ରାଜ୍ୟରେ କାପାଳ ଗୌତମୀ ନାମକ ଏକ ମହର୍ଷି ବାସ କରୁଥିଲେ । ସେହି ମହର୍ଷିଙ୍କର ଏକମାତ୍ର ପୁତ୍ରର ମୃତ୍ୟୁରେ ମହର୍ଷି ଦୁଃଖ ଓ ବିଷାଦରେ ମ୍ରିୟମାଣ ହୋଇପଡ଼ିଥିଲେ । ଋଷିଙ୍କ ଦୁଃଖରେ ରାଜା ମଧ୍ୟ ଭାଙ୍ଗି ପଡ଼ିଥିଲେ । ତେଣୁ ଋଷିଙ୍କ ଦୁଃଖ ମୋଚନ କରିବାପାଇଁ ରାଜା ଶ୍ୱେତ ଯମପୁରକୁ ଯାଇ ମୃତ ପୁତ୍ରଙ୍କୁ ଫେରାଇ ଆଣିବାପାଇଁ ପ୍ରଭୁ ଶ୍ରୀଶିବଙ୍କ ପାଖରେ କଠୋର ତପସ୍ୟା କରିଥିଲେ । ରାଜାଙ୍କ ନିଷ୍ପାପର ତପସ୍ୟାରେ ପ୍ରଭୁ ଶ୍ରୀଶିବ ମୁଗ୍ଧହୋଇ ମହର୍ଷିଙ୍କର ମୃତ ପୁତ୍ରକୁ ଯମରାଜାଙ୍କ ପାଖରୁ ଫେରାଇ ଆଣିଥିଲେ ।

ତତ୍‌ପରେ ରାଜା ଶ୍ୱେତ ଦକ୍ଷିଣ ମହୋଦଧି ତୀରରେ ଏକ ଶ୍ୱେତ ମାଧବଙ୍କ ବିଗ୍ରହ ବସାଇ ପୂଜା କରିଥିଲେ । ଏତଦ୍‌ବ୍ୟତୀତ ରାଜା ବଡ଼ଭାଇ ଶ୍ରୀବଳଭଦ୍ର, ଭଉଣୀ ସୁଭଦ୍ରାଙ୍କ

ସମେତ ଓଡ଼ିଶାର ବଡ଼ଠାକୁର ତଥା ସାନଭାଇ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ମଧ୍ୟ ଶୁଦ୍ଧପୂତ ମନରେ ପୂଜା କରୁଥିଲେ । ଏହି ପୂଜାରେ ଖୁସିହୋଇ ସ୍ୱୟଂ ଭଗବାନ ଶ୍ରୀଚତୁର୍ଦ୍ଧାମୂର୍ତ୍ତିରେ ରାଜାଙ୍କୁ ଦର୍ଶନ ଦେଇଥିଲେ । ଏହିଦର୍ଶନରେ ରାଜା ନିଜକୁ ଧନ୍ୟ ମନେ କରିବା ସଙ୍ଗେ ସଙ୍ଗେ ପରମ ମୁକ୍ତିପଦ ବୈଷ୍ଣବ ଭୂମି ଦାନ କରିବାପାଇଁ ଦାନ ମାଗିଥିଲେ । ରାଜାଙ୍କର ଭକ୍ତିରେ ସ୍ୱୟଂ ଭଗବାନ ଅତ୍ୟନ୍ତ ପ୍ରୀତହୋଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଏକ ପବିତ୍ର ଭୂମି ଅର୍ପଣ କରିଥିଲେ । ଭଗବାନ ରାଜାଙ୍କୁ କହିଥିଲେ ତୁମେ ଏହି ଭୂମିରେ ବାସ କରି ବୈଷ୍ଣବତ୍ୱ ପ୍ରାପ୍ତ ହୁଅ । କାଳକ୍ରମେ ଏହି ସ୍ଥାନଟି ଶ୍ୱେତଗଙ୍ଗା ନାମରେ ଏକ ତୀର୍ଥ ପୁଷ୍କରିଣୀରେ ପରିଣତ ହୋଇଥିଲା ।

ବର୍ତ୍ତମାନ ଏହି ତୀର୍ଥର ତଟଦେଶରେ ଶ୍ୱେତମାଧବ, ମତ୍ସ୍ୟମାଧବ, ଗଙ୍ଗାମାତା ମଠ, ମୁକ୍ତିଶିଳା ଓ ବାସୁଦେବ ସାର୍ବଭୌମ ମଠ ପ୍ରତୀୟମାନ । କଥିତ ଅଛି ଭକ୍ତମାନେ ଏହି ତୀର୍ଥ ଜଳରେ ସ୍ନାନ କରି ଶ୍ୱେତମାଧବଙ୍କୁ ଦର୍ଶନ କଲେ ସ୍ୱୟଂ ଭଗବାନଙ୍କୁ ପ୍ରାପ୍ତ ହୁଅନ୍ତି । ଏହି ତୀର୍ଥ କ୍ଷେତ୍ରରେ ମାନସିକ ଥିବା ପିଲାମାନଙ୍କର ମୁଣ୍ଡର ବାଳ କଟା ହେବାର ବିଧିବିଧାନମାନ ଅଛି । ଏହି ପୀଠରେ ପୂର୍ବପୁରୁଷ ପିତା, ପିତାମହ ଓ ପ୍ରପିତାମହମାନଙ୍କର ପିଣ୍ଡଦାନ ଦିଆଯାଇଥାଏ । ଆଉ ମଧ୍ୟ ଏହି ଜଳରେ ସ୍ନାନ କଲେ ଶତ ଶତ ଜନ୍ମର ପାପ ନାଶ ହେବା ସଙ୍ଗେ ସଙ୍ଗେ ଧର୍ମ ତଥା ପୁଣ୍ୟ ଅର୍ଜନ ହୋଇଥାଏ ।

## ରୋହିଣୀ କୁଣ୍ଡ

ଲୋକାନୁବାଦରେ ରୋହିଣୀକୁଣ୍ଡକୁ କେହି କେହି ଗୁପ୍ତଗଙ୍ଗା କହିଥାନ୍ତି । ଗବେଷକଙ୍କ ମତରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ପ୍ରତିଷ୍ଠା ପୂର୍ବରୁ ଏହି କୁଣ୍ଡ ନିର୍ମାଣ ହୋଇଅଛି । ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଏହି କୁଣ୍ଡର ଗୁରୁତ୍ୱ ଅତି ମହାନ୍ । ଯେହେତୁ ଏହି ତୀର୍ଥଟି ଶ୍ରୀଜଗନ୍ନାଥଙ୍କ ବେଢ଼ା ଭିତରେ ଅଛି । ସ୍କନ୍ଦ ପୁରାଣରେ ଏହି ତୀର୍ଥ ସମ୍ପର୍କରେ ବିଶେଷ ଭାବରେ ବର୍ଣ୍ଣିତ ହୋଇ ଭକ୍ତମାନଙ୍କର ବିଶ୍ୱାସ ଭାଜନ ହୋଇପାରିଛି । ଏହି କୁଣ୍ଡ ଭିତରେ ପଥରରେ ନିର୍ମିତ ଏକ ଚତୁର୍ଭୁଜ ବିଶିଷ୍ଟ ପକ୍ଷୀ ଖଚିତ ହୋଇଅଛି । ଏହି ପକ୍ଷୀର ଆଗରେ ଏକ ଚକ୍ରଚିହ୍ନ ଅଛି । ଯାହାକି ତାଙ୍କର ହସ୍ତରେ ଦୁଇଟି ଶଙ୍ଖ ଓ ଚକ୍ରଚିହ୍ନ ଧରିଥିବା ପରି ଦେଖାଯାଇଥାଏ । ପ୍ରଳୟ ସମୟରେ ଏହି କୁଣ୍ଡର ଜଳ ପ୍ଲାବିତ ହୋଇଥାଏ ଓ ସୃଷ୍ଟି ସମୟରେ ସମସ୍ତ ଜଳକୁ ଧାରଣ କରିଥାଏ ।

ଏହି କୁଣ୍ଡର ଜଳକୁ ସ୍ପର୍ଶ କଲେ ସମସ୍ତ ପ୍ରକାର ପାପରୁ ମୁକ୍ତି ମିଳିଥାଏ । ତେଣୁ ଭକ୍ତମାନେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଅବସରରେ ଏହି କୁଣ୍ଡର ପବିତ୍ର ଜଳକୁ ସ୍ପର୍ଶ କରିଥାନ୍ତି ।

## ମହୋଦଧି

ସମସ୍ତ ପ୍ରକାର ସମୁଦ୍ର ମଧ୍ୟରେ ଶ୍ରୀକ୍ଷେତ୍ର ତଥା ଦେବପୀଠ ସଂଲଗ୍ନ ମହୋଦଧି ଏକ ସ୍ୱତନ୍ତ୍ର ଗୁରୁତ୍ୱ ବହନ କରିଆସିଅଛି । ଏହା ଦକ୍ଷିଣ ମହାସାଗରର ଏକ ଅଂଶବିଶେଷ । ଏହି ତଟର ଜଳରାଶି ପବିତ୍ର ଅଟେ । ପୌରାଣିକ ମତରେ ଏହି ଜଳରେ ସ୍ନାନ କଲେ ମନ ପବିତ୍ର ହୋଇଥାଏ ଓ ଜୀବନର ସମସ୍ତ ପାପକୁ ଏହି ଜଳରାଶି ଧୌତ କରିଥାଏ । ତେଣୁ କାର୍ତ୍ତିକ ମାସରେ ଭାରତ କାହିଁକି ପୃଥିବୀର କୋଣଅନୁକୋଣରୁ ଶତ ଶତ ଭକ୍ତ ଏହି ତୀର୍ଥର ଜଳରେ ବୁଡ଼ ପକାଇଥାଆନ୍ତି । ଚନ୍ଦ୍ରଭାଗା ଶ୍ରୀକ୍ଷେତ୍ରର ଏକ ଅଂଶବିଶେଷ ଓ ଏକ ପବିତ୍ର ଧର୍ମପୀଠ । ତେଣୁ ମାଘସପ୍ତମୀର ପ୍ରଭାତରେ ଲକ୍ଷ ଲକ୍ଷ ଭକ୍ତ ଚନ୍ଦ୍ରଭାଗାଠାରେ ସମୁଦ୍ର ଜଳରାଶିରେ ବୁଡ଼ ପକାଇଥାଆନ୍ତି ଓ ସେମାନଙ୍କର ମାନସିକ ପୂରଣ କରିଥାନ୍ତି । ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ସମୁଦ୍ର ଜଳକୁ ଜୀବନରେ ଥରେ ସ୍ପର୍ଶ କଲେ ସ୍ୱର୍ଗାରୋହଣ ହୋଇଥାଏ । କାରଣ ଏଠାରେ ସ୍ୱର୍ଗଦ୍ୱାର ନାମରେ ଏକ ଶ୍ମଶାନ ପ୍ରତୀୟମାନ । ତେଣୁ ପ୍ରତ୍ୟହ ଏଠାରେ ଅସଂଖ୍ୟ ଶବସତ୍କାର ହୋଇଥାଏ । ସ୍କନ୍ଦପୁରାଣରୁ ଉଦ୍ଧୃତ ଏଠାରେ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରିବାପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରୀବ୍ରହ୍ମାଙ୍କୁ ଆଣି ଏହିଠାରେ ସ୍ୱର୍ଗରୁ ଅବତରଣ କରିଥିଲେ । ତେଣୁ ଏହାର ନାମ ସ୍ୱର୍ଗଦ୍ୱାର ହୋଇଅଛି । ଏହି ପୀଠର ଜଳରାଶି ଓ ଜଳବାୟୁ ପବିତ୍ର ଓ ସ୍ୱାସ୍ଥ୍ୟପ୍ରତି ହିତକର । ଏହି ସ୍ଥାନଟି ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଶୋଭାର ଭଣ୍ଡାର । ବିଶେଷତଃ ପ୍ରଭାତ ଓ ସାନ୍ଧ୍ୟସମୟରେ ଦୃଶ୍ୟ ଅତ୍ୟନ୍ତ ମନୋହର ଓ ଅପରୂପା ଶୋଭାର ଭଣ୍ଡାର । ତେଣୁ ପୃଥିବୀର କୋଣଅନୁକୋଣରୁ କୋଟି କୋଟି ଭକ୍ତ ଏହି ତୀର୍ଥସ୍ଥାନ ଦର୍ଶନ, ସ୍ନାନ ଓ ଉପଭୋଗ କରି ସେମାନଙ୍କର ପାପନାଶ, ଧର୍ମଅର୍ଜନ, ଆନନ୍ଦ ଉପଭୋଗ ଓ ରୋଗମୁକ୍ତ ହୋଇଥାନ୍ତି ।

ରାମାୟଣରେ ବର୍ଣ୍ଣିତ ଅଛି ପୂର୍ବକାଳରେ ସାଗର ବଂଶର ବୀର ଯୋଦ୍ଧାମାନେ ଏହାକୁ ଖନନ କରିଥିବାରୁ ଏହାର ନାମ ସାଗର ଅଟେ । ପୁରାଣରେ ବର୍ଣ୍ଣିତ ଅଛି ମହୋଦଧି ମଧ୍ୟରେ ସ୍ୱୟଂ ଶ୍ରୀବିଷ୍ଣୁ ଚତୁର୍ଭୁଜ ରୂପରେ ମା'ଲକ୍ଷ୍ମୀଠାକୁରାଣୀଙ୍କ ସହିତ ବିରାଜମାନ କରିଥିଲେ । ତେଣୁ ଏହା ଏକ ଧର୍ମପୀଠ ରୂପେ ବିବେଚିତ ହୋଇଆସିଅଛି । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ତଥା କବିରାଜ ଜୟଦେବଙ୍କ ଦ୍ୱାରା ଲିଖିତ ଗୀତଗୋବିନ୍ଦ କାବ୍ୟରେ ଉଦ୍ଧୃତ ଅଛି, ଶ୍ରୀବିଷ୍ଣୁଙ୍କର ଦଶାବତାର ମଧ୍ୟରେ ମତ୍ସ୍ୟ ଅବତାର ଜଳରାଶିରେ ହୋଇଥିଲା । ସତ୍ୟଯୁଗରେ ଦେବତାମାନେ ସମୁଦ୍ର ମନ୍ଥନ କରିବା ଅବସରରେ ଜଗତର ମାତା ମା' ମହାଲକ୍ଷ୍ମୀଙ୍କୁ ଏହି ପବିତ୍ର ଜଳରାଶିରୁ ଉଦ୍ଧାର କରିଥିଲେ । ସ୍ୱୟଂ ଶ୍ରୀବିଷ୍ଣୁ ମା'ମହାଲକ୍ଷ୍ମୀଙ୍କୁ ବିବାହ କରିଥିଲେ । ମା'ମହାଲକ୍ଷ୍ମୀ ସମୁଦ୍ରରୁ ଜାତ ହୋଇଥିବାରୁ, ସେ ସମୁଦ୍ରର ରାଜା ବରୁଣଙ୍କ କନ୍ୟା । ବରୁଣ ହେଲେ ସମୁଦ୍ର ଦେବତା । ତେଣୁ ପୁରୁଷୋତ୍ତମ କ୍ଷେତ୍ରର ମହୋଦଧିର ସ୍ଥାନ ତଥା ଜଳ କେତେ ପବିତ୍ର ଓ ପୁଣ୍ୟ ତାହା ସହଜରେ ଅନୁମେୟ ।

## ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ

ପଞ୍ଚତୀର୍ଥମାନଙ୍କ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ରର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ଅନ୍ୟତମ । ଏହାର ଐତିହ୍ୟ ବିଭିନ୍ନ ପୁରାଣ, ଶାସ୍ତ୍ର ଓ ବେଦ ଇତ୍ୟାଦିରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଅଛି । ଏହି ସରୋବରଟି ପୁରୀର ପ୍ରାଚୀନତମ ତୀର୍ଥକ୍ଷେତ୍ର । ପ୍ରକାଶଥାଉ କି, ପୁରୁଷୋତ୍ତମ କ୍ଷେତ୍ରର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମନ୍ଦିର ପ୍ରତିଷ୍ଠା ପାଇଁ ପ୍ରଭୁ ଶ୍ରୀବିଷ୍ଣୁଙ୍କର ପରମ ଭକ୍ତ ତଥା ମହର୍ଷି ନାରଦଙ୍କ ପରାମର୍ଶକ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ ଯଜ୍ଞ କରାଇବା ସଙ୍ଗେ ସଙ୍ଗେ ମନ୍ଦିର ପ୍ରତିଷ୍ଠା କରାଇବା ପାଇଁ ସ୍ୱର୍ଗରେ ଥିବା ପିତାମହ ଶ୍ରୀବ୍ରହ୍ମାଙ୍କୁ ନିମନ୍ତ୍ରଣ କରି ଏହି ସ୍ଥାନରୁ ସ୍ୱର୍ଗାରୋହଣ କରିଥିଲେ । ଏହି ସରୋବରର ଦୈର୍ଘ୍ୟ ୪୮୫ ଫୁଟ୍ ଓ ଓସାର ୩୯୬ ଫୁଟ୍ ଅଟେ । ଏହାର ପୂର୍ବରେ ପ୍ରଭୁ ଶ୍ରୀନୀଳକଣ୍ଠେଶ୍ୱର ମନ୍ଦିର ଅବସ୍ଥିତ ।

ଏହି ତୀର୍ଥସ୍ଥାନଟି ନିର୍ମାଣ ସମ୍ପର୍କରେ ବିଭିନ୍ନ ମତବାଦ ଥିଲେ ମଧ୍ୟ ଅଶ୍ୱମେଧ ଯଜ୍ଞ ସମୟରେ ଅନେକ ଗୋଦାନ ପ୍ରଦାନ କରାଯାଇଥିଲା । ସେହି ସବୁ ଗାଭୀମାନଙ୍କର ଖୁରାରେ ଗୋଟିଏ ବୃହତ୍ ଗର୍ତ୍ତ ସୃଷ୍ଟି ହେଲା । ବର୍ତ୍ତମାନ ଅତୀତର ସେହି ପ୍ରଶସ୍ତ ଓ ଗଭୀର ଗାତକୁ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ରୂପେ କୁହାଯାଉଅଛି । ଏଥିରେ ବଡ଼ ବଡ଼ କୂର୍ମ ରହୁଥିଲେ । ଲୋକାଚାରରେ ଏହି କୂର୍ମମାନେ ହେଲେ, ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମନ୍ଦିର ନିର୍ମାଣ ପାଇଁ ଶହ ଶହ ପଥୁରିଆ ପଥର ବୋହି ବୋହି କୂର୍ମ ହୋଇଯାଇଥିଲେ । କାଳକ୍ରମେ ସେମାନେ ଏହି ପୋଖରୀରେ ବସବାସ କରୁଥିଲେ । ଏହି ଧର୍ମପୀଠରେ ପିଣ୍ଡଦାନଠାରୁ ଆରମ୍ଭ କରି ଯଜ୍ଞମାନ କରାଯିବାର ବିଧିବିଧାନମାନ ରହିଅଛି ।

ସର୍ବୋପରି ଏହି ପାଞ୍ଚଟି ତୀର୍ଥର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଏକ ଅଟେ । ଜ୍ୟେଷ୍ଠମାସର ଶୁକ୍ଳପକ୍ଷ ଦଶମୀଠାରୁ ସ୍ନାନ ପୂର୍ଣ୍ଣିମା ଓ କେହି କେହି କାର୍ତ୍ତିକ ମାସ ଶୁକ୍ଳପକ୍ଷ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପଞ୍ଚତୀର୍ଥ ବ୍ରତ ପାଳନ କରିଥାନ୍ତି । ଏହିସବୁ ପବିତ୍ର ଦିବସରେ ଭକ୍ତମାନେ ପଞ୍ଚତୀର୍ଥ ଦର୍ଶନ, ସ୍ନାନ, ଜଳସ୍ପର୍ଶ କରିସାରି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ପଞ୍ଚତୀର୍ଥ ବ୍ରତ ପାଳନ ସିଦ୍ଧିଲାଭ ହୋଇଥାଏ । କେହି କେହି ଏହି ପଞ୍ଚତୀର୍ଥ ଦିନକୁ ପଞ୍ଚୁକ ବୋଲି କହିଥାନ୍ତି । ଶ୍ରୀପୁରୁଷୋତ୍ତମଙ୍କର ଧର୍ମସ୍ରୋତରେ ଏହି ପଞ୍ଚତୀର୍ଥର ଧର୍ମସ୍ରୋତ ସମ୍ମିଶ୍ରଣ ହୋଇ ସୃଷ୍ଟି କରିପାରିଛି ଏକ ମହାନ୍ ସଂସ୍କୃତି ଓ ପରମ୍ପରା । ତେଣୁ ବହୁ ଅନାଦି କାଳରୁ ଅଖିଳବ୍ରହ୍ମାଣ୍ଡର ପ୍ରଭୁ ଶ୍ରୀଜଗନ୍ନାଥ ଏହି ପଞ୍ଚତୀର୍ଥକୁ କୋଳରେ ଧାରଣ ପୂର୍ବକ ସମଗ୍ର ମାନବଜାତି ତଥା ଜୀବଜଗତର କଲ୍ୟାଣ କରୁଛନ୍ତି ।

* * * * * * *

# ଶ୍ରୀକ୍ଷେତ୍ରର ମଠ ସମୂହ



ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ତଥା ବହୁ ପୁରାଣ ଯୁଗରୁ ପବିତ୍ର ଓଡ଼ିଶାମାଟିରେ ଶ୍ରୀକ୍ଷେତ୍ରକୁ ଏକ ଆଧ୍ୟାତ୍ମିକ ପୀଠର କେନ୍ଦ୍ରସ୍ଥଳୀ ରୂପେ ବିବେଚିତ କରାଯାଇଅଛି । ବେଦ-ବେଦାନ୍ତ, ପୁରାଣଶାସ୍ତ୍ର ଓ ମାଦଳା ପାଞ୍ଜିର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ, ଏହି ପୀଠକୁ ବିଭିନ୍ନ ନାମରେ ନାମିତ କରାଯାଇଅଛି । ଯଥା- ନୀଳାଚଳ ଧାମ, ଶ୍ରୀପୁରୁଷୋତ୍ତମ ପୀଠ, ଶଙ୍ଖକ୍ଷେତ୍ର, ନୀଳକନ୍ଦର ଇତ୍ୟାଦି । ଏହି ପୀଠର କଳା, ସଂସ୍କୃତି ଓ ପରମ୍ପରା ଅତ୍ୟନ୍ତ ମହାନ, ବ୍ୟାପକ ଓ ଅବର୍ଣ୍ଣନୀୟ । କାରଣ ଏହି ପୀଠର ବଡ଼ଠାକୁର ଶ୍ରୀଜଗନ୍ନାଥ ବଡ଼ ଦେଉଳର ରତ୍ନସିଂହାସନରେ ବଡ଼ଭାଇ ଶ୍ରୀବଳଭଦ୍ର ଓ ଭଗ୍ନୀ ସୁଭଦ୍ରାକୁ ନେଇ ବିରାଜିତ । ଯାହାର ମହିମା, ଗୁଣଗାରିମା, ଧାର୍ମିକ ଚେତନା ଓ ଦର୍ଶନ ଅସରନ୍ତି, ଅସୀମ, ଅମାପ, ଅଦୃଶ୍ୟ ଓ ଅସ୍ପଷ୍ଟ । ସ୍ୱୟଂ ଭଗବାନ ଶ୍ରୀବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରେ ଶ୍ରୀପୁରୁଷୋତ୍ତମଙ୍କ ନାମ ଅନ୍ୟତମ ।

ଶ୍ରୀ ଶଙ୍କରାଚାର୍ଯ୍ୟ (୭୮୮-୮୨୦ଖ୍ରୀଷ୍ଟାବ୍ଦ) ବିରଚିତ "ବିଷ୍ଣୁ ସହସ୍ର ନାମ ଭାଷ୍ୟମ୍"ରୁ ଉଦ୍ଧୃତ :-

"ତସ୍ୟଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ,
ବିଷ୍ଣୋର୍ନାମ ସହସ୍ରଂ ମେ ଶୃଣୁ ପାପଭୟାପହମ୍" ।

ଆଉ ମଧ୍ୟ ଶ୍ରୀମଦ୍‌ଭଗବତ୍ ଗୀତା (ଦଶମ ଅଧ୍ୟାୟ ୧୫ଶ୍ଳୋକରେ) ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି କୁହାଯାଇଅଛି ।

"ସ୍ୱୟମେବାତ୍ମନାତ୍ମାନଂ ବେତ୍‌ଥ ତ୍ୱଂ ପୁରୁଷୋତ୍ତମ ।
ଭୂତଭାବନ ଭୂତେଶ ଦେବ ଦେବ ଜଗତ୍‌ପତେ ॥"

ଏହି କ୍ଷେତ୍ରକୁ ଭୂସ୍ୱର୍ଗ ପୁରୀବୋଲି "ତନ୍ତ୍ର ଯାମଳ" ୨୬ଶ୍ଳୋକରେ କୁହାଯାଇଅଛି ।

"ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତ ନାମ ଭୟପ୍ରଦଃ ।"

ଏହି ପୀଠରେ ଶତ ଶତ ଦେବଦେବୀ, ମନ୍ଦିର, ପୀଠ, ଆଶ୍ରମ, ମଣ୍ଡପ ତୀର୍ଥକ୍ଷେତ୍ରର ଆସ୍ଥାନ ଉପରେ ବିରାଜିତ । ଏହି ସବୁ ଦେବଦେବୀ ଜଗନ୍ନାଥ ସଂସ୍କୃତିରେ ମିଶ୍ରଣ ହୋଇ ସୃଷ୍ଟି କରିଅଛି ଏକ ମହାନ ଧର୍ମନଦୀ । ସେହି ମହାନ ଧର୍ମନଦୀ ମଧ୍ୟରେ ମଠଗୁଡ଼ିକର ମାହାତ୍ମ୍ୟ ସ୍ୱତନ୍ତ୍ର । ଜଗତର ନାଥ ଶ୍ରୀଜଗନ୍ନାଥଙ୍କର ସଂସ୍କୃତି ପରମ୍ପରା, ଦୈନନ୍ଦିନ ରୀତିନୀତି ଓ ମେଳା ମହୋତ୍ସବରେ ମଠମାନଙ୍କର ଭୂମିକା ନିବିଡ଼ ସମ୍ପର୍କ ନିହିତ ଅଛି ।

ଦାରୁମୂର୍ତ୍ତି ମୁରାରୀ ଶ୍ରୀଜଗନ୍ନାଥଙ୍କର ସ୍ୱରୂପ ଓ ତତ୍ତ୍ୱ ସମସ୍ତ ସଂମ୍ପ୍ରଦାୟ ତଥା ବିଭିନ୍ନ ଧର୍ମଦ୍ୱାରା ସମ୍ମତ ଓ ଆଦୃତ । ଏହି ପୀଠର କଳା ସଂସ୍କୃତି ଉପରେ ବିଭିନ୍ନ ସମୟରେ ବିଭିନ୍ନ ଧର୍ମାବଲମ୍ବୀ, ମହାପୁରୁଷ, ସାଧୁ, ସନ୍ଥ ଓ ପରମ ଭକ୍ତମାନେ ଆକର୍ଷିତ ହୋଇ ସେମାନଙ୍କର ଆସ୍ଥାନ ମଣ୍ଡନ କରିଛନ୍ତି । ପରବର୍ତ୍ତୀ ସମୟରେ ସେହି ସବୁ ଧର୍ମର ଭକ୍ତ ଓ ଆଚାର୍ଯ୍ୟଗଣ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉପରେ ଅଶେଷ ଭକ୍ତିଭାବ ଓ ବିଶ୍ୱାସ ସ୍ଥାପନ କରି ନିଜ ନିଜର ଇଷ୍ଟ ଦେବ-ଦେବୀଙ୍କୁ ମଠରେ ସ୍ଥାପନ କରିଛନ୍ତି । କାଳକ୍ରମେ ଶ୍ରୀପ୍ରଭୁଙ୍କ ସେବା, ବେଶଭୂଷା, ପର୍ବପର୍ବାଣି ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗଦେଇ ସେବା କରିବାକୁ ପଛାଇନଥାନ୍ତି । ତେଣୁ ସେମାନେ ଏକ ମଠ (ଆଶ୍ରୟସ୍ଥଳୀ) ସ୍ଥାପନ କରିବା ସଙ୍ଗେ ସଙ୍ଗେ ନାମକରଣ ଦେଇଥାନ୍ତି । ସେଠାରେ ସେମାନେ ନିଜର ଇଷ୍ଟଦେବଙ୍କୁ ପୂଜା କରିବା ସହ ଶ୍ରୀଜଗନ୍ନାଥଙ୍କ ସେବା ଆଦି କାର୍ଯ୍ୟରେ ନିୟୋଜିତ ହୋଇ ଆସୁଛନ୍ତି ।

ବିଭିନ୍ନ ମତବାଦରେ "ମଠ" ଶବ୍ଦର ଅର୍ଥ ଭିନ୍ନ ଭିନ୍ନ ଅଟେ । ଯେଉଁଠାରେ ବିଦ୍ୟାର୍ଥୀମାନେ ବାସ ସହିତ ବିଦ୍ୟା ଅଧ୍ୟୟନ କରିଥାନ୍ତି, ତାହାକୁ ମଠ ବା ଆଶ୍ରମ କୁହାଯାଇଥାଏ । ଯାହାକି ଅତୀତରେ ବିଦ୍ୟାର୍ଥୀମାନେ ଗୁରୁକୁଳ ଆଶ୍ରମରେ ବିଦ୍ୟା ଅଧ୍ୟୟନ କରୁଥିଲେ । ଅନ୍ୟ ଗୋଟିଏ ଅର୍ଥ ହେଉଛି, ଜମିବାଡ଼ି ଖଞ୍ଜାହୋଇ ଦେବପୂଜା ହେଉଥିବା ଗୃହକୁ ମଠ କୁହାଯାଏ । ସଂସ୍କୃତ ମହାଭାରତରେ ଉଦ୍ଧୃତ ମଠ କହିଲେ 'ଆଶ୍ରମ କୁଟୀର' । ଯେଉଁ ସ୍ଥାନରେ ସଂସାର ତ୍ୟାଗୀ ଶୁଦ୍ଧପୂତଭାବରେ ବାସ କରୁଥିବା ଗୃହକୁ ମଧ୍ୟ ମଠ କୁହାଯାଏ । ସାଧାରଣତଃ ମଠ କହିଲେ ସନ୍ନ୍ୟାସୀ, ତପସ୍ୱୀ ଓ ଭିକ୍ଷୁକଶ୍ରେଣୀୟ ପରମ ଭକ୍ତମାନେ ରହି ସେମାନଙ୍କର ଇଷ୍ଟଦେବଙ୍କୁ ପୂଜା ଅର୍ଚ୍ଚନା କରିଥାନ୍ତି, ସେହି ଗୃହକୁ ମଠ କୁହାଯାଏ । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ସଂପ୍ରଦାୟର ଆଧ୍ୟାତ୍ମିକ କେନ୍ଦ୍ରକୁ ମଠ କୁହାଯାଏ । କ୍ରମଶଃ ନିତ୍ୟେ ନୀଳାଚଳ ଧାମରେ ମଠଗୁଡ଼ିକ ଶିକ୍ଷା ପ୍ରସାରଣ କ୍ଷେତ୍ର ସଂସ୍କୃତିର ସଂବାହକ ଚର୍ଚ୍ଚାର ପ୍ରମୁଖ କେନ୍ଦ୍ର ପାଲଟି ଗଲା । ତେଣୁ ଶ୍ରୀକ୍ଷେତ୍ରରେ ଆରମ୍ଭ

ହେଲା ମଠ ସଂସ୍ଥାପନା । ମଠଗୁଡ଼ିକର ନାମକରଣ ବିଭିନ୍ନ ଧର୍ମସଂପ୍ରଦାୟର ଭିନ୍ନ ଭିନ୍ନ ଅଟେ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତାନୁଯାୟୀ ବର୍ତ୍ତମାନ ଓଡ଼ିଶାରେ ଯେଉଁସବୁ ସ୍ଥାନରେ ମଠଗୁଡ଼ିକ ଦୃଷ୍ଟିଗୋଚର ହେଉଅଛି, ଅତୀତରେ ତାହାସବୁ ବୌଦ୍ଧବିହାର ଆଦର୍ଶରେ ଗଢ଼ି ଉଠିଥିଲା । ନେପାଳୀ ଭାଷାରେ "ବିହାର" ଶବ୍ଦର ଅର୍ଥ ବୌଦ୍ଧ ଧର୍ମାବଲମ୍ବୀଙ୍କ ଆଶ୍ରମ ବା ମଠକୁ ବୁଝାଇଥାଏ । ସେହିପରି ଖ୍ରୀଷ୍ଟିୟାନଙ୍କ ମଠକୁ "ମନାଷ୍ଟ୍ରି" କୁହାଯାଇଥାଏ ।

ଶ୍ରୀକ୍ଷେତ୍ରରେ ନିର୍ଦ୍ଦିଷ୍ଟ କେତୋଟି ମଠ ଅଛି, ତାହାର ସଠିକ୍ ହିସାବ ଆଜି ପର୍ଯ୍ୟନ୍ତ ଜଣା ନଥିଲା । ଗବେଷକ ଡଃ ସୁରେନ୍ଦ୍ର କୁମାର ମିଶ୍ରଙ୍କ ଲିଖିତ "ପୁରୀର ମଠ ଐତିହ" ପୁସ୍ତକରେ ୩୭୪ଟି ମଠ / ଆଶ୍ରମ ବର୍ଣ୍ଣିତ ହୋଇଅଛି । ମଠର ମୁଖ୍ୟଙ୍କୁ "ମହନ୍ତ" କହନ୍ତି । ସାଧାରଣତଃ ମଠଗୁଡ଼ିକରେ ଦୁଇପ୍ରକାର ମହନ୍ତ ଦେଖାଯାଇଥାଏ । ଯେଉଁ ମଠର ମହନ୍ତ ଆଜୀବନ ସନ୍ନ୍ୟାସୀ ବ୍ରତ ଅବଲମ୍ବନ କରିଥାନ୍ତି, ସେହି ସବୁ ମଠକୁ "ନିହଙ୍ଗ" ମଠ କୁହାଯାଏ । ଯେଉଁ ମଠର ମହନ୍ତ ଗୃହସ୍ଥ ଜୀବନ ତ୍ୟାଗ ନକରି ମହନ୍ତ ହୋଇଥାନ୍ତି, ସେହିସବୁ ମଠକୁ "ଗୃହୀମଠ" କୁହାଯାଇଥାଏ । ତିନୋଟି ପର୍ଯ୍ୟାୟରେ ମଠର ମହନ୍ତ ନିଯୁକ୍ତି ହୋଇଥାନ୍ତି । ମହନ୍ତଙ୍କ ମୃତ୍ୟୁପରେ ପୁରୁଷାନୁକ୍ରମେ ତାଙ୍କର ଉତ୍ତରାଧିକାରୀ ମହନ୍ତ ହୋଇଥାନ୍ତି । ଦ୍ୱିତୀୟରେ କେତେକ ମଠର ମହନ୍ତ ଦେହତ୍ୟାଗ ପୂର୍ବରୁ (ନୂଆମହନ୍ତ) ଚେଲାକୁ 'ଉଇଲ୍' କରି ମଠର ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ଚେଲାକୁ ଦିଆଯାଇଥାଏ । ତୃତୀୟରେ ମହନ୍ତଙ୍କ ମୃତ୍ୟୁପରେ ସର୍ବସାଧାରଣରେ ଗୃହୀତହୋଇ ଜଣଙ୍କୁ ସ୍ୱୀକୃତି ପ୍ରଦାନ କରାଯାଇଥାଏ । ସେହି ମହନ୍ତଙ୍କ ମୁଣ୍ଡରେ 'ମହନ୍ତେଇ' ଶାଢ଼ୀ ବା ପାଗ ବନ୍ଧା ଯାଇଥାଏ ।

ଅତୀତରେ ଶ୍ରୀଜଗନ୍ନାଥଙ୍କ ନିତ୍ୟଲୀଳା ଦର୍ଶନ, ଦିବ୍ୟ ଆନନ୍ଦ ଉପଭୋଗ ଓ ଧର୍ମର ପ୍ରଚାର ପ୍ରସାର କରିବାର ପ୍ରବଳ ଆଗ୍ରହ ଆକାଂକ୍ଷା ସହିତ ସନ୍ଥମାନେ ମଠମାନ ସ୍ଥାପନ କରି ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିଥିଲେ । କାଳକ୍ରମେ ଶ୍ରୀଜଗନ୍ନାଥ ସଂସ୍କୃତି, ପରମ୍ପରା, ମେଳା ମହୋତ୍ସବରେ ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇଗଲେ । ସେହି ମଠମାନଙ୍କ ମଧ୍ୟରୁ ନିମ୍ନରେ କେତେକ ମଠ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଇଅଛି ।

**୧. ଶ୍ରୀଗୋବର୍ଦ୍ଧନ ମଠ :-** ମଠମାନଙ୍କ ମଧ୍ୟରେ ଗୋବର୍ଦ୍ଧନ ମଠଟି ସର୍ବପ୍ରାଚୀନ । ଏହାକୁ ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ସ୍ୱର୍ଗଦ୍ୱାର ନିକଟସ୍ଥ ବାଲିସାହିରେ ନବମ ଶତାବ୍ଦୀରେ ସ୍ଥାପନ କରିଥିଲେ । ଏହି ମଠର ପୀଠାଧୀଶ ଶ୍ରୀମନ୍ଦିର ଭିତରକୁ ଦଣ୍ଡଧରି ପ୍ରବେଶ କରନ୍ତି ଓ ମନ୍ଦିର ଭିତରେ ଆସନ ପକାଇ ବସିବାର ବ୍ୟବସ୍ଥା ଅଛି । ମଠ ପକ୍ଷରୁ ପ୍ରଭୁଙ୍କ ପହଣ୍ଡି ସମୟରେ ପଂକ୍ତିଭୋଗ ହୁଏ । ଗଜପତିଙ୍କ ଛେରାପହଁରା କାର୍ଯ୍ୟପୂର୍ବରୁ ରଥ ଉପରକୁ ଯାଇ ପ୍ରଭୁଙ୍କୁ ଦର୍ଶନ ଓ ପୂଜା କରିଥାନ୍ତି । ପହଣ୍ଡି ସମୟରେ ଏହି ମଠରୁ ତୁଳସୀପତ୍ର ଓ ମାଳ ପ୍ରେରିତ ହୁଏ । ଏହି ମଠର

ଶଙ୍କରାଚାର୍ଯ୍ୟମାନେ ମୁକ୍ତି ମଣ୍ଡପର ସ୍ଥାୟୀ ସଭାପତି । ନବମ ଶତାବ୍ଦୀରେ ଶ୍ରୀଶଙ୍କରାଚାର୍ଯ୍ୟ ପୁରୀ ଆସି ଏହି ମନ୍ଦିରର କେତେକ ସାଂସ୍କୃତିକ ଓ ଧାର୍ମିକ ନୀତି ପରିବର୍ତ୍ତନ କରିଥିବାରୁ ଏହି ମଠର ମହନ୍ତ ଶ୍ରୀମନ୍ଦିରର ନୀତି ପାଳନର ସିଦ୍ଧାନ୍ତ ନେଇପାରନ୍ତି । ଏହି ମଠକୁ "ବାଲିମଠ" ମଧ୍ୟ କୁହାଯାଏ ।

**ଏମାର ମଠ :-** ଏହି ମଠ ଶ୍ରୀରାମାନୁଜ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ । ଶ୍ରୀକ୍ଷେତ୍ରରେ ଥିବା ମଠମାନଙ୍କ ମଧ୍ୟରେ ଏହି ମଠଟି ସର୍ବବୃହତ୍ତମ ଅଟେ । ଏହି ମଠକୁ ସିଂହଦ୍ୱାର ପାଖରେ ଦ୍ୱାଦଶ ଶତାବ୍ଦୀରେ ପ୍ରସିଦ୍ଧ ବୈଷ୍ଣବାଚାର୍ଯ୍ୟ ଶ୍ରୀରାମାନୁଜଙ୍କ ଶିଷ୍ୟ ଶ୍ରୀଗୋବିନ୍ଦାଚାର୍ଯ୍ୟ ସ୍ଥାପନ କରିଥିଲେ । ଏହା ଓଡ଼ିଶାର ଗୋଟିଏ ବୃହତ ପାଠାଗାର । ମଠ ଭିତର କାନ୍ଥରେ ଅତି ପୁରାତନ ରୀତିଚିତ୍ର ରହିଛି । ଏହି ମଠ ଦୈନିକ୍ ଶ୍ରୀଜଗନ୍ନାଥ ମନ୍ଦିରର ଦ୍ୱାର ଫିଟାନ୍ତି ଓ ମଙ୍ଗଳଆଳତି ସମୟରେ ମଶାଲ ଜାଳିଥାନ୍ତି । ବଡ଼ସିଂହାର ବେଶପାଇଁ ଫୁଲର ଚନ୍ଦ୍ରିକା ଯୋଗାଇ ଥାଆନ୍ତି । ଅଣସରବେଳେ ଶ୍ରୀପ୍ରଭୁଙ୍କୁ ମଇଳମ ଓ ଚକଟା ଭୋଗ ଅର୍ପଣ କରିଥାନ୍ତି । ଏହାଛଡ଼ା ମନ୍ଦିରରେ ପ୍ରତିଦିନ ସଂକୀର୍ତ୍ତନ କରିଥାନ୍ତି ।

**ଶ୍ରୀଶଙ୍କରାନନ୍ଦ ମଠ :-** ସ୍ୱାମୀ ଶଙ୍କରାନନ୍ଦ ନବମ ଶତାବ୍ଦୀରେ ବାଲିସାହିରେ ଏହି ମଠ ପ୍ରତିଷ୍ଠା କରିଥିଲେ । ଭାଗବତଟୀକାକାର ଶ୍ରୀଧରସ୍ୱାମୀ ଏହି ମଠରେ ରହୁଥିଲେ । ଏହା ଶ୍ରୀଜଗନ୍ନାଥଙ୍କ ମନ୍ଦିର ପରିଚାଳନାରେ ଅଂଶଗ୍ରହଣ କରିଥାନ୍ତି । ମଠର ମହନ୍ତ ମୁକ୍ତିମଣ୍ଡପରେ ବସନ୍ତି । ଶ୍ରୀମନ୍ଦିରର ରୋଷଘରେ "ହିଙ୍ଗୁଳାପୀଠ" ନାମକ ଦୁଇଟି ଚୁଲା ନିର୍ଦ୍ଦିଷ୍ଟଭାବେ ଅଛି । ସେହି ଚୁଲା ହେଲା ୨୮ ଓ ୨୯ ନମ୍ବର । ଅତୀତରେ ଏହି ମଠର ମଠାଧୀଶ ଶ୍ରୀଲୋକନାଥ, ଶ୍ରୀଲିଙ୍ଗରାଜ ଓ ଶ୍ରୀକପିଳାସ ମହାପ୍ରଭୁଙ୍କର ପରିଚାଳନା ଦାୟିତ୍ୱରେ ନ୍ୟସ୍ତଥିଲେ ।

**ଓଡ଼ିଆ ମଠ :-** ଏହି ମଠ ଓଡ଼ିଆ ଭାଗବତର ରଚୟିତା ଅତିବଡ଼ୀ ଶ୍ରୀଜଗନ୍ନାଥ ଦାସଙ୍କୁ ଗଜପତି ପ୍ରତାପରୁଦ୍ରଙ୍କ ରାଣୀସାହେବା ଦାନ କରିଥିଲେ । ଏହା ବାସେଳି ସାହିରେ ସାତଏକର ଜମି ଉପରେ ଅବସ୍ଥିତ । ସବୁ ମଠ ଠାରୁ ଏହି ମଠ ଶ୍ରୀଜଗନ୍ନାଥଙ୍କ ସେବାପୂଜା କାର୍ଯ୍ୟ ଅଧିକ କରିଥାନ୍ତି । ରତ୍ନସିଂହାସନର ସୁରକ୍ଷା ଓ ମରାମତି କାର୍ଯ୍ୟ ମଧ୍ୟ ଏହି ମଠ କରିଥାନ୍ତି । ବାହୁଡ଼ା ଯାତ୍ରାପରେ ରଥ ଉପରେ ଅଧରପଣା ଭୋଗ କରିବାର ପରମ୍ପରାର ଏହି ମଠର ରହିଛି । ନୀଳାଦ୍ରୀବିଜେ ଦିନ ମଠ ତରଫରୁ ରତ୍ନସିଂହାସନ ପରିଷ୍କାର ଓ ନୀଳଚକ୍ରରେ ଧ୍ୱଜା ବନ୍ଧା କରିଥାନ୍ତି । ଅନବସର ସମୟରେ ଚଟକା ଭୋଗ ଓ ରାଶିତେଲ ଯୋଗାଇଥାଆନ୍ତି । ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ଯାତ୍ରାଦିନ ଏହି ମଠ ଖେଚୁଡ଼ି ଭୋଗଲାଗି କରିଥାନ୍ତି । ଚନ୍ଦନଯାତ୍ରା ସମୟରେ ପଣା ଭୋଗ ହୋଇଥାଏ । ମଠର କାଞ୍ଜିପାଣି ବା ନଡ଼ିଆ ତୋରାଣିପାଇଁ ବିଗତ ୫ଶହ ବର୍ଷତଳୁ ସମଗ୍ର ଦେଶରେ ପ୍ରସିଦ୍ଧି ଲାଭ କରିଅଛି । ଏହି ମଠର ମହନ୍ତ ଶ୍ରୀଜୀଉଙ୍କ ପାଖରେ ଚାମର ସେବା କରିଥାନ୍ତି ।

**ଗଙ୍ଗାମାତା ମଠ :-** ଏହି ମଠ ଷୋଡ଼ଶ ଶତାବ୍ଦୀରେ ନିର୍ମାଣ ହୋଇଥିଲା । ବାଲିସାହିଠାରେ ଅବସ୍ଥିତ ଏହା ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ମଠ । ଏହି ମଠ ସୁନାବେଶ ଚାମରରେ ବଡ଼ଠାକୁରଙ୍କୁ ଆଲଟ ସେବା କରିଥାନ୍ତି । ଫୁଲ ଚନ୍ଦନ ଶ୍ରୀମନ୍ଦିରକୁ ଯୋଗାଇଥାଆନ୍ତି ।

**ଗୋପାଳ ତୀର୍ଥ ମଠ :-** ଏହି ମଠ ଦ୍ୱାଦଶ ଶତାବ୍ଦୀରେ ଦଣ୍ଡୀ ଆଚାର୍ଯ୍ୟ ସ୍ଥାପନ କରିଥିଲେ । ଏହି ମଠ ଶ୍ରୀଜଗନ୍ନାଥଙ୍କର ହାତୀ ବେଶପାଇଁ, ଫୁଲ, ଚନ୍ଦନ, ତୁଳସୀମାଳ ଇତ୍ୟାଦି ଯୋଗାଇଥାଆନ୍ତି ଏବଂ ସଂକୀର୍ତ୍ତନ କରିଥାନ୍ତି ।

**ବାଉଳି ମଠ :-** ଏହି ମଠ ଷୋଡ଼ଶ ଶତାବ୍ଦୀରେ ସ୍ୱର୍ଗଦ୍ୱାର ନିକଟରେ ଶିଖ୍‌ସଂପ୍ରଦାୟଦ୍ୱାରା ସ୍ଥାପିତ ହୋଇଥିଲା । ଏଥିରେ ଗୁରୁ ଶ୍ରୀନାନକଙ୍କର ପବିତ୍ର ସ୍ମୃତି ସହିତ ନିବିଡ଼ ସମ୍ପର୍କ ଅଛି । ପୁରୀ ଆସୁଥିବା ଶିଖ୍ ଯାତ୍ରୀମାନେ ଏଠାରେ ଗୁରୁ ଶ୍ରୀନାନକ ଓ ଗୁରୁ ଗ୍ରନ୍ଥ ସାହେବଙ୍କୁ ବନ୍ଦନା କରିଥାନ୍ତି ।

**ଜଗନ୍ନାଥ ବଲ୍ଲଭ ମଠ :-** ଏହି ମଠ ଶ୍ରୀମନ୍ଦିର ଓ ଗୁଣ୍ଡିଚା ମନ୍ଦିର ମଝିରେ ଥିବା ବଡ଼ଦାଣ୍ଡର ବାମପାର୍ଶ୍ୱରେ ଷୋଡ଼ଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । ଏହା ବିଷ୍ଣୁସ୍ୱାମୀ ସଂପ୍ରଦାୟର ମଠ । ଏଠାରେ ଶ୍ରୀଜଗନ୍ନାଥଙ୍କର ବହୁତ ଉତ୍ସବ ପାଳନ କରାଯିବାର ବିଧିବିଧାନ ଖଞ୍ଜା ଯାଇଅଛି । ଏହି ମଠ ଶ୍ରୀମନ୍ଦିରର ନୃତ୍ୟ, ସେବା, ପୂଜା, ନୀତି, ପର୍ବପର୍ବାଣି ସହିତ ଦୀର୍ଘ ଶହ ଶହ ବର୍ଷଧରି ପ୍ରତ୍ୟକ୍ଷଭାବେ ସଂପୃକ୍ତ । ଏହି ଯାତ୍ରା ଓ ପର୍ବପର୍ବାଣିଗୁଡ଼ିକ ହେଲା-ପଣାସଂକ୍ରାନ୍ତି, ଚନ୍ଦନଯାତ୍ରା, ନୃସିଂହଜନ୍ମ, ଶୀତଳଷଷ୍ଠୀ, ସ୍ନାନପୂର୍ଣ୍ଣିମା, ଶ୍ରୀଗୁଣ୍ଡିଚା ଓ ବାହୁଡ଼ାଯାତ୍ରା, ବଣଭୋଜିବେଶ, କାଳୀୟଦଳନ ଏକାଦଶୀ, ପ୍ରଳମ୍ବାସୁର ବଧନୀତି, କୁମାର ପୂର୍ଣ୍ଣିମା, କାର୍ତ୍ତିକମାସ ବାଳଧୂପ, ଦୁଗ୍ଧମେଲାଣି ଯାତ୍ରା, ବେଣ୍ଟପର୍ବ, ଅଶୋକାଷ୍ଟମୀ, ଶ୍ରୀରାମନବମୀ, ଦୟଣାଚୋରି ନୀତି ଓ ନବକଳେବର ।

**ରାଧାକାନ୍ତ ମଠ :-** ଏହି ମଠ ଶ୍ରୀକ୍ଷେତ୍ରର ବାଲିସାହିରେ ଷୋଡଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । ଏହି ମଠ ଗୌଡ଼ୀୟ ବୈଷ୍ଣବମାନଙ୍କର ଆଶ୍ରମ ଥିଲା । ପ୍ରଥମେ ଏହି ମଠର ଏକ କ୍ଷୁଦ୍ର କୋଠରୀରେ ଶ୍ରୀଚୈତନ୍ୟ ମହାପ୍ରଭୁ ଦୀର୍ଘ ୧୮ ବର୍ଷ କାଳ ନିଜର ଶେଷ ଜୀବନ ଅତିବାହିତ କରିଥିଲେ । ତେଣୁ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ସେ ବ୍ୟବହାର କରୁଥିବା କାଠର କଠଉ, କମଣ୍ଡଳୁ ଓ ତାଙ୍କର ବିଛଣା ଆଦି ମଠରେ ସଂରକ୍ଷିତ ହୋଇ ରହିଅଛି । ଏହି ମଠ ଶ୍ରୀମନ୍ଦିରକୁ ଫୁଲ, ଚନ୍ଦନ, ତୁଳସୀମାଳ ଯୋଗାଇଥାଆନ୍ତି ଓ ସଂକୀର୍ତ୍ତନ କରିଥାନ୍ତି ।

**ରାଘବଦାସ ମଠ :-** ଏହି ମଠ ଷୋଡ଼ଶ ଶତାବ୍ଦୀରେ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଗୋସ୍ୱାମୀ ରଘୁ ଅରକ୍ଷିତ ବାଲି ସାହିରେ ପ୍ରତିଷ୍ଠା କରିଥିଲେ । ଏହି ମଠ ଶ୍ରୀପ୍ରଭୁଙ୍କର ସ୍ନାନଯାତ୍ରା ଓ

ହାତୀବେଶପାଇଁ ଫୁଲ, ଚନ୍ଦନ ଓ ତୁଳସୀମାଳ ଇତ୍ୟାଦି ଯୋଗାଇ ଥାଆନ୍ତି । ଦୁବର ଟାହିଆ, ପୋଷାକ, ଶାଢ଼ି ମଧ୍ୟ ଯୋଗାଇଥାନ୍ତି । ରଥଯାତ୍ରାପରେ ଠାକୁର ମନ୍ଦିରକୁ ଆସିଲାବେଳେ ମଠ ଟାହିଆ ଯୋଗାଇଥାନ୍ତି । ଏଥିସହିତ ଚଟକାଭୋଗ, ଧୁଆମୁଗ, ପଣସ ଭୋଗ ଅର୍ପଣ ବିଧି ଅଛି ।

**ଦଶାବତାର ମଠ :-** ଏହି ମଠ ପ୍ରଥମେ ଶ୍ରୀଗୁଣ୍ଡିଚାମନ୍ଦିର ସମ୍ମୁଖସ୍ଥ ଦ୍ୱାଦଶ ଶତାବ୍ଦୀରେ ଗୀତଗୋବିନ୍ଦ କାବ୍ୟ ରଚୟିତା ତଥା ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ କବିରାଜ ଜୟଦେବଙ୍କର ଏକ ଆଶ୍ରମ ଥିଲା । ପ୍ରଥମେ ଏହାଥିଲା ଏକ କୁଡ଼ିଆଘର । ପରେ ଜୟଦେବଙ୍କର ଶିଷ୍ୟସମାଜ ଓ ଅନୁଗାମୀମାନେ ଏହି ସ୍ଥାନରେ ମଠ ପ୍ରତିଷ୍ଠା କରିଥିଲେ । ଯାହାକି ଆଜି "ଦଶାବତାର ମଠ" ରୂପେ ସୁପରିଚିତ । ଅତୀତରେ ଜୟଦେବଙ୍କ ରଚିତ ଗୀତଗୋବିନ୍ଦ ଶ୍ରୀମନ୍ଦିରରେ ତିନି ବିଗ୍ରହଙ୍କ ସମ୍ମୁଖରେ ଗାନ ସହିତ ମାହାରୀ ନୃତ୍ୟ ପରିବେଶଣ ସେବା ଥିଲା । ଖଟଣୀ ସେବା (ଖଟୁଆ ଲୁଗା) ପ୍ରଭୁଙ୍କୁ ଅର୍ପଣ କରିବାର ସେବା ସ୍ୱତନ୍ତ୍ରସ୍ଥାନ ବହନ କରିଛି । ନାକୁଆସୀ ସେବା (ଶ୍ରୀରାଧାମାଧବଙ୍କ ମିଳିତ ବିଗ୍ରହ) ଜୟଦେବ ଗ୍ରହଣ କରିଥିଲେ । ରଥଯାତ୍ରାରେ ଗୁଣ୍ଡିଚା ମନ୍ଦିର ସମ୍ମୁଖରେ ରହୁଥିବା ତିନି ରଥ ଉପରେ ଠାକୁରମାନଙ୍କ ନିମନ୍ତେ ଏହି ମଠର ପବିତ୍ର କୂପ ଜଳରେ ନୀତି ସମ୍ପାଦନ ହୁଏ ।

**ସୁନାର ଗୌରାଙ୍ଗ ମଠ :-** ଏହି ମଠ ଚକ୍ରତୀର୍ଥ ନିକଟରେ ଷୋଡ଼ଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । କେହି କେହି ଏହି ମଠକୁ ଚକ୍ରତୀର୍ଥ ମଠ ବୋଲି କହିଥାନ୍ତି । ଏହା ଭକ୍ତିସିଦ୍ଧାନ୍ତୀ ମଠ ଅଟେ ।

**ସାଲବେଗ ସମାଧିପୀଠ ମଠ :-** ଏହି ମଠ ଅଷ୍ଟାଦଶ ଶତାବ୍ଦୀରେ ଶ୍ରୀକ୍ଷେତ୍ରସ୍ଥିତ କୁଣ୍ଢେଇ ବେଣ୍ଟ ସାହିରେ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ସାଲବେଗ ସ୍ଥାପନ କରିଥିଲେ । ସାଲବେଗ ଥିଲେ ଶ୍ରୀଜଗନ୍ନାଥଙ୍କର ଅଦ୍ୱିତୀୟ ଓ ପରମଭକ୍ତ । ସେ ଭାବବିହ୍ୱଳ ହୋଇ ଶ୍ରୀଜଗନ୍ନାଥଙ୍କର କେତେଗୁଡ଼ିଏ ସ୍ତୁତି ଓ ଜଣାଣ ଲେଖିଛନ୍ତି । ସେଥିମଧ୍ୟରୁ "ଆହେ !ନୀଳଶୈଳ" ଖୁବ୍ ଆଦୃତ । କଥିତ ଅଛି ସାଲବେଗଙ୍କ ଶରୀର ଅସୁସ୍ଥତା ଯୋଗୁଁ ଗୋଟିଏ ବର୍ଷ ରଥଯାତ୍ରାକୁ ଆସିବା ଡେରି ହୋଇଥିଲା । ତେଣୁ ଶ୍ରୀଜଗନ୍ନାଥଙ୍କର ରଥ "ନନ୍ଦିଘୋଷ" ତାଙ୍କର ଆସିବା ବାଟକୁ ଅପେକ୍ଷା କରି ବାଟରେ ଅଟକି ଯାଇଥିଲା । ସାଲବେଗ ଶ୍ରୀକ୍ଷେତ୍ରରେ ପହଞ୍ଚିବା ପରେ ପୁନଶ୍ଚ ରଥଚକ ଗଡ଼ିବାକୁ ଲାଗିଲା । ଏହା ହେଉଛି ଭଗବାନ ଓ ଭକ୍ତଙ୍କ ମଧ୍ୟରେ ସମ୍ପର୍କର ଡୋରି । ଆଉ ମଧ୍ୟ ସାଲବେଗ ତାଙ୍କ ଶେଷ ଜୀବନଟି ପୁରୀରେ କଟାଇବାପାଇଁ ଗୀତ ମାଧ୍ୟମରେ ଶ୍ରୀଜଗନ୍ନାଥଙ୍କୁ ଗୁହାରି କରି ଶରଧାବାଲିରୁ ମାତ୍ର ଏକହାତ ମାଗିଛନ୍ତି ।

"ଜଗନ୍ନାଥ ହୋ, କିଛି ମାଗୁନାହିଁ-ତୋତେ
ଧନମାଗୁନାହିଁ, ଜନ ମାଗୁନାହିଁ,
ମାଗୁଛି ଶରଧାବାଲିରୁ ହାତେ ।"

**ସିଦ୍ଧବକୁଳ ମଠ :-** ଏହି ମଠ ରାଧାକାନ୍ତ ମଠ ପଛପଟେ ବାଲିସାହିରେ ଅବସ୍ଥିତ । ଏହା ଷୋଡ଼ଶ ଶତାବ୍ଦୀରେ ଶ୍ରୀଚୈତନ୍ୟଦେବଙ୍କର ପରମ ଶିଷ୍ୟ ହରିଦାସ ସ୍ୱର୍ଗଦ୍ୱାରଠାରେ ସ୍ଥାପନ କରିଥିଲେ । ଓଡ଼ିଶା ଆଗମନ ଫଳରେ ହରିଦାସ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ହୋଇଯାଇଥିଲେ । ଆଜି ବି ହରିଦାସଙ୍କର ସମାଧିପୀଠ ବିଦ୍ୟମାନ । ଏଠାରେ ଯେଉଁ ବକୁଳ ଗଛଟି ଅଛି, ତାହା ଶ୍ରୀଚୈତନ୍ୟ ଦେବଙ୍କ ଦାନ୍ତକାଠିରୁ ଉତ୍ପନ୍ନ ହୋଇଅଛି । ତାହାକୁ ସିଦ୍ଧବକୁଳ କୁହାଯାଏ ।

**ଦକ୍ଷିଣପାର୍ଶ୍ୱ ମଠ :-** ଏହା ଏକ ପ୍ରାଚୀନ ମଠ ରୂପେ ଶ୍ରୀକ୍ଷେତ୍ରରେ ଖ୍ୟାତି ଲାଭ କରିଛି ।ଏହି ମଠ ଶ୍ରୀମନ୍ଦିରର ଦକ୍ଷିଣଦ୍ୱାର ନିକଟରେ ଅବସ୍ଥିତ । ବୀର ଛତ୍ରପତି ଶିବାଜୀଙ୍କ ଗୁରୁ ରାମଦାସଙ୍କ ସମୟଠାରୁ ମହାରାଷ୍ଟ୍ର ସହିତ ଏହି ମଠର ସମ୍ବନ୍ଧ ରହିଛି ।

**ଘୁମୁସର ମଠ :-** ଏହି ମଠ ଷୋଡ଼ଶ ଶତାବ୍ଦୀରେ ମରିଚିକୋଟ ଗଳିରେ ସ୍ଥାପନ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏଠାରେ ଅବସ୍ଥାନ କରିଥିଲେ । ତାଙ୍କଦ୍ୱାରା ପ୍ରତିଷ୍ଠିତ ଶ୍ରୀରାମ, ଶ୍ରୀଲକ୍ଷ୍ମଣ ଓ ମା'ସୀତାଙ୍କ ମୂର୍ତ୍ତି ଏହି ମଠରେ ପୂଜା ପାଉଛନ୍ତି ।

**ସାତଲହଡ଼ି ମଠ :-** ଏହି ମଠ ଷୋଡ଼ଶ ଶତାବ୍ଦୀରେ ଗୌଡ଼ବାଡ଼ ସାହିରେ ପ୍ରତିଷ୍ଠିତ ହୋଇଥିଲା । ଲୋକାଚରରେ ଜଣାଯାଏ ଓଡ଼ିଆ ଭାଗବତର ରଚୟିତା ଅତିବଡ଼ୀ ଶ୍ରୀଜଗନ୍ନାଥ ଦାସ ସମୁଦ୍ରକୁ କହିଲେ, "ମୋପାଇଁ ତୁ ସାତଟି ଲହଡ଼ି ପଛକୁ ଫେରିଯା, ମୁଁ ସେଠାରେ ଏକ ମଠ ନିର୍ମାଣ କରିବି ।" ସତକୁ ସତ ପ୍ରଭୁ ଶ୍ରୀଜଗନ୍ନାଥଙ୍କ କରୁଣା ବଳରେ ସମୁଦ୍ର ୭ଟି ଲହଡ଼ି ପଛକୁ ପଳାଇଗଲା ଓ ସେଠାରେ ମଠ ନିର୍ମାଣ ହେଲା ।

**ମଙ୍ଗୁ ମଠ :-** ଏହି ମଠ ସିଂହଦ୍ୱାର ସମ୍ମୁଖରେ ସପ୍ତଦଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । ଏହା ମଧ୍ୟ ଶ୍ରୀଜଗନ୍ନାଥ ମନ୍ଦିରର ନୀତିନିୟମ ସହ ସଂପୃକ୍ତ ।

**ନନ୍ଦିନୀ ମଠ :-** ଏହି ମଠ ମାର୍କଣ୍ଡେୟ ସାହିରେ ଅବସ୍ଥିତ । ଭାରତବିଖ୍ୟାତ ଭକ୍ତକବି ମୀରାବାଈ ଏହି ମଠରେ ରହି ଭଜନକୀର୍ତ୍ତନ କରିବାର କିମ୍ବଦନ୍ତୀ କହେ ।

**ବଡ଼ଛତା ମଠ :-** ଏହି ମଠ ମାର୍କଣ୍ଡେଶ୍ୱର ସାହିରେ ଚତୁର୍ଦ୍ଦଶ ଶତାବ୍ଦୀରେ ସ୍ଥାପନ ହୋଇଥିଲା । ଜନମାନସରେ ଏହି ମଠ ବହୁ ଗୁରୁତ୍ୱ ବହନ କରିଅଛି ।

**ସାନଛତା ମଠ :-** ଏହି ମଠ ସପ୍ତଦଶ ଶତାବ୍ଦୀରେ ମାର୍କଣ୍ଡେଶ୍ୱର ସାହିରେ ସ୍ଥାପନ ହୋଇଥିଲା ।

**ଲବଣିଖିଆ ମଠ :-** ଏହି ମଠ ଷୋଡ଼ଶ ଶତାବ୍ଦୀରେ ଶ୍ରୀଲୋକନାଥଙ୍କୁ ଯିବା ରାସ୍ତାରେ ସ୍ଥାପନ କରାଯାଇଥିଲା ।

**କବିର ଚଉରା ମଠ :-** ଏହି ମଠ ଷୋଡ଼ଶ ଶତାବ୍ଦୀରେ ସ୍ୱର୍ଗଦ୍ୱାରଠାରେ ନିର୍ମାଣ ହୋଇଥିଲା । ଯୋଗପୁରୁଷ କବୀର ପୁରୀଠାରେ ରହଣିକାଳରେ ଏହି ମଠରେ ଅବସ୍ଥାନ କରୁଥିଲେ ।

ଉପରୋକ୍ତ ମଠ ଛଡ଼ା ପୁରୀରେ ଆଉ ଅନେକ ମଠ ଅଛି । ସେ ସବୁର ବର୍ଣ୍ଣନା ସମ୍ଭବ ନହେବାରୁ ନିମ୍ନରେ କେବଳ ନାମଗୁଡ଼ିକ ପ୍ରଦତ୍ତ ହୋଇଅଛି ।

ଉତ୍ତରପାର୍ଶ୍ୱମଠ, କୁଞ୍ଜମଠ, ଶିଶୁମଠ, ଗନ୍ଧର୍ବମଠ, ଲାଣ୍ଡିମାତା ମଠ, ପୁରାଣସଭା ମଠ, କୌଶଲ୍ୟା ମଠ, ଦାସ ମଠ, ନେଉଳ ଦାସ ମଠ, ସମାଧି ମଠ, ସିଦ୍ଧ ମଠ, ଜଟିଆ ବାବାଜୀ ମଠ, ଅର୍ଜୁନ ଦାସ ମଠ, ଉଉଳିଆ ମଠ, ସାରସ୍ୱତ ମଠ, ବିଶାଖା ମଠ, ବଳଗଣ୍ଡି ମଠ, ଝାଞ୍ଜପିଟା ମଠ, ଲକ୍ଷ୍ମୀଭଦ୍ର ମଠ, ରାମଜୀ ମଠ, କଳିତିଳକ ମଠ, ପଣ୍ଡିତ ମଠ, ଭାରତୀ ମଠ, ବଡ଼ସନ୍ଥ ମଠ, କୋଠଭୋଗ ମଠ, ମହାପ୍ରକାଶ ମଠ, ତିରୁମଲ୍ଲ ମଠ, ରେବସା ମଠ, ସମାଧି ମଠ, ଡମପଡ଼ା ମଠ, ହଳଦିଆ ମଠ, କଣାସ ମଠ, ସାନସନ୍ଥ ମଠ, ବଳି ବାବାଜୀ ମଠ, ଅଚ୍ୟୁତ ମଠ, ଗୋସ୍ୱାମୀ ମଠ, ନିଧିଦାସ ମଠ, ନୂଆ ମଠ, ରାମାନୁଜ ମଠ, ନେଉଳ ଦାସ ମଠ, ହରିଦାସ ମଠ ଇତ୍ୟାଦି ।

ମାନବ ଜାତିର ମଙ୍ଗଳ ଓ କଲ୍ୟାଣ ଉଦ୍ଦେଶ୍ୟରେ ଏହି ମଠଗୁଡ଼ିକ ସ୍ଥାପନ କରାଯାଇଅଛି । ଶ୍ରୀଜଗନ୍ନାଥପ୍ରେମୀ ଭକ୍ତମାନଙ୍କୁ ଏହି ମଠଗୁଡ଼ିକ ଯାବତୀୟ ସୁବିଧା ସୁଯୋଗ ପ୍ରଦାନ କରିଥାନ୍ତି । ଏହି ମର୍ତ୍ତ୍ୟବୈକୁଣ୍ଠ ଧାମର ଆକର୍ଷଣ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ତାଙ୍କର ପରମଭକ୍ତମାନେ ଏକାକାର ହୋଇଯାଇଛନ୍ତି । ଭକ୍ତଙ୍କୁ ଦେଖିବାକୁ ତା'ର ଆରାଧ୍ୟ ଠାକୁର ଶ୍ରୀଜଗନ୍ନାଥ ଯେପରି ପାଗଳ ହୋଇଯାଇଛନ୍ତି, ମନେ ହୁଏ ଆତ୍ମା ଓ ପରମାତ୍ମାଙ୍କର ମିଳନ ହୋଇଯାଇଛି ।

* * * * * * *

# ଶ୍ରୀଜଗନ୍ନାଥଙ୍କ ବିଶିଷ୍ଟ ଭକ୍ତ

ଭାଗବତରେ ବର୍ଣ୍ଣିତ ଅଛି "ଭକ୍ତ ହିଁ ଭଗବାନ" । ଏହି ଉକ୍ତିକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଭକ୍ତ ହିଁ ଭଗବାନଙ୍କର ସ୍ୱରୂପ ବା ପ୍ରତିନିଧି । କାରଣ ବିଶ୍ୱ ନିୟନ୍ତା, ପରମେଶ୍ୱର ଶ୍ରୀଠାକୁର ଧରାପୃଷ୍ଠରେ ସନ୍ଥପାଳନ ଓ ଦୁଷ୍ଟଦଳନ ପାଇଁ ବିଭିନ୍ନ ଯୁଗରେ ଆବିର୍ଭାବ ହୋଇଥାନ୍ତି । ପରମଭକ୍ତ ମଧ୍ୟ ତା'ର ଆରାଧ୍ୟ ଦେବତାଙ୍କ ସାନ୍ନିଧ୍ୟ ଲାଭକରି ସମାଜରୁ ତାଙ୍କର ପ୍ରଚାର ଓ ପ୍ରସାର ମାଧ୍ୟମରେ ଅନ୍ୟାୟ, ଅତ୍ୟାଚାର ତଥା କଳୁଷିତ ପରିବେଶକୁ ପରିବର୍ତ୍ତନ କରିବାରେ ସମର୍ଥ ହୋଇଥାନ୍ତି । ଫଳରେ ସେମାନେ ସମାଜରେ ଆଦର୍ଶୀତ ମହାପୁରୁଷ ରୂପେ ବିବେଚିତ ହୋଇଥାନ୍ତି । ଶ୍ରୀକ୍ଷେତ୍ରସ୍ଥିତ ବଡ଼ ଦେଉଳରେ ବିରାଜିତ ଅଶେଷ ଆଶୀର୍ବାଦର ଭଣ୍ଡାର ତଥା ଦୟା ଓ କରୁଣାର ସାଗର ଜଗତରନାଥ ଶ୍ରୀଜଗନ୍ନାଥ ଅଶେଷ ଭକ୍ତ ସୃଷ୍ଟି କରିବାର କିମ୍ବଦନ୍ତୀ ଆଜିର ଆଧ୍ୟାତ୍ମିକ ଇତିହାସ କହେ । ସେହି ପରମ ଭକ୍ତମାନଙ୍କ ମଧ୍ୟରୁ କେତେକ ଭକ୍ତଙ୍କ ଜୀବନୀ, ନୀତି, ଉପଦେଶ ଓ କାର୍ଯ୍ୟଧାରା ନିମ୍ନରେ ପ୍ରଦତ୍ତ ହୋଇଅଛି ।

## ଭକ୍ତକବି ଜୟଦେବ



ଜୟଦେବ ଯେ କେବଳ ଗୀତଗୋବିନ୍ଦ କାବ୍ୟର ରଚୟିତା ଭାବରେ ସୁପରିଚିତ ତାହା ନୁହେଁ, ସେ ଥିଲେ ନୀଳାଚଳବାସୀ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ । ପୁରାଣରେ ବର୍ଣ୍ଣିତ

ଅଛି ସ୍ୱୟଂ ଶ୍ରୀବିଷ୍ଣୁଙ୍କର ସହସ୍ର ନାମ ମଧ୍ୟରେ ଶ୍ରୀକୃଷ୍ଣ, ମାଧବ ଓ ଶ୍ରୀଜଗନ୍ନାଥଙ୍କ ନାମ ଅନ୍ୟତମ । ବହୁ କିମ୍ବଦନ୍ତୀ କହେ ଶ୍ରୀମାଧବ ପରୋକ୍ଷ ଭାବରେ ଜୟଦେବଙ୍କ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ ବିପଦଆପଦ ଓ ମାଙ୍ଗଳିକ କାର୍ଯ୍ୟରେ ଛାଇପରି ରହିଥିଲେ । ଜୟଦେବଙ୍କର ପ୍ରଗାଢ଼ ଉଦ୍ୟମ, ଅଟଳ ଆତ୍ମବିଶ୍ୱାସ ଓ ଦୃଢ଼ ଇଚ୍ଛାଶକ୍ତିବଳରେ ସେ ହୋଇପାରିଛନ୍ତି ଏତେ ବଡ଼ ଆସନର ଅଧିକାରୀ । ତ୍ରେତୟା ଯୁଗରେ ଭକ୍ତ ଶ୍ରୀହନୁମାନ ଓ ପ୍ରଭୁ ଶ୍ରୀରାମ, ଦ୍ୱାପର ଯୁଗରେ ସଖା ଅର୍ଜୁନ ଓ ଭଗବାନ ଶ୍ରୀକୃଷ୍ଣ ଯେପରି ପରମ ଭକ୍ତ ଓ ଭଗବାନ ହୋଇପାରିଥିଲେ, ଠିକ୍ ସେପରି ଜୟଦେବ ଓ ଶ୍ରୀଜଗନ୍ନାଥ ହୋଇପାରିଛନ୍ତି ଭକ୍ତ ଓ ଭଗବାନ ।

ଯେଉଁ ପବିତ୍ର ମାଟିରେ ଶତ ଶତ ଦେବଦେବୀଙ୍କ ପ୍ରତିମାମାନ ମନ୍ଦିର, ଗାଦୀ ଆଶ୍ରମ, ମଠ ଇତ୍ୟାଦିରେ ରହି ପୂଜା ପାଉଛନ୍ତି, ସେହି ପୀଠଭୂମିରେ ଜୟଦେବଙ୍କ ଜନ୍ମସ୍ଥାନ । ତ୍ରିକ୍ଷେତ୍ର ତଥା ତ୍ରିବେଣୀ ଭୂମି ରୂପେ ପ୍ରତିଷ୍ଠିତ ଶ୍ରୀକ୍ଷେତ୍ର, ଅର୍କକ୍ଷେତ୍ର ଓ ଏକାମ୍ରନଗରୀ ମଧ୍ୟରେ ଅବସ୍ଥିତ ପବିତ୍ର ପ୍ରାଚୀ ନଦୀକୂଳରେ ତ୍ରିବେଣୀ ବୁଡ଼ ଧର୍ମପୀଠ ଠାରୁ ଅନତି ଦୂରରେ କେନ୍ଦୁଲି ବା କେନ୍ଦୁବିଲ୍ୱ ଗ୍ରାମରେ ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ବୈଶାଖମାସ ଶୁକ୍ଳପକ୍ଷ ଅକ୍ଷୟ ତୃତୀୟା ତିଥିରେ କବି ଜୟଦେବ ଜନ୍ମଗ୍ରହଣ କରିଥିଲେ । ପିତା ଭୋଜଦେବ ମାତା ରାଧାଦେବୀଙ୍କ ଔରସରୁ ଏକ କୁଳୀନ ବ୍ରାହ୍ମଣ ପରିବାରରେ ମାଧବଙ୍କ ଆଶୀର୍ବାଦରୁ ସେ ଭୂମିଷ୍ଠ ହୋଇଥିଲେ । ତାଙ୍କର ପତ୍ନୀ ଥିଲେ ପଦ୍ମାବତୀ । ସେ ଥିଲେ କର୍ଣ୍ଣାଟୀ ବ୍ରାହ୍ମଣ କନ୍ୟା । କଥିତ ଅଛି ପଦ୍ମାବତୀଙ୍କ ପିତା ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦରୁ ପଦ୍ମାବତୀଙ୍କୁ ପାଇଥିଲେ । ଜୟଦେବଙ୍କୁ ବିବାହ ପୂର୍ବରୁ ପଦ୍ମାବତୀ ଥିଲେ ଜଣେ ନୃତ୍ୟଶିଳ୍ପୀ । ପିତା ପଦ୍ମାବତୀଙ୍କୁ ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କ ପାଖରେ ଅର୍ପଣ କରି ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ତତ୍କାଳୀନ ସମୟରେ ଜୟଦେବ ସନ୍ନ୍ୟାସୀ ଧର୍ମରେ ଦୀକ୍ଷିତ ହୋଇଥିଲେ । ପଦ୍ମାବତୀଙ୍କୁ ପତ୍ନୀରୂପେ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ଶ୍ରୀଜଗନ୍ନାଥଙ୍କର ସ୍ୱପ୍ନାଦେଶ ମାଧ୍ୟମରେ ପଦ୍ମାବତୀଙ୍କୁ ବିବାହ କରି ସାଂସାରିକ ଜୀବନରେ ଦୀକ୍ଷିତ ହୋଇଥିଲେ । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆଶୀର୍ବାଦ ଓ ପଦ୍ମାବତୀଙ୍କର ଅନାବିଳ ପ୍ରେମ ଓ ସାହାଯ୍ୟ ବଳରେ ଜୟଦେବ ଏହି ଭାବପୂର୍ଣ୍ଣ କାବ୍ୟ ରଚନା କରିବାରେ ସମର୍ଥ ହୋଇଥିଲେ ।

ଏଗାର ବର୍ଷ ବୟସରେ ଜୟଦେବ ପିତାମାତାଙ୍କୁ ହରାଇ ହୋଇଯାଇଥିଲେ ଏକ ଅସହାୟ ଓ ଅନାଥ ବାଳକ । ଏହି ଦାରୁଣ ଦୁଃଖ ଓ ବିଷାଦରେ ମ୍ରିୟମାଣ ହୋଇଥିଲେ ମଧ୍ୟ ସେ ଭାଙ୍ଗି ନପଡ଼ି ଭଗବତ୍ କୃପାକୁ ପାଥେୟ କରି, କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇଥିଲେ । ତାଙ୍କ ଜୀବନର କେତେଗୁଡ଼ିଏ ଘଟଣାରୁ ସୂଚନା ମିଳେ ଯେ, ଭଗବତ୍ କୃପା ଯୋଗୁଁ ତାଙ୍କର ସମସ୍ତ ବିପଦ ପାଣି ଫୋଟକା ପରି ଅପସରି ଯାଇଥିଲା । କ୍ରମଶଃ ତାଙ୍କର ମାଧବଙ୍କ ପ୍ରତି ଅଟଳ ବିଶ୍ୱାସ

ଭାବ ଜାଗ୍ରତ ହୋଇଥିଲା । ପିତାଙ୍କ ମୃତ୍ୟୁର ପରେ ପରେ ଘର ଦ୍ୱାର ଓ ସାହି ପଡ଼ିଶାଙ୍କ ମାୟା ମମତାକୁ ଡୋରିବାନ୍ଧି ତାଙ୍କ ଗ୍ରାମର ଏକ ବ୍ରାହ୍ମଣ ବାଳକକୁ ସାଙ୍ଗରେ ଧରି ସେ ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା କରିଥିଲେ । ବାଟରେ ପାଦରେ ଚାଲିଯିବା ଅବସରରେ ଭୋକ ଶୋଷର ତାଡ଼ନା ସହ୍ୟ କରି ନ'ପାରି ମୂର୍ଚ୍ଛା ହୋଇଯାଇଥିଲେ । ପରମଭକ୍ତର ଦୁଃଖକୁ ସହ୍ୟ କରିନପାରି ଅନାଥରବନ୍ଧୁ ଶ୍ରୀଜଗନ୍ନାଥ ପରୋକ୍ଷ ଭାବରେ ଜଣେ ବ୍ରାହ୍ମଣ ରୂପେ ଆବିର୍ଭୂତ ହୋଇଥିଲେ । ତାଙ୍କର ସମସ୍ତ ଦୁଃଖ ଓ ଯନ୍ତ୍ରଣା ଦୂର କରାଇ ଶ୍ରୀକ୍ଷେତ୍ର ପୀଠରେ ପହଞ୍ଚାଇ ଥିଲେ । ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ସେ ନିଜକୁ ଧନ୍ୟ ମଣିଥିଲେ ।

ପ୍ରଥମେ ସେ ଶ୍ରୀକ୍ଷେତ୍ରରେ ଏକ ବଟବୃକ୍ଷ ତଳେ କୁଡ଼ିଆ ଘର କରି ରହିଥିଲେ । ଭିକ୍ଷା ମାଗି ଜୀବିକା ନିର୍ବାହ କରୁଥିଲେ ମଧ୍ୟ ତାଙ୍କର ମନ ରହିଥିଲା ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପାଖରେ । ପ୍ରତ୍ୟହ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଥିଲା ତାଙ୍କର ଆଦ୍ୟ କାର୍ଯ୍ୟ । ସନ୍ନ୍ୟାସୀ ବେଶରେ ଭିକ୍ଷାକରି ଯାହା ଆଣୁଥିଲେ ରୋଷେଇ କରି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରିବା ପରେ ସେ ଭକ୍ଷଣ କରୁଥିଲେ । ପ୍ରତ୍ୟହ ସନ୍ଧ୍ୟା ସମୟରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ନାମ ସଂକୀର୍ତ୍ତନରେ ମଜ୍ଜି ରହୁଥିଲେ ପହଡ଼ ପଡ଼ିବା ପର୍ଯ୍ୟନ୍ତ । ସେହି କୁଡ଼ିଆ ଘର ଆଜି ଶ୍ରୀକ୍ଷେତ୍ର ପୀଠରେ 'ଦଶ ଅବତାର' ମଠ ନାମରେ ପରିଚିତ । ଏକଦା ସେହି ବଟବୃକ୍ଷ ତଳେ ଥିବା କୁଡ଼ିଆ ଘରେ ଗଭୀର ଭାବରେ ଧ୍ୟାନମଗ୍ନ ଥିବାବେଳେ ଶ୍ରୀକୃଷ୍ଣଙ୍କ ବଂଶୀବାଦନର ସ୍ୱର ନିଃସୃତ ହେବା ସଙ୍ଗେ ସଙ୍ଗେ ସ୍ୱୟଂ ପ୍ରଭୁ ଶ୍ରୀକୃଷ୍ଣ ଆବିର୍ଭାବ ହୋଇଥିଲେ । ପ୍ରଭୁଙ୍କୁ ଦର୍ଶନ କରି ସ୍ୱତଃ ଜୟଦେବଙ୍କ ମୁଖରୁ ଏହି ଶ୍ଳୋକ ନିଃସୃତ ହୋଇଥିଲା । ତାହା ଥିଲା

ମେଘୈର୍ମେଦୁର ମୟୂରଂ ବନଭୁବଃ-- ଯମୁନା କୂଳେ ରହ କେଳୟଃ । ସେହିଦିନଠାରୁ ଜୟଦେବଙ୍କର କାବ୍ୟ ଲେଖିବାର ପ୍ରତିଭା ବିକଶିତ ହୋଇଥିଲା । ଶ୍ରୀଜଗନ୍ନାଥଙ୍କର ନାମ କୀର୍ତ୍ତନ ବ୍ୟତୀତ ଜୟଦେବଙ୍କର ଅନ୍ୟ କୌଣସି କାର୍ଯ୍ୟ ପ୍ରତି ମନ ନ'ଥିଲା । ସେ ଧ୍ୟାନ ମଗ୍ନ ଥିବାବେଳେ ଦଶାବତାର ଦର୍ଶନର ସୌଭାଗ୍ୟ ଅର୍ଜନ କରିଥିଲେ । ତତ୍ପରେ 'ଗୀତଗୋବିନ୍ଦ' କବିତା ଲେଖିବାରେ ସମର୍ଥ ହୋଇଥିଲେ । ଏହି କବିତାର ରସ ଓ ଶୈଳୀ "ଜୟ ଜଗଦୀଶ ହରେ" ଶବ୍ଦଟି ଲଗାଇ ପ୍ରତ୍ୟେକ ପଦ ଗଠନ ହୋଇଥିବାରୁ, ତାହା ସମାଜରେ ତଥା ସାହିତ୍ୟ ଜଗତରେ ସ୍ୱୀକୃତି ଲାଭ କରିଥିଲା ।

କଥିତ ଅଛି ପ୍ରଭୁ ଶ୍ରୀକୃଷ୍ଣ ଜୟଦେବଙ୍କୁ ଗୀତଗୋବିନ୍ଦ କାବ୍ୟ ରଚନାରେ ପ୍ରତ୍ୟକ୍ଷ ଭବରେ ସାହାଯ୍ୟ କରିଥିଲେ । ପ୍ରତ୍ୟହ ଜୟଦେବ ଗୀତଗୋବିନ୍ଦ କାବ୍ୟ ରଚନା କରନ୍ତି । ଗୋଟିଏ ଦିନ

ସକାଳେ ସେ ତାଳପତ୍ର ପୋଥିରେ ତାଙ୍କ ଆଶ୍ରମରେ କାବ୍ୟ ରଚନା ସମୟରେ ତଳ ପଦର ଶେଷ ଚରଣଟି ଆଦୌ ସ୍ମରଣ ହେଉନଥିଲା । ତେଣୁ ସେ ଗଭୀର ଚିନ୍ତାମଗ୍ନ ଅବସ୍ଥାରେ ମୁଣ୍ଡରେ ହାତ ଥୋଇ ତଳ ପଦ ଚରଣଟି ଭାବୁଥିଲେ । ରହୁଁ ରହୁଁ ସମୟ ଅତିବାହିତ ହୋଇଥିଲା ସିନା ପଦ୍ୟଟି ପୂରଣ ହେଲା ନାହିଁ ।

ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ.... । ଏହି ପଦରେ ଲେଖାଟି ବନ୍ଦ ହୋଇ ରହିଥାଏ । ବିଳମ୍ବ ଦେଖି ଓ ସ୍ୱାମୀଙ୍କ ଏପରି ଅବସ୍ଥା ବୁଝିପାରି ପତ୍ନୀ ପଦ୍ମାବତୀ କହିଲେ ଆପଣ ସ୍ନାନ ଓ ତର୍ପଣ ସାରି ଠାକୁରଙ୍କ ପ୍ରସାଦ ସେବନ ପରେ ଅନ୍ୟ ପଦଟି ମନେପଡ଼ିବ । ସ୍ନାନ ସମୟ ଗଡ଼ି ଗଲାଣି ଯାଆନ୍ତୁ ସ୍ନାନ କରିବା ପାଇଁ । ପଦ୍ମାବତୀଙ୍କ କଥା ମାନି ଜୟଦେବ ସ୍ନାନ କରିବାପାଇଁ ଯିବା ଅବସରରେ ସ୍ୱୟଂ ଭଗବାନ ଜୟଦେବଙ୍କ ଅବିକଳ ରୂପ ଧାରଣ କରି ଆଶ୍ରମରେ ଉପସ୍ଥିତ ହୋଇଥିଲେ । ଏହା ଦେଖି ପତ୍ନୀ ଜୟଦେବ ବୋଲି ଭାବି ପୂର୍ବପରି ତାଙ୍କର ଭୋଜନ ପ୍ରସ୍ତୁତ କରିଥିଲେ । ବ୍ରାହ୍ମଣ ଜଣକ ଭୋଜନସାରି ଅସମ୍ପୂର୍ଣ୍ଣ ପଦକୁ ପୂରଣ କରି ଶୋଇବା କକ୍ଷରେ ବିଶ୍ରାମ ନେଲେ । ପଦ୍ମାବତୀ ସ୍ୱାମୀଙ୍କ ଥାଳିରେ ଖାଇ ବସିଲେ । କିଛି ସମୟ ପରେ ଜୟଦେବ ସ୍ନାନ ସାରି ଘରକୁ ଫେରିବା ଦେଖି ପଦ୍ମାବତୀ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ପତ୍ନୀଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଅସମ୍ପୂର୍ଣ୍ଣ ପଦଟି ତାଳପତ୍ର ପୋଥିରେ ଲେଖା ହୋଇଥିବା ଦେଖି ବିସ୍ମିତ ହୋଇଯାଇଥିଲେ । ଶୟନ କକ୍ଷକୁ ଯାଇ ଦେଖିଲେ କକ୍ଷରେ କେହି ନାହାନ୍ତି ଓ ସେହି କକ୍ଷଟି କସ୍ତୁରୀ ଚନ୍ଦନ ବାସନାରେ ମହକି ଉଠୁଛି । ଶେଷ ପଦ୍ୟଟି ହେଲା – 'ଦେହି ପଦ ପଲ୍ଲବ ମୁଦାରଂ' । ସ୍ୱୟଂ ପ୍ରଭୁ ଶ୍ରୀକୃଷ୍ଣ ମୋ'ଅନୁସ୍ଥିତିରେ ଏହି ପଦଟି ଲେଖିଛନ୍ତି ବୋଲି ଜୟଦେବଙ୍କ ମନରେ ବଦ୍ଧ ଧାରଣା ସୃଷ୍ଟି ହେଲା । ସ୍ୱୟଂ ଶ୍ରୀକୃଷ୍ଣଙ୍କର ତାଙ୍କ ଆଶ୍ରମରେ ଉପସ୍ଥିତ ଯେତିକି ଆନନ୍ଦ ଦେଲା କିନ୍ତୁ ସେ ଦର୍ଶନ କରିପାରିଲେ ନାହିଁ ବୋଲି ନିଜକୁ ତୁଚ୍ଛ ମନେ କଲେ । କିନ୍ତୁ ପତ୍ନୀ ପଦ୍ମାବତୀ ଦର୍ଶନ କରିଥିବାରୁ ଅତ୍ୟନ୍ତ ପ୍ରୀତ ହୋଇ ଭାଗ୍ୟବତୀ ବୋଲି କହିଥିଲେ ।

ଏହି ଘଟଣାର ପ୍ରଭାବ ଜୟଦେବଙ୍କୁ ଗଭୀର ଭାବରେ ଆଘାତ ଦେବା ସଙ୍ଗେ ସଙ୍ଗେ ଦିନକୁ ଦିନ ଏହା ଭାବି ଭାବି ଦୁଃଖରେ ମ୍ରିୟମାଣ ହୋଇଗଲେ । ଭକ୍ତବତ୍ସଳ ଜୟଦେବଙ୍କ ଦୁଃଖକୁ ସହ୍ୟ କରି ନ'ପାରି ରାତ୍ରିରେ ସ୍ୱପ୍ନାଦେଶ ମାଧ୍ୟମରେ ପ୍ରଭୁ ଶ୍ରୀକୃଷ୍ଣ ସମସ୍ତ ବିବରଣୀ ଜଣାଇଥିଲେ । ଏହି ଘଟଣାର ଅଳ୍ପଦିନ ପରେ ଜୟଦେବ ଗୀତଗୋବିନ୍ଦ କାବ୍ୟଟି ସମ୍ପୂର୍ଣ୍ଣ କରିବାରେ ସମର୍ଥ ହୋଇଥିଲେ । ପ୍ରତିଦିନ ଜୟଦେବ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଖରେ ଗୀତଗୋବିନ୍ଦ ଗାନ କରନ୍ତି ଓ ପଦ୍ମାବତୀ ଜୟଦେବଙ୍କ ଗୀତ ଗାନର ସ୍ୱରରେ ତାଳ ଦେଇ ନୃତ୍ୟ କରିଥାନ୍ତି । ଏହି

ପୂର୍ଣ୍ଣାଙ୍ଗ କାବ୍ୟକୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ଅର୍ପଣ କରି ନିଜକୁ ପରମ ସୌଭାଗ୍ୟ ଲାଭ କରିଥିଲେ ।

ଜୟଦେବଙ୍କର ମହତଗୁଣର ପ୍ରଶଂସାରେ ଅତିଷ୍ଠ ହୋଇ ତତ୍କାଳୀନ ଉତ୍କଳାଧୀଶ ଅନ୍ୟ ଗୋଟିଏ ଗୀତଗୋବିନ୍ଦ କାବ୍ୟ ରଚନା କରି ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ଗାନ କରିଥିଲେ । ଜୟଦେବଙ୍କଦ୍ୱାରା ରଚିତ ଗୀତଗୋବିନ୍ଦକୁ ପ୍ରଭୁ ଶ୍ରୀଜଗନ୍ନାଥ ସମ୍ମୁଖରେ ଗାନ କରିବାକୁ ସୁଯୋଗ ଦିଆଯାଇନଥିଲା । ଦିନେ ରାଜା ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମୟରେ ଜୟଦେବଙ୍କଦ୍ୱାରା ଲିଖିତ ଗୀତଗୋବିନ୍ଦ ଗାନ କରିବାର ଦେଖି କ୍ଷୁବ୍ଧ ହୋଇ ଭର୍ତ୍ସନା କରିଥିଲେ । ଜୟଦେବ ରାଜାଙ୍କ ପ୍ରଶ୍ନର ଉତ୍ତରରେ କହିଥିଲେ, ତାଙ୍କଦ୍ୱାରା ରଚିତ ଗୀତଗୋବିନ୍ଦଟି ଅଧିକ ସନ୍ତୋଷପ୍ରଦ ଓ ଉପାଦେୟ ଅଟେ । ଏହି ବିବାଦର ସମାଧାନ ପାଇଁ ୨ଟି ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ଗର୍ଭଗୃହ ଭିତରେ ଥୁଆହୋଇଥିଲା । କପାଟୋନ୍ମୋଚନ କରିବା ପରେ ଦେଖାଗଲା, ଜୟଦେବଙ୍କଦ୍ୱାରା ଲିଖିତ ଗୀତଗୋବିନ୍ଦଟି ରାଜାଙ୍କ ଗୀତଗୋବିନ୍ଦ ଉପରେ ରହିଥିଲା । ଏଥିରେ ରାଜା ଏକମତ ନହୋଇ ପୂର୍ବପରି ଜୟଦେବଙ୍କ ଉପରେ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ । ଏହା ଦେଖି ପ୍ରଭୁ ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ ମାଧ୍ୟମରେ ରାଜାଙ୍କୁ କହିଥିଲେ ଜୟଦେବଙ୍କ ଗୀତଗୋବିନ୍ଦଟି ମୋ'ସେବାକାର୍ଯ୍ୟରେ ବ୍ୟବହାରରେ ଲାଗିବା ସଙ୍ଗେ ସଙ୍ଗେ ଲୋକଲୋଚନରେ ଏହାର ପ୍ରସାର ଓ ପ୍ରଚାର କରାଇବାପାଇଁ ସୂଚନା ଦେଇଥିଲେ । ପବନର ପ୍ରଖର ବେଗ ପରି ଏହି ଖବରଟି ସମଗ୍ର ଭାରତର ବୈଷ୍ଣବଧର୍ମାବଲମ୍ବୀ ଓ ଆଧ୍ୟାତ୍ମିକ ଜଗତରେ ପ୍ରଚାର ଓ ପ୍ରସାର ହୋଇଗଲା । ଆଉମଧ୍ୟ ଜୟଦେବ ହୋଇଗଲେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ସମଗ୍ର ଜନତାଙ୍କ ଲୋକଲୋଚନରେ । ଏହି ଘଟଣାଟି ଯେଉଁ ଗଜପତି ରାଜାଙ୍କ ସମୟରେ ଘଟିଥିଲା, ସେ ଥିଲେ ମହାନ୍ ପରାକ୍ରମଶାଳୀ ପୁରୁଷୋତ୍ତମ ଦେବ ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କର "ଗୀତଗୋବିନ୍ଦ" ଅତି ପ୍ରିୟ ଥିଲା ବୋଲି ବିଭିନ୍ନ କିମ୍ବଦନ୍ତୀ କହେ । ଏକଦା ଶ୍ରୀକ୍ଷେତ୍ରର ଅନତିଦୂରରେ ଥିବା ଏକ ଗ୍ରାମରେ ଶାକ ବିକ୍ରୟକାରିଣୀ ସ୍ୱକ୍ଷେତରୁ ବାଇଗଣ ତୋଳିବା ସମୟରେ ଅତି ଭାବବିହ୍ୱଳିତ ହୋଇ ଗୀତଗୋବିନ୍ଦ ପଦ୍ୟାବଳୀ ସୁମଧୁର ସ୍ୱରରେ ଆବୃତ୍ତି କରୁଥିଲେ । ଏହି ଗୀତଗୋବିନ୍ଦ ଗାନରେ ମୁଗ୍ଧ ହୋଇ ପ୍ରଭୁ ଶ୍ରୀଜଗନ୍ନାଥ ଅଦୃଶ୍ୟ ଭାବରେ ତାହାର ପଛପଟେ ବୁଲିବାକୁ ଲାଗିଲେ । ବାଇଗଣ ଗଛର କଣ୍ଟା ପ୍ରଭୁ ଶ୍ରୀଜଗନ୍ନାଥ ପିନ୍ଧିଥିବା ବସ୍ତ୍ରରେ ଲାଗିଗଲା । ବାଇଗଣ ତୋଳା ସରିବା ପରେ ସ୍ତ୍ରୀ ଲୋକଟି ତାଙ୍କ ଘରକୁ ଓ ପ୍ରଭୁ ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଏହି ଘଟଣାର ପରଦିନ ପ୍ରଭାତରେ

ବଡ଼ପଣ୍ଡା ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରିଧାନ ବସ୍ତ୍ରରେ ବାଇଗଣ କଣ୍ଟା ଲାଗିଥିବାର ଦେଖି ବିସ୍ମିତ ହୋଇଯାଇଥିଲେ । ଗଜପତି ରାଜା ଏହା ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ଏହାଦେଖି ରାଜା ଓ ବଡ଼ପଣ୍ଡାମାନେ ଅଶୁଭ ଆଶଙ୍କା କରି ଦୈନନ୍ଦିନ ପୂଜାପଦ୍ଧତି ବନ୍ଦ କରି ଏହାର ପ୍ରତିକାର ସ୍ୱରୂପ ହୋମ ଓ ପୂଜାପାଠ କରିଥିଲେ । ସେହିଦିନ ରାତ୍ରିରେ ପ୍ରଭୁ ଶ୍ରୀଜଗନ୍ନାଥ ଗଜପତିଙ୍କୁ ସ୍ୱପ୍ନାଦେଶ ମାଧ୍ୟମରେ ଜଣାଇଥିଲେ ଯେ, ସେ ଗୀତଗୋବିନ୍ଦ କାବ୍ୟକୁ ଭଲ ପାଇ ବାଇଗଣ କ୍ଷେତରେ ସ୍ତ୍ରୀଲୋକ ବୋଲୁଥିବାର ଦେଖି ସେ ତା'ପଛରେ ଛଦ୍ମବେଶରେ ଥାଇ ଶୁଣୁଥିଲେ । ତତ୍‌ପରେ ସେହି ଶାକ ବିକ୍ରୟକାରିଣୀକୁ ଡକାଇ ସମସ୍ତ ସତ୍ୟାସତ୍ୟ ବୁଝିବା ସଙ୍ଗେ ସଙ୍ଗେ ତାକୁ ପ୍ରତ୍ୟହ ମହାପ୍ରଭୁଙ୍କ ନିକଟରେ ଗୀତଗୋବିନ୍ଦ ଗାନ ପାଇଁ ଆଦେଶ ଦେଇଥିଲେ । ସେହି ପରି ଗୀତଗୋବିନ୍ଦ ରଚୟିତା ଜୟଦେବଙ୍କୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ରୂପେ ସ୍ୱୀକୃତି ପ୍ରଦାନ କରିଥିଲେ । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆଦ୍ୟ ଓ ମୁଖ୍ୟ ସେବକ ଗଜପତି ରାଜା ଜୟଦେବଙ୍କୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମଭକ୍ତରୂପେ ସମ୍ମାନିତ କରିଥିଲେ ଓ ତାଙ୍କ ଆଶ୍ରମକୁ ଯାଇଥିଲେ ।

ଅକ୍ଷୟତୃତୀୟା ଦିବସଟି ପବିତ୍ର ଓ ଧାର୍ମିକ ଦିବସରୂପେ ପୁରାଣରେ ବର୍ଣ୍ଣିତ ଅଛି । ସେହି ମହାନ ଦିବସଟି ସହିତ ଘନିଷ୍ଠ ସମ୍ପର୍କ ନିହିତ ଅଛି ଆରାଧ୍ୟ ଠାକୁର ପ୍ରଭୁ ଶ୍ରୀଜଗନ୍ନାଥ ଓ ପରମଭକ୍ତ ଜୟଦେବଙ୍କର । ପ୍ରକାଶଥାଉକି ସେହି ଦିବସଟିରେ ଶ୍ରୀମହାପ୍ରଭୁଙ୍କର ରଥ ନିର୍ମାଣର ପ୍ରଥମ ଦିବସ, ଚନ୍ଦନଯାତ୍ରାର ଉଦ୍‌ଘାଟନ ସମେତ କୃଷକ ସମାଜର ମୁଠି ଅନୁକୂଳ ଦିବସ ଅଟେ । ସେହିଦିନ କୃଷକଭାଇ ଶସ୍ୟକ୍ଷେତ ପୂଜା କରି ଧାନବୁଣା ଆରମ୍ଭ କରିଥାଏ । ସେହି ପବିତ୍ର ଦିବସରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ କବି ଜୟଦେବ ଜନ୍ମଲାଭ କରି ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପ୍ରେମ ଓ ଭକ୍ତି ରସବାଣୀ ସମଗ୍ର ମାନବ ସମାଜକୁ ପରିବେଷଣ କରିବାରେ ସମର୍ଥ ହୋଇଥିଲେ ।

ଶ୍ରୀକ୍ଷେତ୍ରସ୍ଥିତ ପ୍ରଭୁ ଶ୍ରୀଜଗନ୍ନାଥଙ୍କଠାରେ ବିଭିନ୍ନ ଧର୍ମ ଓ ସଂସ୍କୃତିର ସମନ୍ୱୟ ଘଟିଥିବାର କିମ୍ବଦନ୍ତୀମାନ ବିଭିନ୍ନ ପୁରାଣ ଓ ଶାସ୍ତ୍ରମାନଙ୍କରେ ଲିପିବଦ୍ଧ ହୋଇଛି । କବି ଜୟଦେବ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ନିମ୍ବାର୍କ ପ୍ରଥା ଅନୁସରଣ କରିଥିଲେ । ସେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଶ୍ରୀବିଷ୍ଣୁରୂପରେ ଆରାଧନା କରିବା ସଙ୍ଗେ ସଙ୍ଗେ ଶ୍ରୀରାଧାକୃଷ୍ଣଙ୍କ ପରକୀୟାପ୍ରୀତି ଓ ବସନ୍ତକାଳୀନ ରାସଲୀଳାକୁ ଆଧାର କରି ସେ ଲେଖିବାକୁ ସମର୍ଥ ହୋଇଥିଲେ ଲଳିତ ମଧୁର ଗୀତଗୋବିନ୍ଦ କାବ୍ୟ ।

# ଭକ୍ତ ବଳରାମ ଦାସ



ଉତ୍କଳୀୟ ବୈଷ୍ଣବଧର୍ମର ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ବିଷ୍ଣୁସ୍ୱାମୀ ସମ୍ପ୍ରଦାୟ ଅନନ୍ୟ । ସେହି ବିଷ୍ଣୁସ୍ୱାମୀ ସମ୍ପ୍ରଦାୟ, ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ଓ ବିପ୍ଳବୀ ସାଧକ ଭକ୍ତ ବଳରାମ ଦାସଙ୍କ ଜନ୍ମ ସମୟ ସଠିକ୍ ଜଣାନଥିଲେ ବି ବିଶିଷ୍ଟ ଗବେଷକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ ୧୪୭୨ ଖ୍ରୀଷ୍ଟାବ୍ଦରେ । ସୁନ୍ଦରାକାଣ୍ଡର ଶେଷ ପୃଷ୍ଠାରେ ବଳରାମ ଦାସ ନିଜର ପରିଚୟ ଦେବାକୁ ଯାଇ ସୋମନାଥ ମହାପାତ୍ରଙ୍କ ପୁତ୍ର ବୋଲି ଲେଖିଛନ୍ତି । ପିତା ସୋମନାଥ ମହାପାତ୍ର ତତ୍କାଳୀନ ଗଜପତି ମହାରାଜା ପ୍ରତାପରୁଦ୍ର ଦେବଙ୍କର ମନ୍ତ୍ରୀ ଥିଲେ । ଡଃ କୃଷ୍ଣଚନ୍ଦ୍ର ସାହୁ ଲେଖିଛନ୍ତି ବଳରାମ ଦାସଙ୍କର ଜନ୍ମ ୧୪୭୩ ଖ୍ରୀଷ୍ଟାବ୍ଦରେ । ଭକ୍ତ ବଳରାମ ଦାସ ବ୍ରାହ୍ମଣମାନଙ୍କ ଠାରୁ ଭକ୍ତମାନଙ୍କର ଆସନ ଉଚ୍ଚରେ ବୋଲି ପ୍ରତିପାଦନ କରିଥିଲେ । ଫଳରେ ସେ କେତେକ ତୋଷାମଦକାରୀ ବ୍ରାହ୍ମଣମାନଙ୍କର ଶରବ୍ୟ ହୋଇଥିଲେ । ସେ ତତ୍କାଳୀନ ସମାଜ ବ୍ୟବସ୍ଥା ଉପରେ କଟୁ ସମାଲୋଚନା କରି ରାଜଦରବାରରେ ଅପମାନିତ ହୋଇଥିଲେ । କିନ୍ତୁ ସେ ଶ୍ରୀଜଗନ୍ନାଥଙ୍କ ଉପରେ ଅଗାଧ ଭକ୍ତି ଓ ଜଗତଜନଙ୍କର ମଙ୍ଗଳ କାର୍ଯ୍ୟରେ ସମଗ୍ର ଜୀବନଟି ଉତ୍ସର୍ଗ କରି ଲୋକମାନଙ୍କ ପାଖରେ ସମ୍ମାନିତ ହୋଇଥିଲେ ।

ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଓ ସିଦ୍ଧ ସାଧକ ବୋଲି ଅନେକ କିମ୍ବଦନ୍ତୀ ଥିଲେ ମଧ୍ୟ ସେଥିମଧ୍ୟରୁ ଗୋଟିଏ କିମ୍ବଦନ୍ତୀ ନିମ୍ନରେ ପ୍ରଦତ୍ତ ହୋଇଅଛି । ଭକ୍ତ ବଳରାମ ଦାସଙ୍କର ଋଗୁଲତା ନାମକ ଏକ ବେଶ୍ୟା ସହିତ ନିବିଡ଼ ସମ୍ପର୍କ ଥିଲା । ଏକଦା ରଥଯାତ୍ରା ଦିନ ଶ୍ରୀଠାକୁରମାନଙ୍କର ପହଣ୍ଡି ହେବାର ସମୟ ବିଳମ୍ବ ଦେଖି ସେ ବେଶ୍ୟା ଋଗୁଲତାଙ୍କର ଘରେ ସମୟ ଅତିବାହିତ କରିଥିଲେ । ଆଉ ଶ୍ରୀଜୀଉଙ୍କ ପହଣ୍ଡି କଥା ମନେ ନଥାଏ । କିଛି ସମୟପରେ ବଡ଼ଦାଣ୍ଡରେ ରଥ ଗଡ଼ିବାର ଘୋର ଘର୍ଘର ନାଦ ଶୁଣି ତରତର ହୋଇ ରଥ ଉପରେ ଠାକୁରମାନଙ୍କୁ ଦର୍ଶନ କରିବାପାଇଁ ବେଶ୍ୟା ଘରୁ ପଳାଇ ଆସିଲେ । ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଭାବବିହ୍ୱଳ ହୋଇ ବେଶ୍ୟାଘରୁ ପଳାଇଆସିବା ଅବସରରେ ତାଙ୍କ ଶରୀରରେ ବେଶ୍ୟା ଦେହର ହଳଦୀ, କଜ୍ଜ୍ୱଳ ଓ କସ୍ତୁରୀର ଦାଗମାନ ଲାଗିଥିଲା । ଯାହାକୁ ସେ ଜାଣିପାରିନଥିଲେ । ଏଥି ସହିତ ଋଗୁଲତା କବରୀରେ

ଲାଗିଥିବା ରଜନୀଗନ୍ଧା ଫୁଲମାଳ ଛିଣ୍ଡାଇ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରିବାକୁ ଆଣିଥିଲେ । ଦ୍ରୁତଗତିରେ ଆସି କାହାକୁ କିଛି ନକହି ସିଧାସଳଖ ନନ୍ଦିଘୋଷ ରଥ ଉପରେ ଚଢ଼ି ଦର୍ଶନ କରିବା ଅବସରରେ ସେବାୟତମାନେ ତାଙ୍କ ଶରୀରରେ ଲାଗିଥିବା ହଳଦୀ, କଜ୍ଜ୍ୱଳ, ଓ କସ୍ତୁରୀକୁ ଦେଖି ଅପମାନ ଦେବା ସଙ୍ଗେ ସଙ୍ଗେ ଗଳା ଧକ୍କା ଦେଇ ରଥ ଉପରୁ ଓହ୍ଲାଇ ଦେଇଥିଲେ । ଯାହାକୁ ସେଠାରେ ଉପସ୍ଥିତ ଥିବା ସମସ୍ତ ଭକ୍ତ ବଳରାମ ଦାସଙ୍କୁ ଛି ଛାକର କରିଥିଲେ । ପଣ୍ଡାମାନଙ୍କର ଏହି ଅପମାନକୁ ବଳରାମ ଦାସ ସହ୍ୟ କରିପାରିଲେ ନାହିଁ । ପଣ୍ଡାମାନଙ୍କର ଅପମାନର ପ୍ରତିଶୋଧ ନେବା ପାଇଁ ସେଠାରେ ଶ୍ରୀଜଗନ୍ନାଥଙ୍କୁ ବିନମ୍ର ପ୍ରାର୍ଥନା କରିଥିଲେ ।

ରାଗଜର୍ଜରିତ ଓ ଅଭିମାନ କଣ୍ଠରେ ଶ୍ରୀଜଗନ୍ନାଥଙ୍କୁ କହିଲେ, ହେ ପ୍ରଭୁ ! ମୁଁ ଯଦି ତୋର ପ୍ରକୃତ ଭକ୍ତ ଓ ତୁ ଯଦି ମୋର ପ୍ରାଣନାୟକ ହୋଇଥିବୁ, ତେବେ ପଣ୍ଡାମାନେ ଉଚିତ୍ ଶିକ୍ଷା ପାଆନ୍ତୁ । ତତ୍‌ପରେ ବାଙ୍କି ମୁହାଣ ନିକଟସ୍ଥ ଚକ୍ରତୀର୍ଥଠାରେ ସମୁଦ୍ର କୂଳ ବାଲିରେ ତିନିରଥ ଟାଣି ଓ ସେଥିରେ ତିନି ଠାକୁରଙ୍କୁ ବିଜେ କରାଇ ଧ୍ୟାନସ୍ଥ ହୋଇଗଲେ । ବିଧିବିଧାନ ସହିତ ସେଠାରେ ଠାକୁରମାନଙ୍କୁ ଷୋଡ଼ଶ ଉପଚାରର ପୂଜା ଅର୍ଚ୍ଚନା କଲେ । ବାଲି ରଥ ଉପରେ ଠାକୁରଙ୍କର ଦିବ୍ୟଜ୍ୟୋତି ପ୍ରକାଶ ପାଇଲା । ବଡ଼ଦାଣ୍ଡରେ ରଥଗୁଡ଼ିକ ଆଗକୁ ନ'ଯାଇ ଅଟକି ରହିଲେ । ଏହା ଦେଖି ଗଜପତି ମହାରାଜା ଓ ବଡ଼ପଣ୍ଡାମାନେ ବ୍ୟସ୍ତ ବିବ୍ରତ ହୋଇପଡ଼ିଲେ । କିଛି ଉପାୟ ନ'ପାଇ ମହାରାଜା ଧ୍ୟାନରେ ବସିଲେ । ଶୂନ୍ୟ ବାଣୀରେ ପ୍ରଭୁ ଶ୍ରୀଜଗନ୍ନାଥ ରାଜାଙ୍କୁ ଜଣାଇଦେଲେ, ଆମେ ଆମର ପ୍ରିୟ ଭକ୍ତ ବଳରାମଙ୍କର ବାଲି ରଥରେ ବନ୍ଧା ପଡ଼ିଛୁ । ବଳରାମଙ୍କ ପ୍ରତି ଅନ୍ୟାୟ ହୋଇଅଛି । ତତ୍‌ପରେ ମହାରାଜା, କୁଳଗୁରୁ, ବଡ଼ପଣ୍ଡା ଓ ଭକ୍ତ ବଳରାମ ଦାସଙ୍କ ପାଖକୁ ଯାଇ ଧନ୍ୟ ଧନ୍ୟ କହି ତାଙ୍କର ଜୟଗାନ କଲେ । ଅପମାନ ଦେଇଥିବା ପଣ୍ଡାମାନେ ଦଣ୍ଡ ପାଇଲେ । ସମ୍ମାନ ସହ ବିରାଟ ଶୋଭାଯାତ୍ରାରେ ବଳରାମ ଦାସଙ୍କୁ ପାଲିଙ୍କିରେ ଆଣି ରଥ ଉପରେ ବସାଇଥିଲେ । ତତ୍‌ପରେ ରଥଗୁଡ଼ିକ ଆଗକୁ ଆଗକୁ ଗତି କଲା । ଏହା ଦେଖି ସେଠାରେ ଉପସ୍ଥିତ ଥିବା ସମସ୍ତ ସାଧୁ, ସନ୍ଥ, ବାବାଜି, ମହନ୍ତ, ଭକ୍ତ ଓ ଦର୍ଶକଗଣ ବଳରାମ ଦାସଙ୍କୁ ଭୁରି ଭୁରି ପ୍ରଶଂସା କରିଥିଲେ ।

ପଞ୍ଚସଖା ଯୁଗର ଶ୍ରେଷ୍ଠ କବି ବଳରାମ ଦାସ ଓଡ଼ିଶା କାହିଁକି ସମଗ୍ର ଭାରତର ସଂସ୍କୃତି, ସାହିତ୍ୟ, ସାମାଜିକ ଚଳଣି, ଆଧ୍ୟାତ୍ମିକ ସଚେତନତା, ଭବିଷ୍ୟତ ବାଣୀ ଇତ୍ୟାଦି ସମ୍ବନ୍ଧରେ ଅନେକ ପୁସ୍ତକ ରଚନା କରି ଓଡ଼ିଆ ସହିତ୍ୟ ଜଗତର ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛନ୍ତି । ସେହି ପୁସ୍ତକ ମଧ୍ୟରେ ଅଛି ଜଗମୋହନ ରାମାୟଣ, ଶ୍ରୀମଦ୍ ଭଗବତ୍‌ଗୀତା, ମା' ଲକ୍ଷ୍ମୀପୁରାଣ, ଅମରକୋଷ ଗୀତା, ଉଦ୍ଧବଗୀତା, କର୍ଣ୍ଣଦାନ, କମଳଲୋଚନ ଚଉତିଶା, କାକପୋଇ, କାନ୍ତ କୋଇଲି, ଛ'ଚଉପଦୀ, ଛତ୍ରିଶ ଗୁପ୍ତଗୀତା, ଦୀପ୍ତିସାର ଗୀତା, ପଣସ ଘେରୀ, ପରଚେ ଚୂଡ଼ାମଣି, ପ୍ରଳମ୍ବାସୁର ଗୀତା, ପାଦବର୍ଣ୍ଣନା, ବଟ ଅବକାଶ, ବେଢ଼ା ପରିକ୍ରମା, ବେଦାନ୍ତସାର ଗୁପ୍ତଗୀତା,

ବ୍ରହ୍ମକୁଣ୍ଡଳୀ, ବ୍ରହ୍ମାଣ୍ଡ ଭୂଗୋଳ, ବ୍ରହ୍ମଗୀତା, ବ୍ରହ୍ମପୁରାଣ, ଭାବ ସମୁଦ୍ର, ମନୁଗୀତା, ସପ୍ତାଙ୍ଗ ଯୋଗ ସାର ଗୀତା, ଶ୍ରୀହନୁମାନ ଚଉତିଶା ଇତ୍ୟାଦି ଅନେକ ।

## ଅତିବଡ଼ୀ ଜଗନ୍ନାଥ ଦାସ


ସଖା ଜଗନ୍ନାଥ ଦାସ

ପୁଣ୍ୟଧାମ ଶ୍ରୀକ୍ଷେତ୍ରସ୍ଥିତ ବଡ଼ଦେଉଳର ରତ୍ନସିଂହାସନରେ ବିରାଜିତ ଦାରୁବ୍ରହ୍ମ ପ୍ରଭୁ ଶ୍ରୀଜଗନ୍ନାଥ କେବଳ ଓଡ଼ିଶାର ଆରାଧ୍ୟ ଦେବତା ନୁହଁନ୍ତି, ସେ ଅଟନ୍ତି ଅନନ୍ତକୋଟି ବିଶ୍ୱବ୍ରହ୍ମାଣ୍ଡର ପ୍ରାଣକର୍ତ୍ତା, ତ୍ରାଣକର୍ତ୍ତା ଓ ଭାଗ୍ୟବିଧାତା । ବିଭିନ୍ନ ଯୁଗରେ ଭିନ୍ନ ଭିନ୍ନ ରୂପ, ଆକାର ଓ ନାମରେ ନାମିତ ହୋଇ ଧରାପୃଷ୍ଠରେ ସ୍ୱୟଂ ଭଗବାନ ମାନବ ରୂପରେ ଅବତରଣ କରି ସନ୍ଥ ପାଳନ ଓ ଦୁଷ୍ଟଦଳନ କରିବାର କିମ୍ବଦନ୍ତୀମାନ ଧର୍ମଶାସ୍ତ୍ର ଓ ପୁରାଣଗୁଡ଼ିକରେ ଲିପିବଦ୍ଧ । ଇଚ୍ଛାମୟ, ଲୀଳାମୟ ତଥା ଭାବମୟ ହଟିଆ ଠାକୁର ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆବିର୍ଭାବ ଓ ଏହାର ସଂସ୍କୃତି, ପରମ୍ପରା, ପୂଜାପଦ୍ଧତି ଇତ୍ୟାଦି ଅତୀବ ମହାନ୍ । ଏ ବାବଦରେ ବିଭିନ୍ନ ସମ୍ପ୍ରଦାୟର ସାଧୁ, ସନ୍ଥ, ମୁନି, ଋଷି, କବି, ଲେଖକ ଓ ଗବେଷକମାନେ ଲେଖିବାକୁ ଚେଷ୍ଟାକରି ସମ୍ପୂର୍ଣ୍ଣରୂପେ ଲେଖିପାରିନାହାନ୍ତି, କହିପାରିନାହାନ୍ତି କି ଜାଣିପାରିନାହାନ୍ତି । ତେଣୁ ସେ ହେଉଛନ୍ତି ଅସୀମ, ଅସରନ୍ତି, ଅନନ୍ତ ଅଦୃଶ୍ୟ ତଥା ନିରାକାର । ଏହି ମାନବ ସମାଜ ତାଙ୍କର ଆଦିଅନ୍ତ ଜାଣିବା ଅତ୍ୟନ୍ତ କଷ୍ଟସାଧ୍ୟ । ପ୍ରକାଶଥାଉକି ବିଭିନ୍ନ ଯୁଗ ଓ ସମୟରେ ଜନ୍ମଲାଭ କରିଥିବା ପରମ ଭକ୍ତମାନେ ଯଥା ଭକ୍ତପ୍ରବର ଦୀନବନ୍ଧୁ ଦାସ, ଭୀମଭୋଇ, ସାଲବେଗ, ଶ୍ରେଷ୍ଠଭକ୍ତ ରଘୁ ଅରକ୍ଷିତ, ଭକ୍ତ ଶିରୋମଣି ରାମଦାସ, ରାମାନୁଜ, ଶ୍ରୀଚୈତନ୍ୟ, ଭକ୍ତ ବିଶ୍ୱମ୍ଭର ଦାସ, କବିରାଜ ଜୟଦେବ, ଦାସିଆ ବାଉରି, ଅତିବଡ଼ୀ ଜଗନ୍ନାଥ ଦାସ ଇତ୍ୟାଦି ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଜାଣି ଶୁଣି ବୁଝି ଲେଖି ମଧ୍ୟ ଲେଖିବାର ଶେଷ ସୋପାନରେ ଉପନୀତ ହୋଇପାରିନାହାନ୍ତି । କାରଣ ଏହି ସବୁ ବିଭୁକୃପାଧାରୀ ମହାପୁରୁଷମାନଙ୍କର ଲେଖିବା, ଜାଣିବା, ଆହରଣ କରିବାର ଗୁଣ ସମୁଦ୍ରକୁ ଶଙ୍ଖେ ସଦୃଶ ମାତ୍ର ।

ପଞ୍ଚଦଶ ଶତକର ଶେଷଭାଗ ଓ ଷୋଡ଼ଶ ଶତକର ପ୍ରଥମାର୍ଦ୍ଧରେ ସମଗ୍ର ଭାରତରେ ଯେଉଁ ଭକ୍ତି ଆନ୍ଦୋଳନ ମୁଣ୍ଡ ଟେକିଥିଲା, ସେଥିରେ ଓଡ଼ିଶାମାଟିର ପୃଷ୍ଠପୋଷକତା କରିଥିଲେ

ପଞ୍ଚ ସିଦ୍ଧି ସାଧକଗଣ- ବଳରାମ ଦାସ, ଯଶୋବନ୍ତ ଦାସ, ଅଚ୍ୟୁତାନନ୍ଦ ଦାସ, ଜଗନ୍ନାଥ ଦାସ ଓ ଶିଶୁଅନନ୍ତ ଦାସ । ଯାହାଙ୍କୁ ସାହିତ୍ୟ ଓ ଆଧ୍ୟାତ୍ମିକ ଜଗତର ପଞ୍ଚସଖା ଯୁଗ ବୋଲି କୁହାଯାଏ । ସେହି ପଞ୍ଚସଖାଙ୍କର ଜଗତରନାଥ ପ୍ରଭୁ ଶ୍ରୀଜଗନ୍ନାଥ ଥିଲେ ଇଷ୍ଟ ଦେବତା, ନୀଳାଚଳ ଧାମ ଥିଲା ନିତ୍ୟ ଗୋଲୋକ ଧାମ ଓ କୈବଲ୍ୟ କଣିକା ଥିଲା ମୁକ୍ତିର ପସରା । ଅଶେଷ ଆଶୀର୍ବାଦର ଭଣ୍ଡାର ତଥା ଦୟାସାଗର ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଆଧାର କରି ପଞ୍ଚସଖାମାନେ ରଚନା କରିଛନ୍ତି ଭକ୍ତି ରସାତ୍ମକ ଅଶେଷ ପୁରାଣ, ସଂହିତା, ଜଣାଣ, ଭଜନ, କାବ୍ୟକବିତା ଚଉତିଶା ଓ ମାଳିକା ଇତ୍ୟାଦି । ଏହି ସମୟରେ ବହୁଳ ଭାବରେ ବୈଷ୍ଣବ ଧର୍ମର ପ୍ରସାର ଓ ପ୍ରଚାର ହୋଇ ସୃଷ୍ଟି କରିଥିଲା ଉତ୍କଳୀୟ ସମାଜରେ ଜ୍ଞାନମିଶ୍ରିତ ପ୍ରେମ ନଦୀର ବନ୍ୟା । ଆଉ ମଧ୍ୟ ବିଭିନ୍ନ ଧର୍ମ ସମ୍ପ୍ରଦାୟର ପରମ ଭକ୍ତମାନଙ୍କଦ୍ୱାରା ଲିଖିତ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଧର୍ମ ଓ ସଂସ୍କୃତିର ସମସ୍ତ ଭାବମୟ ଓ ଭକ୍ତିମୟ ରସ ସମ୍ପୂର୍ଣ୍ଣ ଭାବେ ମିଶି ସୃଷ୍ଟି କରିଅଛି ଏକ ମହାନ୍ ଧର୍ମ ନଦୀ । ତନ୍ମଧ୍ୟରୁ ଅତିବଡ଼ୀ ଶ୍ରୀଜଗନ୍ନାଥଙ୍କ ଦ୍ୱାରା ଲିଖିତ ଏହି ଧର୍ମ ନଦୀକୁ ଜୀବନ୍ତ ରୂପଦେବାର ଅବଦାନ ସ୍ୱତନ୍ତ୍ର ଅଟେ । ଏହି ଭକ୍ତମାନଙ୍କ ମଧ୍ୟରେ ଶ୍ରୀଜଗନ୍ନାଥ ଦାସ ଥିଲେ ଅନନ୍ୟ ପ୍ରତିଭାର ଅଧିକାରୀ ।

ଭଗବାନ ଓ ଭକ୍ତଙ୍କ ମଧ୍ୟରେ ଥିବା ସମ୍ପର୍କ ଅଭିନ୍ନ । ପରସ୍ପର ଅବିଚ୍ଛେଦ ଅଙ୍ଗ । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଥିବା ଅନ୍ତର୍ନିହିତ ଗୁଣକୁ ଦେଖିବା, ଜାଣିବା, ସ୍ପର୍ଶକରିବା ଓ ଉପଭୋଗ କରିବା ଦୁରୂହ ବ୍ୟାପାର । କାରଣ ଏହି ଅନ୍ତର୍ନିହିତ ଭାବ ଅସୀମ, ଅମାପ, ଅନନ୍ତ, ନିରାକାର ଓ ଅବର୍ଣ୍ଣନୀୟ । ତେଣୁ ମାନବ ଭଗବାନଙ୍କର ପରମ ଭକ୍ତ ହେବା ତଥା ସାନ୍ନିଧ୍ୟ ଲାଭ କରିବା ଅତ୍ୟନ୍ତ କଷ୍ଟସାଧ୍ୟ । କଥାରେ ଅଛି "ଭକ୍ତି ମୂଳେ ଭଗବାନ" ଯାହାକି ଶ୍ରୀ ବ୍ୟାସଦେବ ସଂସ୍କୃତ ଭାଗବତରେ ଲେଖିଛନ୍ତି ।

'ମୂକଂ କରୋତି ବାଚଳଂ ପଙ୍ଗୁଂ ଲଂଘୟେତ୍ ଗିରିଂ,
ଯତ୍‌କୃପା ତମହଂ ବନ୍ଦେ, ପରମାନନ୍ଦ ମାଧବଂ ।'

ଯିଏ ଏକାଗ୍ରତାର ସହିତ ଅନ୍ତଃକରଣରେ ନିଜକୁ ଭଗବାନଙ୍କ ପାଖରେ ସମର୍ପିତ କରିଦିଏ, ସେ ହିଁ ପ୍ରକୃତରେ ଭକ୍ତ ପଦବାଚ୍ୟ । ନିଷ୍ଠା, ତ୍ୟାଗ ଓ ସାଧନା ହିଁ ଭକ୍ତ ହେବାର ମୂଳ ଉତ୍ସ । ଯିଏ ଏହି ସବୁ ଗୁଣକୁ ଆୟତ୍ତ କରିଥାଏ, ସେ ଭଗବାନଙ୍କର ପ୍ରକୃତ ଭକ୍ତ ରୂପେ ବିବେଚିତ ହୋଇଥାଏ । ଏତଦ୍‌ବ୍ୟତୀତ ପ୍ରକୃତ ଭକ୍ତ ହେବାକୁ ହେଲେ, ଉତ୍ସର୍ଗୀକୃତ ଭାବେ ଲୋଭ, ମାୟା, କାମ, କ୍ରୋଧ, ଅଶାନ୍ତି ଆଦି ଗୁଣକୁ ଜୀବନର ସକଳ କ୍ଷେତ୍ରରେ ଦୂରେଇ ରହିଥାଏ । ବାସ୍ତବିକ୍ ଅତିବଡ଼ୀ ଶ୍ରୀଜଗନ୍ନାଥ ଦାସ ତାଙ୍କର ବଳିଷ୍ଠ ତ୍ୟାଗ, ସାଧନା ଓ ନିଷ୍ଠା ବଳରେ ସାଂସାରିକ ସମସ୍ତ ଦୁର୍ଗୁଣରୁ ଦୂରେଇ ରହିବା ସଙ୍ଗେ ସଙ୍ଗେ ନିଜର ଅନ୍ତଃକରଣକୁ

ସମ୍ପୂର୍ଣ୍ଣରୂପେ ଶ୍ରୀଜଗନ୍ନାଥଙ୍କ ପାଖରେ ସମର୍ପି ଥିବାରୁ ଜଣେ ପରମଭକ୍ତ ରୂପେ ପ୍ରସିଦ୍ଧି ଲାଭ କରିପାରିଥିଲେ ।

ଏହି ମହିମାଧାରୀ ଭକ୍ତ କବି ଜଗନ୍ନାଥ ଦାସଙ୍କର ଜନ୍ମିତ ଗ୍ରାମ ଶ୍ରୀକ୍ଷେତ୍ରଠାରୁ ପ୍ରାୟ ୧୫କି.ମି. ଦୂରରେ ଥିବା ବ୍ରହ୍ମଗିରି ବ୍ଲକ ଅନ୍ତର୍ଗତ କପିଳେଶ୍ୱରପୁର ଶାସନ । ୧୪୮୭ଖ୍ରୀଷ୍ଟାବ୍ଦ ଭାଦ୍ରବ ଶୁକ୍ଳ ଅଷ୍ଟମୀ (ଶ୍ରୀରାଧାଷ୍ଟମୀ)ତିଥି ବୁଧବାର ଅନୁରାଧା ନକ୍ଷତ୍ର ବୃଶ୍ଚିକ ଚନ୍ଦ୍ର ମଧ୍ୟାହ୍ନ ଶୁଭ ମାହେନ୍ଦ୍ର ମୁହୂର୍ତ୍ତରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ପୁରାଣପଣ୍ଡା ଭଗବାନ ଦାଶ ଓ ମାତାଙ୍କ ନାମ ଥିଲା ପଦ୍ମାବତୀ ଦେବୀ । ସେ ଥିଲେ ନୈଷ୍ଠିକ ବ୍ରାହ୍ମଣ । ଜଗନ୍ନାଥ ଦାସଙ୍କର ପୁରାଣ ପଢ଼ିବା ଓ ପୂଜାପାଠ ଆଦି କରିବା ଥିଲା ପୈତୃକ ଓ କୌଳିକ ବୃତ୍ତି । ସେ ଥିଲେ ସରଳ, ଅମାୟିକ, ଚତୁର, ଧର୍ମପରାୟଣ ଓ ସାଧୁ ପ୍ରକୃତିର ଲୋକ । ସେ ଅଞ୍ଚଳରେ ଜଣେ ସୁଜ୍ଞାନୀ ପଣ୍ଡିତ ରୂପେ ସେ ସୁପରିଚିତ ଥିଲେ । ଯେ କୌଣସି ଧାର୍ମିକ କାର୍ଯ୍ୟରେ ଲୋକମାନେ ତାଙ୍କର ପରାମର୍ଶ ନେବା ସଙ୍ଗେ ସଙ୍ଗେ ସମ୍ମାନ ପ୍ରଦର୍ଶନ କରୁଥିଲେ । ଭଗବାନଙ୍କ ପ୍ରତି ତାଙ୍କର ଥିଲା ଗଭୀର ବିଶ୍ୱାସ ଓ ଭକ୍ତି । ସଦା ସର୍ବଦା ସେ ନିଷ୍ଠାର ସହ ଭଗବାନଙ୍କ ଜଣାଣ, ସ୍ତୁତି ଓ ଆରାଧନା କରୁଥିଲେ । ପ୍ରତିଦିନ ସେ ଧର୍ମ ସମ୍ବନ୍ଧୀୟ ପୁରାଣ ଶାସ୍ତ୍ର ପଢ଼ି ଶତ ଶତ ଭକ୍ତଙ୍କୁ ଜଣାଉଥିଲେ । ଏହା ସହିତ ସେ ପ୍ରତିଦିନ ବ୍ୟାସଦେବଙ୍କ ଦ୍ୱାରା ଲିଖିତ ସଂସ୍କୃତ ଭାଗବତ ତାଙ୍କ ଗ୍ରାମର ଏକ ଭାଗବତ ଟୁଙ୍ଗୀରେ ବୋଲି ଓ ଏହାର ଭାବାର୍ଥକୁ ସରଳ ଓଡ଼ିଆ ଭାଷାରେ ଶ୍ରୋତାମାନଙ୍କୁ ବୁଝାଉଥିଲେ । ଫଳରେ ସେ ଭକ୍ତି ଓ ସାହିତ୍ୟ ଗୁଣର ଅଧିକାରୀ ହୋଇପାରିଥିଲେ । ତେଣୁ ସେ ହୃଦୟଙ୍ଗମ କରିପାରିଥିଲେ ଯେ, ସଂସାରରେ ଅନୀତି, ଅନ୍ୟାୟ, ମିଛ, ଲୋଭ, ମାୟା, କାମ, କ୍ରୋଧ ଓ ଆସକ୍ତି ଆଦି ପରିପୂର୍ଣ୍ଣ ହୋଇଅଛି । ଏହି ସବୁ ଦୁର୍ଗୁଣରୁ ମୁକ୍ତି ପାଇବା ପାଇଁ ଧର୍ମ ତଥା ସତ୍‌ପଥ ହେଉଛି ଅମୋଘ ଅସ୍ତ୍ର । ତେଣୁ ସେ ସଦାସର୍ବଦା ଭକ୍ତି ଭାବନାରେ ନିମଗ୍ନ ରହୁଥିଲେ । ସେ ଧ୍ୟାନ, ତପ, ଜପ, ଆଦି ମାଧ୍ୟମରେ ଭଗବାନଙ୍କୁ ଜଣାନ୍ତି, ହେ ପ୍ରଭୁ ! ମତେ ଏହି ମିଥ୍ୟା ସଂସାରରୁ ଉଦ୍ଧାର କରି ତୁମରି ପାଦତଳେ ଆଶ୍ରୟ ଦିଅ । ନ'ହେଲେ ମତେ ଜୀବନରୁ ମାରିଦିଅ । ଧାରାବାହିକ ଭାବେ ସେ ବୋଲୁଥିବା ଭାଗବତ କେତେଜଣ ଶ୍ରୋତା, ସଂସ୍କୃତ ଭାଷାର ଏହି ଭାଗବତକୁ ବୁଝି ପାରନ୍ତି ନାହିଁ । ଏହା ଦେଖି ତାଙ୍କର ଜନ୍ମିତ ମାତା ପଦ୍ମାବତୀ ଦେବୀ ପୁତ୍ର ଜଗନ୍ନାଥଙ୍କୁ କହିଲେ, ହେ ପୁତ୍ର ! ତୁମେ ସଂସ୍କୃତ ଭାଷାର ଭାଗବତକୁ ଓଡ଼ିଆ ଭାଷାରେ ଲେଖ । ଫଳରେ ମୋ ସମେତ ଶତ ଶତ ନରନାରୀ ସହଜରେ ବୁଝିପାରିବେ । ଫଳସ୍ୱରୂପ ତୁମର ନାମ ଚତୁର୍ଦ୍ଦିଗରେ ପ୍ରଚାର ହେବା ସଙ୍ଗେ ସଙ୍ଗେ ଧର୍ମ ଅର୍ଜନ କରି ମୁକ୍ତିଲାଭ କରିବ । ମାତାଙ୍କ ଆଜ୍ଞା ପାଳନ କରିବା ହେଉଛି ପୁତ୍ରର ପ୍ରଧାନ କର୍ତ୍ତବ୍ୟ । କାରଣ ପିତାମାତା ହେଉଛନ୍ତି ପୁତ୍ରର ପ୍ରଥମ ଭଗବାନ । ତେଣୁ ସେ ମାତାଙ୍କ ଆଜ୍ଞା ପାଳନ କରିବା ପାଇଁ ଦୃଢ଼

ପରିକର ହୋଇଥିଲେ । ସେ ଓଡ଼ିଆ ଭାଷାରେ କିପରି ଭାଗବତ ଲେଖିବେ, ସେଥିପାଇଁ ଘରଦ୍ୱାର ତ୍ୟାଗକରି ଭାବବିହ୍ୱଳ ହୋଇ ଶ୍ରୀକ୍ଷେତ୍ରସ୍ଥିତ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ଆଶ୍ରୟ ନେଇଥିଲେ । ସଦା ସର୍ବଦା ସେ ତାଙ୍କ ଶରୀର ସହିତ ମନପ୍ରାଣ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ସମର୍ପଣ କରି ଦେଇଥିଲେ । ଏହିପରି ଦାସେ ସାଆନ୍ତଙ୍କ କରୁଣ ନିବେଦନକୁ ସ୍ୱୟଂ ସଂସାର କର୍ତ୍ତା ତଥା ପରମେଶ୍ୱର ପ୍ରଭୁ ଶ୍ରୀଜଗନ୍ନାଥ ସହ୍ୟ କରିପାରିଲେ ନାହିଁ ।

ଏକଦା ଜଗନ୍ନାଥ ଦାସ ରାତିରେ ଘୋର ନିଦ୍ରାରେ ଶୋଇଥିବା ବେଳେ ପ୍ରଭୁ ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ ମାଧ୍ୟମରେ କହିଲେ, ହେ ବତ୍ସ ! ଏ ସଂସାର ବାରିଧିରୁ ମୁକ୍ତି ପାଇବାକୁ ହେଲେ, ଏକମାତ୍ର ପଥ ହେଉଛି ଭଗବତ୍ ପ୍ରାପ୍ତି । ଏହାକୁ ଏକାଗ୍ରତାର ସହିତ ପାଳନ କର । ଯାହା ଫଳରେ ତୁମେ ଓଡ଼ିଆରେ ଭାଗବତ ଲେଖିପାରିବ । ତୁମେ ମୁକ୍ତି ପାଇବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ଏହି ପବିତ୍ର ଧାରାରେ ଅନୁପ୍ରାଣିତ କରିପାରିବ । କବି ଲେଖିଛନ୍ତି :-

"ତୁ ନିଶ୍ଚେ ପବିତ୍ର ହୋଇବୁ । ଅଶେଷ ପ୍ରାଣୀଙ୍କୁ ତାରିବୁ ॥
ଶ୍ରୀ ଭାଗବତ ଶୁଣି କର୍ଣ୍ଣେ । ପବିତ୍ର ହେବେ ପ୍ରାଣୀଜନେ ॥"

ପ୍ରଭୁଙ୍କଠାରୁ ଆଜ୍ଞା ପାଇ ଭକ୍ତ ଜଗନ୍ନାଥ ଦାସ ଗଭୀର ଦୁଃଖ ଓ ଚିନ୍ତାରେ ପଡ଼ିଲେ । ଏତେବଡ଼ ମହତ ଓ ଧାର୍ମିକ ଶାସ୍ତ୍ର ମୁଁ କିପରି ଲେଖିବି ? ଯାହାକୁ ମୁନି ଋଷିମାନେ ଲେଖିବାକୁ ସମର୍ଥ ହୋଇ ପାରିନାହାନ୍ତି । ଏହି କଥା ଭାବି ଭାବି ଜଗନ୍ନାଥ ଦାସ ଭାଙ୍ଗି ପଡ଼ିଲେ ସିନା, କିନ୍ତୁ ଲେଖିବାକୁ ସମର୍ଥ ହୋଇପାରିଲେ ନାହିଁ । ପୁନର୍ବାର ଭଗବାନ ସ୍ୱପ୍ନାଦେଶ ମାଧ୍ୟମରେ ଜଗନ୍ନାଥ ଦାସଙ୍କୁ କହିଲେ, ହେ ବତ୍ସ ! ଭୟ ନ'କରି ସାହସର ସହିତ ଭାଗବତ ଲେଖା ଆରମ୍ଭ କର । ମୁଁ ତୁମ ହୃଦୟରେ ରହି ଯାହା କହିବି ତୁମେ ତାହା ଲେଖିବ । ହଠାତ୍ କବିଙ୍କର ନିଦ ଭାଙ୍ଗିଗଲା । ଭାବବିହ୍ୱଳରେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ କିପରି ଲେଖିବେ, କିଛି ଭାବିପାରିଲେ ନାହିଁ । ଏପରି ଭାବିବା ସମୟରେ ତାଙ୍କ ଶରୀରରେ ଶତସିଂହର ବଳ ଜାଗ୍ରତ ହୋଇଗଲା । ତାଙ୍କ ମନଟି ଲେଖିବା ପାଇଁ ଉତ୍‌ଫୁଲିତ ହେବା ସଙ୍ଗେ ସଙ୍ଗେ ଶତଗୁଣର ଆଗ୍ରହ ଓ ଉତ୍ସାହ ହୃଦୟ-ମନ୍ଦିରରେ ଜାଗ୍ରତ ହୋଇଥିଲା । ଅପାର କରୁଣାର ସାଗର ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନିଜର ଶରୀରଟି ଅର୍ପଣ କରି ଓଡ଼ିଆ ଭାଗବତର ଲେଖା ଆରମ୍ଭ କରିଥିଲେ । ଯାହା ଫଳରେ କି ସେ ଅନୁଭବ କଲେ ସତେ ଯେପରି ସ୍ୱୟଂ ଭଗବାନ ତାଙ୍କ କଣ୍ଠରେ ବିଜେ ହୋଇ ଡାକୁଛନ୍ତି । ଏହିପରି ଦିନ ପରେ ଦିନ ଅଧ୍ୟାୟକୁ ଅଧ୍ୟାୟ ଲେଖି ଚାଲିଥାନ୍ତି । କିନ୍ତୁ ଯେଉଁଦିନ ସେ ଯାହା ଲେଖନ୍ତି, ତାହାକୁ ସୁମଧୁର ସ୍ୱରରେ ପାଠକରି ଶ୍ରୋତାମାନଙ୍କୁ ଶୁଣାଇଥାନ୍ତି । ତାହାଥିଲା ଭକ୍ତି ରସ ଓ ଭାବରେ ପରିପୂର୍ଣ୍ଣ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା, ଅପୂର୍ବ ମହିମା ଓ ପ୍ରେମଲୀଳାଠାରୁ ଆରମ୍ଭ କରି ସମଗ୍ର ଜୀବନ ସଂଗ୍ରାମ । ଏହି ପବିତ୍ର ଧର୍ମ ସମ୍ବନ୍ଧୀୟ ରସାମୃତ କବିତାକୁ ଶୁଣିବାପାଇଁ ତାଙ୍କ ପାଖରେ ଶହ ଶହ ସ୍ତ୍ରୀ, ପୁରୁଷ ଭକ୍ତମାନେ ଭିଡ଼

ଜମାଇଥାନ୍ତି । ବିଶେଷତଃ ନାରୀମାନେ ଏହା ଶୁଣି ଆତ୍ମହରା ହୋଇଯିବା ସଙ୍ଗେ ସଙ୍ଗେ ନିଜର ଘରଦ୍ୱାର ଭୁଲିଯାଆନ୍ତି । ଫଳରେ କବି ଜଗନ୍ନାଥଙ୍କର ପ୍ରାଧାନ୍ୟ ବୃଦ୍ଧି ହୋଇଥିଲା । ସେ ସମୟରେ ଏପରି ହୋଇଥିଲା, ଦୂରଦୂରାନ୍ତରୁ ଆସୁଥିବା ଅଗଣିତ ଭକ୍ତ ସମାଜ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଅବସରରେ ଭକ୍ତ ଜଗନ୍ନାଥଙ୍କର ମୁଖରୁ ଏହି ଭକ୍ତିରସ ଭାଗବତ ଶୁଣି ନିଜକୁ ଧନ୍ୟ ମଣୁଥିଲେ ।

ଅଳ୍ପଦିନ ମଧ୍ୟରେ କବି ଜଗନ୍ନାଥଙ୍କର ଖ୍ୟାତି ଓ ସମ୍ମାନ ଚାରିଆଡ଼େ ପ୍ରସାରିତ ହୋଇଗଲା । ଲୋକମାନେ ତାଙ୍କର ଭୁରି ଭୁରି ପ୍ରଶଂସା ନକରି ରହିପାରିଲେ ନାହିଁ । ତେଣୁ ଏହାକୁ ସହ୍ୟ ନ'କରି କେତେଜଣ ଖଳ ପ୍ରକୃତିର ପଣ୍ଡିତ ମିଛ ସତ ଲଗାଇ ତତ୍‌କାଳୀନ ମହାରାଜାଙ୍କ ନିକଟରେ କବି ଜଗନ୍ନାଥଙ୍କ ବିରୁଦ୍ଧରେ ଅଭିଯୋଗ କରିଥିଲେ । ଖଳ ପଣ୍ଡିତମାନଙ୍କର ମହାରାଜାଙ୍କୁ ଆପତ୍ତି ଥିଲା, 'ହେ ମହାରାଜ ! ବ୍ରାହ୍ମଣ ଜଗନ୍ନାଥ ଦାସ ମିଥ୍ୟାବାଦୀ, କପଟାଚାରୀ ଓ କାମାନ୍ଧ ପ୍ରକୃତିର ଲୋକ । ମୁଣ୍ଡରେ ଚିତା, କାଖରେ ପୋଥି ଓ ତୁଣ୍ଡରେ ଶ୍ରୀକୃଷ୍ଣଙ୍କ ନାମ ଧରି ଘର ଘର ବୁଲି ସ୍ତ୍ରୀଲୋକମାନଙ୍କ ଗହଣରେ ଗୀତ ବୋଲୁଛନ୍ତି । ଫଳରେ ଗୃହିଣୀମାନଙ୍କର ଘର ସଂସାର ଉଜୁଡ଼ିବା ସଙ୍ଗେ ସଙ୍ଗେ କେତେଜଣ ଯୁବତୀ ତାଙ୍କ ଗୀତ ଶୁଣି ମୃତ୍ୟୁବରଣ କଲେଣି । ଏହାଶୁଣି ମହାରାଜା ଅନୁସନ୍ଧାନ ନକରି ରାଗରେ ଜର୍ଜରିତ ହୋଇ କବି ଜଗନ୍ନାଥଙ୍କୁ ବାନ୍ଧି ଆଣିବାକୁ ସୈନ୍ୟମାନଙ୍କୁ ଆଦେଶ ଦେଲେ । କ୍ଷଣକ ମଧ୍ୟରେ ସୈନ୍ୟମାନେ କବି ଜଗନ୍ନାଥଙ୍କୁ ବାନ୍ଧି ମହାରାଜାଙ୍କ ପାଖକୁ ନେଇ ଆସିଲେ । ରାଜା ତାଙ୍କୁ ପଚାରିଲେ, ତୁମ ନାମରେ ଗୁରୁତର ଅଭିଯୋଗ ଅଛି । ତୁମେ ନାରୀମାନଙ୍କ ମଧ୍ୟରେ ରହି ସଦା ସର୍ବଦା ତାଙ୍କୁ ପଥଭ୍ରଷ୍ଟ କରାଉଛ । ରାଜାଙ୍କ ପ୍ରଶ୍ନର ଉତ୍ତରରେ ଜଗନ୍ନାଥ ଦାସ ନମ୍ର ଭାବରେ କହିଲେ, ହେ ରାଜନ ! ଖଳ ଲୋକଙ୍କ କର୍ଣ୍ଣକୁହା ଓ ଚୁଗୁଲି କଥାକୁ ଶୁଣି ମୋ ପରି ଜଣେ ସାଧୁ ଲୋକକୁ ଅବିଶ୍ୱାସ କରନ୍ତୁ ନାହିଁ । ସେମାନେ ମୋ ବିରୁଦ୍ଧରେ ଆପଣଙ୍କୁ ଯାହାସବୁ କହିଛନ୍ତି, ତାହା ସମ୍ପୂର୍ଣ୍ଣ ମିଥ୍ୟା ଓ କପୋଳକଳ୍ପିତ । ମୋ ପାଖରେ ସମସ୍ତ ନାରୀ ଓ ପୁରୁଷ ସମାନ । ମୁଁ ପୁରୁଷମାନଙ୍କ ପାଖରେ ପୁରୁଷ ଓ ନାରୀମାନଙ୍କ ପାଖରେ ନାରୀ । ମୋ ପାଇଁ ପ୍ରଭୁ ବଳିଆର ଭୁଜ ଶ୍ରୀଜଗନ୍ନାଥ ଶ୍ରେଷ୍ଠ । ମୁଁ କେବଳ ମୋର ଆରାଧ୍ୟ ଦେବତା ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଡରେ । କିନ୍ତୁ ଆଉ କାହାକୁ ଡରେ ନାହିଁ ।

ବ୍ରହ୍ମଚାରୀ ଜଗନ୍ନାଥଙ୍କ ଏପରି ନିର୍ଭୀକ ଓ କଠୋର କଥା ଶୁଣି ରାଜା କ୍ରୋଧ ଜର୍ଜରିତ ହୋଇ ସୈନ୍ୟମାନଙ୍କୁ ଆଦେଶ ଦେଲେ, ତାଙ୍କୁ ବନ୍ଦୀଶାଳାରେ ପୂରାଇ ଦିଅ । ରାଜଦ୍ରୋହୀ ଦଣ୍ଡରେ ଦଣ୍ଡିତ ହୋଇ ଜଗନ୍ନାଥ ଦାସ ବନ୍ଦୀ ଘରେ ରହି, ଆକୁଳ କଣ୍ଠରେ ତାଙ୍କର ଆରାଧ୍ୟ ଦେବତାକୁ ଡାକିଲେ । ହେ ପ୍ରଭୁ ଭାବଗ୍ରାହୀ, ଆରତ ଭଞ୍ଜନ ଚକ୍ରପାଣି, ତୁମର ଭକ୍ତ ବିପଦରେ ପଡ଼ିଅଛି । ହେ ଇଚ୍ଛାମୟ, ତୁମେ ଇଚ୍ଛାକଲେ ମୁଁ ମୁକ୍ତି ହେବି । ନତୁବା ଏଠାରେ ନଖାଇ ପଡ଼ି ପଡ଼ି ମୃତ୍ୟୁବରଣ କରିବି । ମୋର ପୁରୁଷ ରୂପକୁ ପରିବର୍ତ୍ତନ କରି ନାରୀ ରୂପରେ ପରିବର୍ତ୍ତନ

କର । ଯଦି ମତେ ନାରୀ ରୂପରେ ପରିବର୍ତ୍ତନ ନ କରିବ, ତେବେ ତୁମକୁ ଭକ୍ତ ହତ୍ୟା ଦୋଷ ଲାଗିବ । ପରମ ଭକ୍ତର ଦୁଃଖରେ ପ୍ରଭୁଙ୍କ ଆସନ ଟଳମଳ ହେଲା । ଏହିପରି ଭକ୍ତ ତା'ର ଦୁଃଖ ପ୍ରଭୁଙ୍କୁ ଜଣାଇବା ଅବସରରେ ନିଦ୍ରାମଗ୍ନ ହୋଇପଡ଼ିଲେ । ଅର୍ଦ୍ଧରାତ୍ରିରେ ପ୍ରଭୁ ବନ୍ଦୀଶାଳାରେ ପ୍ରବେଶ କରି ଭକ୍ତ ଜଗନ୍ନାଥଙ୍କର ତନୁକୁ ନାରୀ ରୂପରେ ପରିଣତ କରାଇଦେଲେ । ନାରୀ ହିଁ ସଂସାରର ଆଧାର, ସୃଷ୍ଟିର ପ୍ରାଣକେନ୍ଦ୍ର ଓ ମୁକ୍ତିର ଦାତ୍ରୀ । ସୃଷ୍ଟି ଓ ପ୍ରଳୟର ମୂଳ ଉତ୍ସ । ଅହଲ୍ୟା ପାଷାଣ ହୋଇଥିଲେ । ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଚରଣ ସ୍ପର୍ଶରେ ମୁକ୍ତି ପାଇଥିଲେ । ସେହି ପରି କୁବୁଜା ଶ୍ରୀକୃଷ୍ଣଙ୍କ କର ସ୍ପର୍ଶରେ ମୁକ୍ତି ପାଇଥିଲେ । ଏହି ନାରୀ ମା'ଗଙ୍ଗା ରୂପରେ ଧରାପୃଷ୍ଠରେ ବହି ଅଶେଷ ପ୍ରାଣୀଙ୍କ ପାପଭାର ବିନାଶ କରୁଅଛି ।

ପ୍ରଭାତ ହେବାରୁ ଜେଲର ଦ୍ୱାରପାଳ କବାଟ ଖୋଲି ଦେଖନ୍ତେ, ଭକ୍ତ ଜଗନ୍ନାଥଙ୍କୁ ନ ଦେଖି ତାଙ୍କ ବଦଳରେ ଜଣେ ନାରୀଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । କ୍ଷଣକ ମଧ୍ୟରେ ଦ୍ୱାରପାଳ ଏହି ଖବରଟି ମହାରାଜାଙ୍କୁ ଜଣାଇଥିଲେ । ଦ୍ୱାରପାଳଠାରୁ ଶୁଣି ରାଜା ବିସ୍ମିତ ହେବା ସଙ୍ଗେ ସଙ୍ଗେ ବନ୍ଦୀଶାଳାକୁ ଆସି ସ୍ୱଚକ୍ଷୁରେ ପ୍ରକୃତ ଘଟଣା ଦେଖି ସ୍ତମ୍ଭୀଭୂତ ହୋଇଯାଇଥିଲେ । ଏହି ସୁନ୍ଦରୀ ନାରୀଙ୍କୁ ଦେଖି ରାଜାଙ୍କର ଆତ୍ମବିଶ୍ୱାସ ଜାଗ୍ରତ ହୋଇଥିଲା ଯେ, ଏହା ପ୍ରକୃତ ପ୍ରଭୁଙ୍କର ମାୟା । ନାରୀରୂପୀ ଭକ୍ତ ଜଗନ୍ନାଥ ଦାସ କଟାକ୍ଷ ସ୍ୱରରେ ରାଜାଙ୍କୁ କହିଲେ, ହେ ରାଜନ ! ନିଜର ଭୁଲ ବୁଝିପାରିଲେ ତ ! ସେଠାରେ ଥିବା ମନ୍ତ୍ରୀ, ପରିଷଦ ଏହା ଦେଖି, ପାଟିରୁ ବାକ୍ୟ ସ୍ଫୁରିଲା ନାହିଁ । ଆଉ ମଧ୍ୟ ରାଜାଙ୍କୁ ଏହି ଘଟଣାର ସତ୍ୟାସତ୍ୟ ବୁଝିବା ଅଛପା ରହିଲା ନାହିଁ । ଜଗନ୍ନାଥ ଦାସ ନିଶ୍ଚୟ ପ୍ରଭୁ ଶ୍ରୀହରିଙ୍କ ଭକ୍ତ ବୋଲି ବିଶ୍ୱାସ କଲେ । ତାଙ୍କୁ ଆଉ ଅଧିକ ଦଣ୍ଡ ଦେଲେ ନିଜର କ୍ଷତି ହେବ ବୋଲି ଭାବି ରାଜା ତାଙ୍କର ପାଦପୂଜା କରିବା ସଙ୍ଗେ ସଙ୍ଗେ ନିଜର ଭୁଲ ପାଇଁ କ୍ଷମା ପ୍ରାର୍ଥନା ମାଗିଲେ । ଅନେକ ଧନ, ରତ୍ନ, ସୁନା ଇତ୍ୟାଦି ଅର୍ପଣ କରି ବନ୍ଦୀରୁ ମୁକ୍ତି କରିଦେଲେ । ଭାଗବତ ବାଣୀ ପବିତ୍ର ଓ ସତ୍ୟ ଉପରେ ଆଧାରିତ । ଏହି ବାଣୀକୁ ଶ୍ରବଣ କଲେ ଶତଜନ୍ମର ପାପ ନାଶ ହୋଇ ଧର୍ମଅର୍ଜନ ହୁଏ ବୋଲି ରାଜାଙ୍କର ବିଶ୍ୱାସ ଜାଗ୍ରତ ହୋଇଥିଲା । ତେଣୁ ସେ ଭାଗବତ ଶୁଣିବା ପାଇଁ କବି ଜଗନ୍ନାଥ ଦାସଙ୍କୁ କହିଥିଲେ । ମହାରାଜାଙ୍କ ଅନୁରୋଧକ୍ରମେ ଜଗନ୍ନାଥ ଦାସ ସହର୍ଷ ଚିତ୍ତରେ ଭଗବାନଙ୍କୁ ପ୍ରାର୍ଥନା କରି ଜଳ ଭିତରେ ପ୍ରବେଶ କରି ପୁରୁଷ ରୂପ ଧାରଣ କରିଥିଲେ । ସହସା ସେ ରାଜଦରବାରରେ ସ୍ୱୟଂ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମୁଖରୁ ନିଃସୃତ ଭାଗବତ ବାଣୀ ପାଠ କରିଥିଲେ । ଏହାଶୁଣି ରାଜାଙ୍କ ସମେତ ମନ୍ତ୍ରୀ ପରିଷଦ ଭଗବତପ୍ରେମୀ ହେବା ସଙ୍ଗେ ସଙ୍ଗେ କବି ଜଗନ୍ନାଥ ଦାସଙ୍କର ଜୟଗାନ କରିଥିଲେ ।

ଅନ୍ୟ ଗୋଟିଏ ଘଟଣାରୁ କବି ଜଗନ୍ନାଥ ଦାସ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ବୋଲି ଜଣାଯାଏ । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଭକ୍ତରୂପେ କବି ଜଗନ୍ନାଥ ଦାସ ବହୁ ଅଲୌକିକ

ମହିମାର ଅଧିକାରୀ ଥିଲେ । ଗଜପତି ମହାରାଜା ପ୍ରତାପରୁଦ୍ର ଦେବଙ୍କ ସମୟରେ ଦାସେ ଆପଣେ ପୁରାଣ ପଣ୍ଡା ରୂପେ ପ୍ରଭୁ ଜଗନ୍ନାଥଙ୍କ ସେବା କରୁଥିଲେ । ଏକଦା ଦାକ୍ଷିଣାତ୍ୟର ଜଣେ ରାଜା ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଖରେ ଏକ ଦୁର୍ଲ୍ଲଭ ଚନ୍ଦନ ଲାଗି କରିବାପାଇଁ ଗଜପତିଙ୍କୁ ଦେଇଥିଲେ । କୌଣସି ସେବାୟତଙ୍କୁ ବିଶ୍ୱାସ ନକରି ରାଜା କବି ଜଗନ୍ନାଥ ଦାସଙ୍କୁ ଚନ୍ଦନଟି ଦେଇଥିଲେ । ଏହି କାର୍ଯ୍ୟ ପାଇଁ ପଣ୍ଡିତେ ରାଜ ନଅରରୁ ରାଜାଙ୍କଠାରୁ ଆଣି ନିଜ ଅଣ୍ଟାରେ ମାରି ମନ୍ଦିରକୁ ଯାଇଥିଲେ । ତାହାକୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଶରୀରରେ ଲାଗି କରିବାପାଇଁ ମନେ ପଡ଼ିନଥିଲା । ରାତିରେ ପହଡ଼ ପଡ଼ିବା ପରେ ସେ ରହୁଥିବା ସାତଲହଡ଼ି ମଠକୁ ଯାଇଥିଲେ । ଲୁଗା ଫିଟାଉ ଫିଟାଉ ସେହି ଚନ୍ଦନଟି ଦାସେ ଅପାଣଙ୍କ ଅଣ୍ଟାରୁ ତଳେ ପଡ଼ିଯାଇଥିଲା । ସେଠାରେ ସେ ଆସନ୍ତାକାଲି ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦେହରେ ଲଗାଇବେ ବୋଲି ଭାବି ସେ ଖାଇ ଶୋଇ ପଡ଼ିଲେ । ଚନ୍ଦନଟି ଜଗନ୍ନାଥ ଦାସ ଠାକୁରଙ୍କ ମୁଣ୍ଡରେ ଲଗାଇଲେ କି ନାହିଁ, ତାହା ଜାଣିବାପାଇଁ ଏକ ପ୍ରହରୀକୁ (ଛଦ୍ମବେଶ) ଦିନସାରା ଜଗାଇଥିଲେ । ସେହି ପ୍ରହରୀ ପହଡ଼ ପଡ଼ିବାପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଦାସେ ଆପଣଙ୍କୁ ଜଗି ରହିଥିଲେ । ପହଡ଼ ପଡ଼ିବା ପରେ ପ୍ରହରୀଟି ଗଜପତିଙ୍କୁ କହିଥିଲେ ଯେ, ଭକ୍ତ ଜଗନ୍ନାଥ ଦାସ ଚନ୍ଦନ ଲେପନ କରିନାହାନ୍ତି ।

ପ୍ରହରୀଠାରୁ ଶୁଣି ରାଜା ଭକ୍ତ ଜଗନ୍ନାଥଙ୍କ ଉପରେ ରାଗାନ୍ୱିତ ହୋଇ ତାଙ୍କୁ ଡକାଇ ପଠାଇଲେ । ଜଗନ୍ନାଥ ଦାସ ଗଭୀର ନିଦରେ ଶୋଇଥିବା ସମୟରେ ସ୍ୱୟଂ ପ୍ରଭୁ ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ ମାଧ୍ୟମରେ କହିଥିଲେ, ହେ ବତ୍ସ ! ଗଜପତି ଦେଇଥିବା ଚନ୍ଦନ ମୋ ଦେହରେ ଲେପନ କଲନାହିଁ କାହିଁକି ? ବର୍ତ୍ତମାନ ମୁଁ ଆସିଅଛି ଲେପନ କରିଦିଅ । ତତ୍‌କ୍ଷଣାତ୍ ଜଗନ୍ନାଥ ଦାସ ଶେଯ ତ୍ୟାଗ କରି, ମସଲା ବଟା ଶିଳରେ ଚନ୍ଦନଟିକୁ ମଖନ କରି ବସିଲେ । ଏହି ସମୟରେ ପ୍ରହରୀ ଭକ୍ତ ଜଗନ୍ନାଥ ଦାସଙ୍କୁ ମହାରାଜା ଡାକୁଛନ୍ତି ବୋଲି କହିଥିଲେ । ତତ୍‌ସଙ୍ଗେ ସଙ୍ଗେ ଜଗନ୍ନାଥ ଦାସ ଚନ୍ଦନକୁ ମଠଘରର କାନ୍ଥରେ ଲେପନ କରି ଦେଲେ । ପ୍ରକାଶ ଥାଉକି ପ୍ରହରୀ ଜାଣିଲା ଚନ୍ଦନ କାନ୍ଥରେ ଲେପନ ହେଲା । କିନ୍ତୁ ପ୍ରକୃତରେ ସେହି ଚନ୍ଦନ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦେହରେ ଲେପନ ହେଲା । ପ୍ରହରୀଟି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦେଖିବାର ଅବକାଶ ନଥିଲା । ପ୍ରଭୁ ଶ୍ରୀଜଗନ୍ନାଥ ଚନ୍ଦନ ଲେପନ ପରେ ଶ୍ରୀମନ୍ଦିରକୁ ବିଜେ କରିଥିଲେ । ତତ୍‌ପରେ ସେ ଦୁଇଜଣ ରାଜାଙ୍କ ନଅରକୁ ଆସିଥିଲେ । ରାଜାଙ୍କ ସମ୍ମୁଖରେ ପ୍ରହରୀ କହିଲେ 'ପଣ୍ଡିତେ ପ୍ରଭୁଙ୍କ ମୁଖ ପରିବର୍ତ୍ତେ ମଠ କାନ୍ଥରେ ଚନ୍ଦନ ଲେପନ କଲେ' । କିନ୍ତୁ ପଣ୍ଡିତେ କହିଲେ ମୁଁ ସ୍ୱୟଂ ପରମେଶ୍ୱର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଶରୀରରେ ସେହି ଦୁର୍ଲ୍ଲଭ ଚନ୍ଦନ ଲେପନ କରିଅଛି । ଦୁଇଜଣଙ୍କର କଥା ଶୁଣି ଗଜପତି ମହାରାଜା ଦ୍ୱନ୍ଦ୍ୱରେ ପଡ଼ିଲେ । କାରଣ କାହା କଥାକୁ ବିଶ୍ୱାସ କରିବେ । କଥାଟି ଅମୀମାଂସିତ ହୋଇ ରହିଲା । ବହୁ ବିଚାର ବିମର୍ଶ କରି ରାଜା ଏହି ସିଦ୍ଧାନ୍ତରେ

ଉପନୀତ ହେଲେ ଯେ, ସକାଳ ହେଲେ ସେ ନିଜେ ଶ୍ରୀମନ୍ଦିର ଯାଇ ଦେଖିବେ ଶ୍ରୀପ୍ରଭୁଙ୍କ ଶରୀରରେ ଚନ୍ଦନ ଲେପନ ଲାଗିଛି କି ନାହିଁ ।

ଏହି କଥା ତା'ପରଦିନ ସକାଳୁ କାହାକୁ ଅଛପା ରହିଲା ନାହିଁ । ଯାହାକି ସମସ୍ତ ସେବାୟତ ଓ ମଠର ମହନ୍ତମାନେ ପହଡ଼ ଫିଟିବା ପୂର୍ବରୁ ଶ୍ରୀମନ୍ଦିରରେ ଉପସ୍ଥିତ ହୋଇଗଲେ । ମହାରାଜାଙ୍କ ସହିତ ପ୍ରହରୀ ଓ ଭକ୍ତ ଜଗନ୍ନାଥ ଦାସ ଶ୍ରୀମନ୍ଦିରରେ ଉପସ୍ଥିତ ହୋଇଗଲେ । ପହଡ଼ ଫିଟୁ ଫିଟୁ ଆଗ ରତ୍ନସିଂହାସନ ଦୁର୍ଲ୍ଲଭ ଚନ୍ଦନର ବାସନାରେ ମହକି ଉଠୁଥାଏ । ଶ୍ରୀ ପ୍ରଭୁ ଜଗନ୍ନାଥଙ୍କ ସମ୍ପୂର୍ଣ୍ଣ ଶରୀରଟି ଚନ୍ଦନରେ ଲେପନ ହେବାର ଦୃଶ୍ୟ ଦେଖି ମହାରାଜା ଭକ୍ତ ଜଗନ୍ନାଥଙ୍କ କଥାକୁ ବିଶ୍ୱାସ କରିଥିଲେ । ସେ ଭକ୍ତ ଜଗନ୍ନାଥଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଜଣେ ପରମ ଭକ୍ତର ଆଖ୍ୟା ଦେଇ ତାଙ୍କ ମୁଣ୍ଡରେ ଏକ ଶିରପା ବାନ୍ଧି ଦେଇଥିଲେ । ଆଉ ମଧ୍ୟ ସାତଲହଡ଼ି ମଠର 'ସାଆନ୍ତ' ଆଖ୍ୟା ପ୍ରଦାନ କରିଥିଲେ । ଏଥିରୁ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଥିବା ଗୂଢ଼ ରହସ୍ୟ ଅନୁମେୟ ।

ଅନ୍ୟ ଗୋଟିଏ ଜନଶ୍ରୁତିରୁ ଭକ୍ତ ଜଗନ୍ନାଥଙ୍କର ଭକ୍ତିର ମହତ୍ୱ ଜଣାଯାଏ । ପ୍ରକାଶ ଥାଉକି ତତ୍କାଳୀନ ବ୍ରହ୍ମଗିରି ବ୍ଲକ୍ ଅନ୍ତର୍ଗତ କାଣ୍ଡଗୋଦା ନାମକ ଏକ ଗ୍ରାମରେ ମନେଇ ସାହୁ ନାମକ ଏକ ଧନୀ ସାହୁକାର ବାସ କରୁଥିଲେ । ସେ ଥିଲେ ପ୍ରଭୁ ଶ୍ରୀଜଗନ୍ନାଥ ପ୍ରେମୀ, ଜ୍ଞାନୀ ଓ ଗୁଣୀ ପ୍ରକୃତିର ଲୋକ । ଜଗନ୍ନାଥ ଦାସଙ୍କ ସହିତ ତାଙ୍କର ବହୁଦିନ ତଳୁ ବନ୍ଧୁତ୍ୱ ଥିଲା । ପରସ୍ପର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଆଲୋଚନା ଆରମ୍ଭ କଲେ, ନିଜ ନିଜର ଖାଦ୍ୟପେୟ ଭୁଲି ଯାଆନ୍ତି ଓ ରାତି ପାହିଗଲେ ମଧ୍ୟ ଜାଣିପାରନ୍ତି ନାହିଁ । ଏକଦା ଦାସେ ଆପଣେ ମନେଇ ସାହୁଙ୍କ ଘରକୁ ଯାଇଥିଲେ । ମନେଇ ସାହୁ ଘରେ ନଥିଲେ । ସେ କୃଷିକ୍ଷେତ୍ରକୁ ଯାଇଥିଲେ । ତେଣୁ ମନେଇ ସାହୁ କୃଷିକ୍ଷେତ୍ରରୁ ଫେରିବା ପର୍ଯ୍ୟନ୍ତ ପଣ୍ଡିତେ ଆପଣେ ତାଙ୍କ ଘରେ ତାଙ୍କୁ ଅପେକ୍ଷା କରିଥିଲେ । ମନେଇ ସାହୁ ମଧ୍ୟାହ୍ନ ସମୟ ଗଡ଼ିଯିବାପରେ କୃଷିକ୍ଷେତ୍ରରୁ ଆସିଥିଲେ । ସେତେବେଳେ ବର୍ଷାଋତୁ । ମନେଇ ସାହୁ ବିଲରୁ କିଛି କଙ୍କଡ଼ା ତାଙ୍କ ଗାମୁଛାରେ ବାନ୍ଧି ଘରକୁ ଆଣିଥିଲେ । ପଣ୍ଡିତଙ୍କୁ ମଧ୍ୟାହ୍ନ ଭୋଜନ କରିବାକୁ କହିଥିଲେ । ଅନ୍ନ ଓ ତରକାରି ସହ କଙ୍କଡ଼ା ପୋଡ଼ା ଚଟଣି ଖାଇବା ଅବସରରେ ଦାସେ ଆପଣଙ୍କୁ କଙ୍କଡ଼ାପୋଡ଼ା ଚଟଣି ନ ଦେବାକୁ ବାରଣ କରିଥିଲେ । କାରଣ ସେ ବ୍ରାହ୍ମଣ ଥିଲେ । କଙ୍କଡ଼ାପୋଡ଼ା ଚଟଣି ଖାଇଲେ ପଇତା ମାରା ହୋଇଯିବ । କିନ୍ତୁ ଦାସେ ଆପଣେ ଅନାବିଳ ମନରେ କଙ୍କଡ଼ା ପୋଡ଼ା ଚଟଣି ଖାଇବାକୁ କହି, ତାଙ୍କଦ୍ୱାରା ଲିଖିତ ଭାଗବତରୁ ଏକ ପଦ ବୋଲିଥିଲେ । ତାହାଥିଲା-

'ଆହାରେ ଭଲ ମନ୍ଦ ନାହିଁ, ଯେ ସ୍ଥାନେ ଯେମନ୍ତ ମିଳଇ ।'

ଦୁଇଜଣ ଏକାଠି ବସି ଖାଇବା ସମୟରେ ଏକ ଅଲୌକିକ ଘଟଣା ଘଟିଥିଲା । ତାହାଥିଲା ଦୁଇଜଣଙ୍କର ଖାଦ୍ୟ ମହାପ୍ରସାଦରେ ପରିଣତ ହୋଇଯାଇଥିଲା । ଏଥିରୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରତି ଜଗନ୍ନାଥ ଦାସଙ୍କର ଭକ୍ତିର ପରିଚୟ ମିଳିଥିଲା । ଯାହାକୁ ଆଜି ପର୍ଯ୍ୟନ୍ତ ସେହି ଅଞ୍ଚଳରେ ଲୋକମାନେ କହି ବୁଲୁଛନ୍ତି ।

– ପଞ୍ଚସଖା ଯୁଗ ତଥା ଜଗନ୍ନାଥ ଦାସଙ୍କ ସମୟଟି ଥିଲା ଏକ ସୁବର୍ଣ୍ଣ ଯୁଗ । କାରଣ ଏହି ସମୟରେ ଅର୍ଥାତ୍ ୧୫୧୦ ଖ୍ରୀଷ୍ଟାବ୍ଦରେ ବୈଷ୍ଣବ ଧର୍ମର ପ୍ରଚାରକ ଶ୍ରୀଚୈତନ୍ୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ଶ୍ରୀକ୍ଷେତ୍ର ଆସିଥିଲେ । ଏହି ସମୟରେ ଜଗନ୍ନାଥ ଦାସ ଶ୍ରୀମନ୍ଦିରରେ ଥିବା ଏକ ବଟବୃକ୍ଷ ମୂଳେ ବସି ଭାଗବତ ରଚନା କରୁଥିବାର ଦେଖି ତାଙ୍କୁ ଶ୍ରୀଚୈତନ୍ୟ କିଛି ଭକ୍ତିତତ୍ତ୍ୱ ସମ୍ପର୍କରେ କଠିନ ପ୍ରଶ୍ନ ପଚାରିଥିଲେ । ଦାସଙ୍କଠାରୁ ଏପରିଭାବେ ସନ୍ତୋଷଜନକ ଉତ୍ତର ପାଇଥିଲେ ଯେ, ସେ ତାଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇଯାଇଥିଲେ । ଏପରିକି ଭାବବିହ୍ୱଳିତ ଶ୍ରୀଚୈତନ୍ୟ ତାଙ୍କ ମୁଣ୍ଡରେ ପିନ୍ଧିଥିବା ମୁକୁଟଟିକୁ ଜଗନ୍ନାଥ ଦାସଙ୍କ ମୁଣ୍ଡରେ ପିନ୍ଧାଇ ଦେଇଥିଲେ । ତାଙ୍କୁ "ଅତିବଡ଼ୀ" ଉପାଧିରେ ଭୂଷିତ କରାଇଥିଲେ ।

କବି ଶ୍ରୀଜଗନ୍ନାଥ ଦାସ ଭକ୍ତି ରସାତ୍ମକ ଗ୍ରନ୍ଥ ଭାଗବତ ସମେତ ଶ୍ରୀନାମ ଚନ୍ଦ୍ରିକା, ଅନାମୟ କୁଣ୍ଡଳୀ, ଦୂତୀବୋଧ, ତୁଳାଭିଣା, ପ୍ରମୋଦ ଚିନ୍ତାମଣୀ, ପଦ୍ମପାଦ ସୁଧାନିଧି, ଶୂନ୍ୟଭାଗବତ, କଳିମାଳିକା, ଭକ୍ତିଚନ୍ଦ୍ରିକା, ପଞ୍ଚଭୂତ, ନିତ୍ୟ ନୀଳାଦ୍ରି ବିଳାସ, ରତ୍ନପାଦୁକା, ବ୍ରହ୍ମଗୀତା, ପଦ୍ମକଳ୍ପ ଟୀକା ଇତ୍ୟାଦି ପ୍ରାୟ ୫୦ରୁ ଊର୍ଦ୍ଧ୍ୱ ଗ୍ରନ୍ଥ ରଚନା କରିଛନ୍ତି । ଏହି ପୁସ୍ତକ ବିଭିନ୍ନ ଯୁଗରେ ଦେବଦେବୀଙ୍କର ଆବିର୍ଭାବ ଓ ସେମାନଙ୍କର ଲୀଳା କ୍ରୀଡ଼ାଠାରୁ ଅନ୍ତର୍ଦ୍ଧାନ ପର୍ଯ୍ୟନ୍ତ ସମସ୍ତ ଘଟଣା ଭକ୍ତି ଓ ଭାବରସର ମିଶ୍ରଣରେ ଲେଖିଛନ୍ତି, ଯାହାକି ସମାଜର ବିଭିନ୍ନ କ୍ଷେତ୍ରରେ ସେହି ପୁସ୍ତକଗୁଡ଼ିକର ଉପଯୋଗିତା ଅତ୍ୟନ୍ତ ମହାନ ଓ ଗରିୟସୀ ଅଟେ । ଏହିସବୁ ମୂଳରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆଧାର ବୋଲି ବର୍ଣ୍ଣନା କରିଛନ୍ତି । ଏହା ଫଳରେ ଓଡ଼ିଶା ମାଟିର ଗର୍ବ ଓ ଗୌରବ ତଥା ସ୍ୱାଭିମାନକୁ ବିଶ୍ୱ ଦରବାରରେ ପ୍ରସାର ଓ ପ୍ରଚାର କରାଇବା ସଙ୍ଗେ ସଙ୍ଗେ ନିଜର ଅସାଧାରଣ ବ୍ୟକ୍ତିତ୍ୱ ବଳରେ ଭକ୍ତି, ପ୍ରେମ, ଭାବମିଶ୍ରିତ କବି ରୂପେ ନିଜର ପରିଚୟ ସୃଷ୍ଟି କରିପାରିଛନ୍ତି । ତାଙ୍କଦ୍ୱାରା ଲିଖିତ ଓଡ଼ିଆ ଭାଗବତ ଓ ତାଙ୍କଦ୍ୱାରା ଗଠିତ ଭାଗବତଟୁଙ୍ଗୀ ଓଡ଼ିଶାର କୋଣଅନୁକୋଣରେ ପ୍ରସାର ଓ ପ୍ରଚାର ହୋଇପାରିଛି । ଆଉ ମଧ୍ୟ ଭାଗବତ ଗ୍ରନ୍ଥ ଠାକୁରଙ୍କ ପରି ଘରେ ଘରେ ପୂଜା ପାଉଅଛି । ସେ ତାଙ୍କ ସାଧନା କୁଟୀର ସାତଲହଡ଼ି ମଠରେ ୬୦ବର୍ଷର ଜୀବନକାଳ ଅତିବାହିତ କରି ମାଘମାସ ଶୁକ୍ଳପକ୍ଷ ୭ମୀ ତିଥିରେ

ଶ୍ରୀହରିନାମ କୀର୍ତ୍ତନ ଶ୍ରବଣ କରୁକରୁ ପାର୍ଥୀବ ଶରୀର ତ୍ୟାଗ କରି ନିତ୍ୟଗୋଲକ ଧାମ ପ୍ରାପ୍ତ ହୋଇଥିଲେ । ଆଜି ସେହି ମହାନ ପବିତ୍ରଗ୍ରନ୍ଥ ସମଗ୍ର ମାନବ ଜାତିର ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ଏକ ଉପାଦେୟ ଶାସ୍ତ୍ରରୂପେ ବ୍ୟବହାର ହେଉଅଛି । ଏହା ସତ୍ୟ ଯେ ଯେଉଁ ବ୍ୟକ୍ତି ତା'ର ଜୀବନ ସଂଗ୍ରାମରେ ଏହି ମହାନ ଧାର୍ମିକ ଶାସ୍ତ୍ରକୁ ଆଦରି ନେଇଥାଏ, ସେହି ବ୍ୟକ୍ତିର ଭଗବତ୍ ପ୍ରାପ୍ତି ହୋଇଥାଏ । ଏହି ପରିପ୍ରେକ୍ଷୀରେ ଭକ୍ତ ଜଗନ୍ନାଥ ଦାସ ତାଙ୍କର ଜନ୍ମଗତ ବୃତ୍ତି ପରି ଭକ୍ତିରସାତ୍ମକ କାବ୍ୟମାନ ଲେଖି ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ହୋଇପାରିଛନ୍ତି, ଏଥିରେ ଦ୍ୱିମତ ନାହିଁ ।

## ଯବନ ଭକ୍ତ ସାଲବେଗ



ଯବନ ଔରସରୁ ଜାତ ସାଲବେଗ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । କିନ୍ତୁ ତାଙ୍କର ମାତା ଥିଲେ ହିନ୍ଦୁ ବ୍ରାହ୍ମଣ ପରିବାରର ଧର୍ମପରାୟଣ ମହିଳା । ସାଲବେଗ ୧୫୯୨-୧୫୯୩ ଖ୍ରୀଷ୍ଟାବ୍ଦରେ କଟକ ମୁକାମରେ ଜନ୍ମଗ୍ରହଣ କରିଥିଲେ । ସାଲବେଗଙ୍କ ପିତା ଲାଲବେଗ ଜଣେ ଦୁର୍ଦ୍ଧର୍ଷ ମୋଗଲ ଯୋଦ୍ଧା ଥିଲେ । ଲାଲବେଗ କଟକ ଛାଡ଼ି ଚାଲିଯିବା ପରେ ପୁତ୍ର ସାଲବେଗ କଟକରେ ମାତାଙ୍କ ପାଖରେ ରହି ଅତି ଯତ୍ନରେ ଲାଳନପାଳନ ହୋଇଥିଲେ । ମାତା ହିନ୍ଦୁ ଧର୍ମର ଜଣେ ଉପାସକ ଥିଲେ । ମାତା ହିନ୍ଦୁଧର୍ମର ଦେବଦେବୀଙ୍କୁ ପୂଜା କରିବା ସହ ପୁତ୍ର ସାଲବେଗଙ୍କୁ ହିନ୍ଦୁ ଧର୍ମପ୍ରତି ଆକୃଷ୍ଟ କରାଇଥିଲେ । ହିନ୍ଦୁଧର୍ମର ପୂଜକମାନେ ମାତା ଓ ପୁତ୍ରଙ୍କୁ କୌଣସି ମନ୍ଦିରକୁ ଯିବାପାଇଁ ମନା କରୁଥିଲେ । ଏପରିକି ବହୁବାର ସେମାନଙ୍କୁ ମନ୍ଦିର ଦ୍ୱାରଦେଶରେ ଅପମାନ ଓ ଭର୍ତ୍ସନା କରୁଥିଲେ । ତଥାପି ମାତା ଓ ପୁତ୍ର ଯେତେ ତାଡ଼ନା ଖାଇଲେ ମଧ୍ୟ ଶ୍ରୀକୃଷ୍ଣଙ୍କୁ କାୟ ମନବାକ୍ୟରେ ଆରାଧନା କରୁଥିଲେ । ଗୋଟିଏ ଘଟଣାରୁ ସାଲବେଗ ହିନ୍ଦୁଧର୍ମର ଆରାଧ୍ୟ ଦେବତା ଶ୍ରୀକୃଷ୍ଣଙ୍କ ପ୍ରତ୍ୟକ୍ଷ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । ତେଣୁ ସାଲବେଗଙ୍କର ପ୍ରଭୁ ଶ୍ରୀକୃଷ୍ଣଙ୍କ ପ୍ରତି ଅଗାଧ ଆତ୍ମବିଶ୍ୱାସ ଭାବ ସୃଷ୍ଟି ହୋଇଥିଲା । ଏକଦା ସାଲବେଗ ଯୁଦ୍ଧକ୍ଷେତ୍ରରେ ଶତ୍ରୁପକ୍ଷଙ୍କ ଅସ୍ତ୍ରାଘାତରେ ରକ୍ତାକ୍ତ ହୋଇ ଘରେ ପଡ଼ିଲେ । କୌଣସି ଔଷଧ କାମ କଲା ନାହିଁ ।

ଶେଷରେ ମୃତ୍ୟୁ ସହିତ ଲଢ଼େଇ କରି ପରାସ୍ତ ହେବା ଅବସ୍ଥାରେ ପ୍ରଭୁ ଶ୍ରୀକୃଷ୍ଣ ତାଙ୍କୁ ଦର୍ଶନ ଦେଇ ରୋଗମୁକ୍ତ କରିଥିଲେ । ଫଳରେ ତାଙ୍କର ପ୍ରଭୁ ଶ୍ରୀକୃଷ୍ଣଙ୍କ ପ୍ରତି ଅଧିକ ବିଶ୍ୱାସ ଭାବ ଜାଗ୍ରତ ହୋଇଥିଲା । ତତ୍‌ପରେ ସେ ତାଙ୍କର ସମସ୍ତ କାର୍ଯ୍ୟ ଛାଡ଼ି ଦିନରାତି କେବଳ ଶ୍ରୀକୃଷ୍ଣଙ୍କ ନାମକୁ ଜପ କରିଥିଲେ । ପଠାଣ ହୋଇମଧ ସେ ହିନ୍ଦୁଦେବତା ପ୍ରଭୁ ଶ୍ରୀକୃଷ୍ଣଙ୍କୁ ନିଜ ହୃଦୟରେ ସ୍ଥାନ ଦେଇ ଆଉଥରେ ଦର୍ଶନ କରିବାକୁ ତାଙ୍କର ଆପ୍ରାଣ ପ୍ରଚେଷ୍ଟା ଜାରି ରଖିଥିଲେ । ଶେଷରେ ମାତାଙ୍କର ଅନୁମତି ନେଇ ସନ୍ନ୍ୟାସ ବ୍ରତ ଗ୍ରହଣ କରିଥିଲେ ।

ପ୍ରଭୁ ଶ୍ରୀକୃଷ୍ଣଙ୍କ ଆଶୀର୍ବାଦ ଫଳରେ ତାଙ୍କ ମନରୁ ଆପେ ଆପେ ଅନେକ ସ୍ତୁତି, ଭଜନ, ଜଣାଣ, ନିଃସୃତ ହୋଇଥିଲା । ଇତ୍ୟବସରରେ ସେ ଶୁଣିବାକୁ ପାଇଲେ ଶ୍ରୀକ୍ଷେତ୍ରରେ ରତ୍ନସିଂହାସନରେ ବିରାଜିତ ପ୍ରଭୁ ଶ୍ରୀଜଗନ୍ନାଥ ସକଳ ଶକ୍ତିର ଆଧାର ତଥା ସର୍ବ ଦେବମୟ । ମାତାଙ୍କଠାରୁ ସେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ମାହାତ୍ମ୍ୟ ଓ ମହିମା ସମ୍ପର୍କରେ ଶୁଣି ତାଙ୍କୁ ଦର୍ଶନ କରିବାପାଇଁ ଭାବବିହ୍ୱଳ ହୋଇଯାଇଥିଲେ । ସେହିଦିନ ଠାରୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ବ୍ୟତୀତ ତାଙ୍କ ମନରେ ଅନ୍ୟ କୌଣସି ଭାବନା ପଶିଲା ନାହିଁ । ଏପରିକି ଖାଇବା, ଶୋଇବା ମଧ ଭୁଲିଗଲେ । ଦିନେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଯିବା ଅବସରରେ ତାଙ୍କୁ ପଣ୍ଡାମାନେ ସିଂହଦ୍ୱାର ଠାରେ ପ୍ରବେଶ ପାଇଁ ବିରୋଧ କଲେ । ଏଥି ସହିତ ତାଙ୍କୁ ଅପାମନିତ ଓ ଭର୍ତ୍ସନା କରିଥିଲେ । ଗଭୀର ଦୁଃଖ ଓ ବିଷାଦରେ ଫେରି ଆସିଲେ ସିନା କିନ୍ତୁ ମନରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାର ଉତ୍କଣ୍ଠା ଦ୍ୱିଗୁଣିତ ହୋଇଥିଲା । ଭକ୍ତର ଭାବରେ ବନ୍ଧା ପ୍ରଭୁ ଶ୍ରୀଜଗନ୍ନାଥ ସାଲବେଗଙ୍କୁ ଦର୍ଶନ ଦେବାପାଇଁ ଭାବବିହ୍ୱଳ ହୋଇଥିଲେ । ଭକ୍ତ ଓ ଭଗବାନ ତଥା ସାଲବେଗ ଓ ପ୍ରଭୁ ଶ୍ରୀଜଗନ୍ନାଥ ହୃଦୟର କଥା ମନ ଭିତରେ ରହିଥିଲା ।

ଏକଦା ରଥଯାତ୍ରା ସମୟରେ ସାଲବେଗ ବୃନ୍ଦାବନରେ ଥିଲେ । ରଥଯାତ୍ରାରେ ସେ ବଡ଼ଦାଣ୍ଡରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ଇଚ୍ଛା ପ୍ରକଟ କରି ତାଙ୍କୁ ପ୍ରାର୍ଥନା କରିଥିଲେ । ଏତେ ବାଟ ଆସି କିପରି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ବଡ଼ଦାଣ୍ଡରେ ଦର୍ଶନ କରିବେ, ତାହା ଥିଲା ଅସମ୍ଭବ । କିନ୍ତୁ ପ୍ରଭୁ ଶ୍ରୀଜଗନ୍ନାଥ ତାଙ୍କ ଦୁଃଖ ଶୁଣିଥିଲେ । ଏହି କିମ୍ବଦନ୍ତୀଟି ଆଧ୍ୟାତ୍ମିକ ଇତିହାସରେ ଲିପିବଦ୍ଧ ହୋଇଅଛି । ଯାହାକି ଆଜିବି ଲୋକମାନେ କହି ବୁଲୁଛନ୍ତି । ବାହୁଡ଼ା ଯାତ୍ରାରେ ନନ୍ଦିଘୋଷ ରଥଟି ବଡ଼ଦାଣ୍ଡରେ ଆଗକୁ ନ'ଯାଇ ରହିଗଲା । ଏହା ଦେଖି ମହାରାଜା ଓ ସେବକମାନଙ୍କ ମଧ୍ୟରେ ଭାଳେଣି ପଡ଼ିଗଲା । କିଛି ସମୟ ଅପେକ୍ଷା କରି ମହାରାଜ ବ୍ୟସ୍ତ ବିବ୍ରତ ହୋଇ ଧ୍ୟାନରେ ବସିଲେ । ପ୍ରଭୁ ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ ମାଧ୍ୟମରେ ମହାରାଜାଙ୍କୁ ଜଣାଇଲେ, ମୋର ପରମ ଭକ୍ତ ସାଲବେଗ ବୃନ୍ଦାବନରୁ ଆସିବା ବିଳମ୍ବ ହେଉଛି । ତେଣୁ ମୁଁ ଏଠାରେ ତାଙ୍କୁ ଦର୍ଶନ ଦେବା ପାଇଁ ଅପେକ୍ଷା କରିଛି । ସେ ଆସି ମତେ ଦର୍ଶନ କଲେ ମୋର ରଥ ଆଗକୁ ଚାଲିବ ।

କ୍ଷଣକ ମଧ୍ୟରେ ଏହି ସମ୍ବାଦ ଚାରିଆଡ଼େ ପ୍ରଚାରିତ ହୋଇଗଲା । ସେଠାରେ ଥିବା ସମସ୍ତ ସାଧୁ, ସନ୍ଥ, ବାବାଜି, ବୈଷ୍ଣବ, ଶ୍ରଦ୍ଧାଳୁ ଭକ୍ତ ଓ ସେବାୟତମାନେ ଆଶ୍ଚର୍ଯ୍ୟ ହୋଇ ଅପେକ୍ଷା କରି ରହିଲେ । ଏହାର କିଛି ସମୟପରେ ସାଲବେଗ ଉପସ୍ଥିତ ହୋଇ ଆତ୍ମହରା ହୃଦୟ ଓ ପବିତ୍ର ଚକ୍ଷୁ ଦୁଇଟିରେ ଦର୍ଶନ କରି ଭାବବିହ୍ୱଳରେ କାନ୍ଦି ପକାଇଲେ । ତତ୍‌ପରେ ରଥଟି ଘର୍ଘର ନାଦ କରି ଆଗକୁ ଗଡ଼ି ଚାଲିଲା । ଏହା ଦେଖି ସମସ୍ତେ ସାଲବେଗଙ୍କୁ ଧନ୍ୟବାଦ ଦେବା ସହ ଜୟଗାନ କରିଥିଲେ । ଯେଉଁସ୍ଥାନରେ ସେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥିଲେ, ସେହି ସ୍ଥାନରେ ସେ ଆଜୀବନ ଆସନ ପକାଇ ବସି ତାଙ୍କର ଜଣାଣ, ଭଜନ, କରିଥିଲେ । ତାଙ୍କର ବିଷ୍ଣୁପ୍ରାପ୍ତି ପରେ ତାଙ୍କୁ ସେଠାରେ ସମାଧିସ୍ଥ କରାଯାଇଥିଲା ।

ସାଲବେଗ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଥିଲେ, ତାହା ନୁହେଁ, ସେ ଜଣେ ଭକ୍ତି ରସାତ୍ମକ କବି ଥିଲେ । ଯାହାକି ଓଡ଼ିଶା ସାହିତ୍ୟ ଓ ଶ୍ରୀଜଗନ୍ନାଥ ସଂସ୍କୃତିକୁ ଋଦ୍ଧିମନ୍ତ କରିପାରିଛି । ଆଜି ବି ସେହି ସବୁ ଗୀତ ଓଡ଼ିଶାର ଘରେ ଘରେ ବୋଲାଯାଉଅଛି । ଏହି ଭଜନରୁ କିଛି ପଦ ନିମ୍ନରେ ପ୍ରଦତ୍ତ ହୋଇଅଛି ।

"ଆହେ ! ନୀଳଶୈଳ ପ୍ରବଳ ମତ୍ତବାରଣ
ମୋ ଆରତ ନଳିନୀ ବନକୁ କର ଦଳନ ।"

X X X

"ବାଇଶି ପାହାଚ ଗଲି ସୁଖେ,
କୈବଲ୍ୟ ପସରା ବେନି ପାଖେ
ଚଣ୍ଡାଳୁ, ବ୍ରାହ୍ମଣ, ଶୁଦ୍ର ପରିଯନ୍ତେ,
କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ ।"

ଭକ୍ତିଭାବକୁ ନେଇ ସେ ଏହିପରି ଅନେକ ଭଜନ ଜଣାଣ ଲେଖି ଓଡ଼ିଆ ଭାଷା ଓ ସାହିତ୍ୟକୁ ଋଦ୍ଧିମନ୍ତ କରିପାରିଛନ୍ତି । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଭକ୍ତମାନଙ୍କ ମଧ୍ୟରେ ଜାତି, ଧର୍ମ, ବର୍ଣ୍ଣ, ସାନ, ବଡ଼, ଧନୀ ଓ ଗରିବ ଇତ୍ୟାଦିର ଭେଦଭାବ ନାହିଁ । ଯାହାର ପ୍ରମାଣ ଯବନ ଭକ୍ତ ସାଲବେଗ ।

# ଭକ୍ତ ଦାସିଆ ବାଉରି



ଯାହାର ବିଶ୍ୱାସ ଯେତେ ତାହାର ଭକ୍ତି ସେତେ । କଥାଟି ଶତ ପ୍ରତିଶତ ଭକ୍ତ ଦାସିଆ ବାଉରି ପାଇଁ ପ୍ରଯୁଜ୍ୟ । ଓଡ଼ିଶାରେ ଷୋଡ଼ଶ ଶତାବ୍ଦୀଟି ଥିଲା ଭକ୍ତି ଆନ୍ଦୋଳନର ସୁବର୍ଣ୍ଣ ଯୁଗ । ଏହି ସମୟରେ ଓଡ଼ିଶାରେ ଜନ୍ମ ହୋଇଥିଲେ ବହୁ ସିଦ୍ଧ ସାଧକ । ସେହିମାନଙ୍କ ମଧ୍ୟରେ ପୁରୀ ନିକଟସ୍ଥ ବାଲିଗାଁରେ ଏକ ଖଦାଳ (ବୁଣାକାର) ପରିବାରରେ ଜନ୍ମିତ ଦାସିଆ ବାଉରି ଅନ୍ୟତମ । ଏହି ଖଦାଳ ଜାତିଟି ସମାଜରେ ଶବର ଜାତି ପରି ନୀଚ ଭାବରେ ପରିଚିତ । କେବଳ ୪ଡିସିମିଲି ଜମି ଉପରେ ଗୋଟିଏ କୁଡ଼ିଆଘର, ସମେତ ଛୋଟ ପୋଖରୀଟିଏ ଓ ତୁଳସୀ ବନ ଥିଲା ତାଙ୍କର ଏକମାତ୍ର ସମ୍ବଳ । ପରିବାର କହିଲେ ସେ ଓ ତା'ର ସ୍ତ୍ରୀ ମାତ୍ର ଦୁଇଜଣ । ଲୁଗାବୁଣି ପେଟ ପୋଷିବା ତା'ର ଦୈନନ୍ଦିନୀ ବୃତ୍ତି । ଲୁଗାବୁଣି ଓ ତାହାକୁ ବିକ୍ରୟ କରି ଯାହା ପାଆନ୍ତି ସେ ଦୁଇପ୍ରାଣୀ ଚଳିଯାଆନ୍ତି । ନ'ହେଲେ ଉପବାସ ରୁହନ୍ତି ସିନା ଅନ୍ୟ କୌଣସି ଆୟ ପନ୍ଥା ତାଙ୍କର ନ'ଥିଲା । ଏହିପରି ସେ ସରଳ ଓ ନିଷ୍କପଟ ଜୀବନଯାପନ କରୁଥିଲେ । ଦୁଃଖ ଓ ସୁଖ କ'ଣ ସେ ଜାଣନ୍ତି ନାହିଁ । ଲୋଭ, ମାୟା, ଆସକ୍ତି, କ୍ରୋଧ ଇତ୍ୟାଦି ତାଙ୍କ ହୃଦୟକୁ କେବେହେଲେ ଛୁଇଁ ନ'ଥିଲା ।

ସେ ପ୍ରତିଦିନ ସନ୍ଧ୍ୟା ସମୟରେ ନିକଟରେ ଥିବା ପ୍ରହରାଜପୁର ବ୍ରାହ୍ମଣ ଶାସନରେ ଭାଗବତ, ରାମାୟଣ, ଶ୍ରୀଜଗନ୍ନାଥଙ୍କ ଭଜନ, ଜଣାଣ ଶୁଣୁଥିଲେ । ଏହାଛଡ଼ା ଆଖପାଖରେ ହେଉଥିବା ସଂକୀର୍ତ୍ତନ, ଭଜନ, ଯଜ୍ଞ, ପାଲା, ଦାସକାଠିଆ ଇତ୍ୟାଦି ଶୁଣୁଥିଲେ । ଦାସିଆ ମନଦେଇ ସବୁ ଶୁଣୁଥିଲେ ମଧ୍ୟ ସେ ବୁଝନ୍ତି କି ନାହିଁ, କିନ୍ତୁ ହରିନାମ ସାର ବୋଲି ଜାଣୁଥିଲେ । ଭଗବାନଙ୍କ ନାମ ଶୁଣି ଶୁଣି ତାଙ୍କର ଏକ ଅଭ୍ୟାସରେ ପଡ଼ିଗଲା । ସେ କେବଳ ଏତିକି ଜାଣିଥିଲେ ଯେ ମନଭିତରେ ଶ୍ରୀହରିଙ୍କୁ ଜପିଲେ ସେ ମୁକ୍ତି ପାଇବେ ଓ ତାଙ୍କ ଜୀବନଟି ସାର୍ଥକ ହେବ । କ୍ରମଶଃ ଦିନକୁ ଦିନ ଅଧିକ ସମୟ ଶ୍ରୀପ୍ରଭୁଙ୍କର ନାମ ଜପ କରିଥିଲେ । ଶ୍ରୀହରିଙ୍କ ପ୍ରେମରେ ଏପରି ପାଗଳ ହୋଇଗଲେ ଯେ, ଶୟନେ, ସ୍ୱପନେ, ଉଜାଗରେ ସେ ଶ୍ରୀହରିଙ୍କ ନାମକୁ ସ୍ମରଣ

କରୁଥିଲେ । ଶେଷରେ ଗୁରୁଦୀକ୍ଷା ଗ୍ରହଣ କରି ତିଳକ ଓ ମାଳା ଗ୍ରହଣ ପୂର୍ବକ ଗୃହୀ ବୈଷ୍ଣବ ଜୀବନକୁ ଶ୍ରେୟ କରିଥିଲେ ।

ଥରେ ଗ୍ରାମଲୋକଙ୍କ ସହିତ ପୁରୀ ରଥଯାତ୍ରା ଦେଖିବାକୁ ଯାଇଥିଲେ । ବଡ଼ଦାଣ୍ଡରେ ନନ୍ଦିଘୋଷ ରଥରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଅବସରରେ ତାଙ୍କ ଦୁଇଟି ଚକ୍ଷୁରୁ ଆନନ୍ଦାଶ୍ରୁ ବୋହି ଯିବାର ଦୃଶ୍ୟଦେଖି, ସେଠାରେ ଉପସ୍ଥିତ ଥିବା ଭକ୍ତ ସମାଜ ବିସ୍ମିତ ହୋଇଯାଇଥିଲେ । ଦର୍ଶନପରେ ସେ ଗ୍ରାମକୁ ଫେରିଲେ ସିନା କିନ୍ତୁ ତାଙ୍କ ମନ ଓ ଶରୀର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଖରେ ରହିଗଲା । ଘରେ ତାଙ୍କର ସ୍ତ୍ରୀ ଉଆ ଚାଉଳର ପେଜ ଜାଉ, ଯାହାକି ଏକ ନୂଆ ମାଟି ପଲମରେ ଥିଲା । ସେହି ଯାଉ ପଲମ ମଧ୍ୟ ଭାଗରେ ଶାଗ ଭଜା ଥିବା ଦେଖି ସେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲା ବୋଲି ଭାବି ମନକୁ ମନ ପାଗଳଙ୍କ ପରି ନାଚି ନାଚି ଗୁଣୁ ଗୁଣୁ ଶ୍ରୀହରି ନାମ ଗାଇବାକୁ ଲାଗିଲେ । ମାଟି ପଲମର ଜାଉ ଓ ତା'ଉପରେ ଥିବା କାଳିଆ ରଙ୍ଗର ଶାଗ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆକାର ବୋଲି ଭାବି ପୁନରାୟ ନାଚିବାକୁ ଲାଗିଲେ । ତା'ର ସ୍ତ୍ରୀ ଠାରୁ ଆରମ୍ଭ କରି ସାହି ପଡ଼ିଶା ଯେ ଯାହା ବୁଝାଇଲେ ସେ ନ'ଶୁଣି ପୂର୍ବପରି ଶ୍ରୀହରିଙ୍କ ନାମ ଧରି ନାଚ ଓ ଗୀତ କଲେ । ଏହିପରି ରାତିର ବିଳମ୍ବ ପ୍ରହର ପର୍ଯ୍ୟନ୍ତ ଲାଗି ରହିଲା । ଶେଷରେ ଜାଉ ହାଣ୍ଡିରୁ ଶାଗ କାଢ଼ି ଦେବା ପରେ ସେ ଖାଇଥିଲେ ।

ଦିନକୁ ଦିନ ଦାସିଆ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରେମରେ ପାଗଳ ହୋଇ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ ଯଥା-ଖାଇବା, ଶୋଇବା, ଲୁଗା ବୁଣିବାକୁ ଭୁଲିଯାଇଥିଲେ । ଶେଷରେ ଘରେ ଥିଲେ ଖାଇଲେ, ନ'ହେଲେ ପାଣି ପିଇ ଶୋଉଥିଲେ । ତାଙ୍କର ମାତ୍ର ଗୋଟିଏ ଚିନ୍ତା ଥିଲା ପ୍ରଭୁ ଶ୍ରୀଜଗନ୍ନାଥ । ଭକ୍ତର ଭାବରେ ବନ୍ଧା ଭଗବାନ । ପ୍ରଭୁ ଶ୍ରୀଜଗନ୍ନାଥ ତାଙ୍କର ପରମଭକ୍ତ ଦାସିଆର ମନର ଦୁଃଖ ବୁଝି ପାରିଲେ । ଥରେ ରାତିରେ ଦାସିଆକୁ ଦେଖା କରିବା ପାଇଁ ରତ୍ନସିଂହାସନ ତ୍ୟାଗ କରି ଦାସିଆ ଘରେ ଉପସ୍ଥିତ ହେଲେ । ରଥଯାତ୍ରାରେ ସେ ନନ୍ଦିଘୋଷ ରଥରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଯେପରି ଦେଖିଥିଲେ ସେପରି ତା'ଘରେ ଦେଖି ନିଜକୁ ଧନ୍ୟ ମଣିଲେ । ପ୍ରଭୁ ଦାସିଆକୁ କିଛି ମାଗିବାକୁ କହିଥିଲେ । ଦାସିଆ କହିଥିଲେ ହେ !ମହାବାହୁ ବଳିୟାର ଭୁଜ, ଅନ୍ତର୍ଯ୍ୟାମୀ ମୋର ଭୋଗ, ବିଳାସ, ଧନ, ଜନ, କିଛି ଦରକାର ନାହିଁ । କିନ୍ତୁ ମତେ ଏତିକି ଦିଅନ୍ତୁ, ମୁଁ ଯେତେବେଳେ ଓ ଯେଉଁଠାରେ ରହିବି, ଆପଣ ମତେ ଦର୍ଶନ ଦେଉଥିବେ । ପ୍ରଭୁ କହିଲେ, ଧନ୍ୟ ଦାସିଆ, ତୁମେ ଧନ୍ୟ ହୋଇଗଲ । ଦାସିଆକୁ ବର ପ୍ରଦାନ କରି କ୍ଷଣକ ମଧ୍ୟରେ ଅନ୍ତର୍ଦ୍ଧାନ ହୋଇଗଲେ ।

ଯଥା ପୂର୍ବ ତଥା ପର ପରି ଦାସିଆ ପ୍ରତିଦିନ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନାମକୁ ଧରି ପାଗଳ ପରି ହେଉଥିଲେ । ଥରେ ଦାସିଆ ଖଣ୍ଡେ ବୁଣାଲୁଗା ବିକିବା ପାଇଁ ଜଣେ ବ୍ରାହ୍ମଣଙ୍କ ଘର ପାଖରେ ଠିଆ ହୋଇଥାଏ । ବ୍ରାହ୍ମଣ ଜଣଙ୍କୁ ଦାସିଆ ଲୁଗାକୁ କିଣିବାପାଇଁ ଦେଖାଉଥାନ୍ତି । ଏହି ସମୟରେ

ବ୍ରାହ୍ମଣଙ୍କ ଘର ପାଖରେ ଥିବା ଏକ ଛୋଟ ନଡ଼ିଆ ଗଛରେ ନଡ଼ିଆ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଖକୁ ପଠାଇବା ପାଇଁ ମନ ବଳାଇଥିଲେ । ପରିଶେଷରେ ବ୍ରାହ୍ମଣଙ୍କ ଠାରୁ ତା' ଲୁଗା ବଦଳରେ ନଡ଼ିଆଟିଏ ଆଣିଥିଲେ । କିନ୍ତୁ ସେ ରାତିରେ କିଛି ଖାଇବାକୁ ନ'ଥିବାରୁ ଦୁଇପ୍ରାଣୀ ଉପବାସରେ ରହିଥିଲେ । ତା'ପରଦିନ ପ୍ରହରାଜପୁର ଶାସନର ଜଣେ ବ୍ରାହ୍ମଣ ଶ୍ରୀକ୍ଷେତ୍ର ଯାଉଥିବା ଶୁଣି, ଦାସିଆ ତାଙ୍କ ଘରକୁ ସେହି ନଡ଼ିଆକୁ ଧରି ଯାଇଥିଲେ । ସେଠାରେ ବ୍ରାହ୍ମଣକୁ କହିଲେ ହେ, ଗୋସାଇଁ ଏହି ନଡ଼ିଆଟି ନେଇ ଆପଣଙ୍କ ସ୍ୱହସ୍ତରେ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରି କହିବେ ଏହି ନଡ଼ିଆଟି ଦାସିଆ ବାଉରି ପଠାଇଛି । ଯଦି ସେ ନ'ନେବେ, ତେବେ ନଡ଼ିଆଟିକୁ ଫେରାଇ ଆଣିବେ, ସିନା କାହାକୁ ଦେବେ ନାହିଁ । ଦାସିଆ କହିଥିବା ଅନୁସାରେ ବ୍ରାହ୍ମଣଜଣଙ୍କ ତାଙ୍କ ହସ୍ତରେ ଧରି, କହିଲେ, ହେ ! ମହାବାହୁ, ଏହି ନଡ଼ିଆ ବାଲିଗାଁର ଦାସିଆ ବାଉରି ଆପଣଙ୍କ ପାଇଁ ମୋ ହସ୍ତରେ ପଠାଇଛି । ଏହା କହିବା ମାତ୍ରେ ଶୂନ୍ୟରୁ ଏକ ହାତ ଆସି ବ୍ରାହ୍ମଣଙ୍କ ହସ୍ତରୁ ନଡ଼ିଆକୁ ନେଇଗଲେ । ଏହା ଦେଖି ବ୍ରାହ୍ମଣ ଜଣକ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ କ୍ଷଣକ ମଧ୍ୟରେ ଏହା ଚାରିଆଡ଼େ ଚହଳ ପଡ଼ିଗଲା । କିଛି ସମୟ ପରେ ପଣ୍ଡାମାନେ ରତ୍ନସିଂହାସନ ପାଖରେ ଭଙ୍ଗା ନଡ଼ିଆ ଓ ତାର ଷଢ଼େଇ ପଡ଼ିଥିବାର ଦେଖିଲେ । ଦାସିଆ ଜାତିରେ ଛୋଟ, ପାଠଶାଠ ପଢ଼ିନାହିଁ, ଗଣ୍ଡମୂର୍ଖ । ଦାସିଆର ଭକ୍ତିତ୍ୱକୁ ସର୍ବସାଧାରଣ, ସାଧୁ, ସନ୍ଥ, ଭକ୍ତସମାଜ ସ୍ୱୀକୃତି ପ୍ରଦାନ କଲେ । କିନ୍ତୁ ପଣ୍ଡା ସେବାୟତମାନେ ଏହାକୁ ସ୍ୱୀକାର କଲେନାହିଁ ।

ଅନ୍ୟ ଏକ ଦିନ ଦାସିଆ ଏକ ଭାର ଆମ୍ବ ନେଇ ତା'ର ଆରାଧ୍ୟ ଠାକୁର ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରିବାପାଇଁ ପାଦରେ ଚାଲି ଚାଲି ସିଂହଦ୍ୱାର ଠାରେ ପହଞ୍ଚିଥିଲେ । ସେବାୟତମାନେ ଦାସିଆକୁ ଶ୍ରୀମନ୍ଦିରକୁ ପ୍ରବେଶ କରିବାପାଇଁ ବିରୋଧ କରିଥିଲେ । ଲୋଭୀ ସେବାୟତମାନେ ଆମ୍ବତକ ନେଇଯିବା ପାଇଁ ଦାସିଆକୁ ପ୍ରଲୋଭିତ କରିଥିଲେ । ଏଥିରେ ଦାସିଆ ରାଜି ନହୋଇ, ନିଜେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରିବେ ବୋଲି ସେବାୟତମାନଙ୍କୁ କହିଥିଲେ । ଭକ୍ତ ଦାସିଆ ନୀଳଚକ୍ରକୁ ଚାହିଁ, ଉଚ୍ଚ ସ୍ୱରରେ କହିଲେ, ହେ ! ମହାବାହୁ ତୁମପାଇଁ ମୁଁ ଆମ୍ବ ଆଣିଅଛି । ଆପଣ ଏଠାକୁ ଆସି ଆମ୍ବ ନେଇ ଯାଆନ୍ତୁ । ଏହା ଶୁଣିବା ମାତ୍ରେ ଶ୍ରୀଜଗନ୍ନାଥ ଶୂନ୍ୟମାର୍ଗରେ ଆସି ଆମ୍ବତକ ନେଇଗଲେ । ତତ୍‌ପରେ ରତ୍ନସିଂହାସନ ନିକଟରେ ଆମ୍ବଚୋପା ଓ ଟାକୁଆ ପଡ଼ିଥିବା ଦେଖି ସେବାୟତମାନେ ବିଶ୍ୱାସ କରିଥିଲେ । ସେଠାରେ ଉପସ୍ଥିତ ଥିବା ସମସ୍ତ ସଦସ୍ୟ ଦାସିଆକୁ ଧନ୍ୟ-ଧନ୍ୟ କରିଲେ । ଶେଷରେ ସର୍ବସମ୍ମତିକ୍ରମେ ଦାସିଆକୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଜଣେ ପରମଭକ୍ତ ରୂପେ ସମ୍ମାନିତ କରିଥିଲେ ।

ଯୁଗେ ଯୁଗେ ଭକ୍ତର ଭାବରେ ଭଗବାନ ବନ୍ଧା ହୋଇଥାନ୍ତି । ଦାସିଆ ପାଖରେ ପୂରି ରହିଛି ଭାବର ଅମୃତ । ଖୋଲାମନ, ନିଷ୍ଠା ଓ ତ୍ୟାଗରେ ଡାକିଲେ ପ୍ରଭୁ ଭକ୍ତର ଦୁଃଖ ଶୁଣନ୍ତି । ଯାହାକି ଭକ୍ତ ଦାସିଆ ବାଉରି ପକ୍ଷରେ ସମ୍ଭବ ହୋଇପାରିଛି ।

* * * * * * *

# ସନ୍ଥମାନଙ୍କର ଲୀଳା କ୍ଷେତ୍ର ଶ୍ରୀକ୍ଷେତ୍ର

ଯୁଗ ଯୁଗ ଧରି ସନ୍ଥ ତା'ର ପ୍ରଭୁଙ୍କର ସାନ୍ନିଧ ଲାଭ କରି ମୋକ୍ଷ ପାଇବା ପାଇଁ ପାଗଳ । ପ୍ରଭୁ ମଧ୍ୟ ତା'ର ପରମ ସନ୍ଥଙ୍କୁ ଦର୍ଶନ ଦେବାପାଇଁ ବ୍ୟାକୁଳ । ତେଣୁ ଭକ୍ତ ବା ସନ୍ଥ ଓ ଭଗବାନଙ୍କ ମଧ୍ୟରେ ରହିଅଛି ନିବିଡ଼ ମହାର୍ଘ୍ୟ ସମ୍ପର୍କ । ଏହି ସମ୍ପର୍କ ମଧ୍ୟରେ ଥିବା ଗଭୀରତା ଅମାପ, ଅସରନ୍ତି, ଅସୀମ, ଅନନ୍ତ, ଅଦୃଶ୍ୟ, ଅସ୍ପଷ୍ଟ ଓ ନିରାକାର । ଏହା ସବୁ ଗୋଟିଏ ଗୋଟିଏ କିମ୍ବଦନ୍ତୀରୂପେ ପୁରାଣ ଶାସ୍ତ୍ରଗୁଡ଼ିକରେ ଲିପିବଦ୍ଧ । ପ୍ରକାଶଥାଉକି ସତ୍ୟଯୁଗରେ ଭକ୍ତ ପ୍ରହଲ୍ଲାଦ ଓ ପ୍ରଭୁ ନୃସିଂହ, ତ୍ରେତୟାରେ ଭକ୍ତ ଶ୍ରୀହନୁମାନ ଓ ପ୍ରଭୁ ଶ୍ରୀରାମ, ଦ୍ୱାପର ଯୁଗରେ ଭକ୍ତ ଉଦ୍ଧବ ଓ ପ୍ରଭୁ ଶ୍ରୀକୃଷ୍ଣ । ସେହିପରି କଳିଯୁଗରେ ପ୍ରଭୁ ସ୍ୱୟଂ ବ୍ରହ୍ମ, ପୁରୁଷୋତ୍ତମ, ଦାରୁମୂର୍ତ୍ତି ମୁରାରି ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ରରେ ଆବିର୍ଭାବ ହୋଇ, ତାଙ୍କର ଲୀଳା, କ୍ରୀଡ଼ା ମାଧ୍ୟମରେ ଅଶେଷ ଭକ୍ତ ଓ ସନ୍ଥମାନଙ୍କୁ ସୃଷ୍ଟି କରିଛନ୍ତି । ଅତୀତରେ ଏହିସବୁ କିମ୍ବଦନ୍ତୀ ସମ୍ପନ୍ନ ମହାପୁରୁଷଙ୍କ ଉପରେ ଅଶେଷ ଆଶା ଓ ବିଶ୍ୱାସ ଜ୍ଞାପନ କରି ମାନବ ତା'ର ସଂସ୍କୃତି, ପରମ୍ପରା ସମେତ ସାମାଜିକ ଚଳଣି, ବିଚାରଧାରା, ଧର୍ମବିଶ୍ୱାସ ଇତ୍ୟାଦି ପରିଚାଳିତ କରୁଛନ୍ତି । ଏହି ଦିବ୍ୟ ମହିମାମଣ୍ଡିତ ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀପୁରୁଷୋତ୍ତମ କେହି ନୁହଁନ୍ତି, ସେ ଅଟନ୍ତି ସର୍ବଦେବମୟ, ସର୍ବଗୁଣମୟ, ସର୍ବରୂପମୟ, ସର୍ବଲୀଳାମୟ, ସର୍ବତୀର୍ଥମୟ ଓ ସର୍ବହୃଦୟ ନିବାସୀ ଶ୍ରୀଜଗନ୍ନାଥ । ଏହି ବିଶ୍ୱବ୍ରହ୍ମାଣ୍ଡ ପତି ମାନବୀୟ ଧର୍ମର ପ୍ରତୀକରୂପେ ଶ୍ରଦ୍ଧାଳୁ ଭକ୍ତମାନଙ୍କୁ ତାଙ୍କ ମହିମାଦ୍ୱାରା ବାନ୍ଧିରଖିଛନ୍ତି । ଏହି ଉଦାର ମାନବିକତା ପାଇଁ କାଳେ କାଳେ ଦିଗ୍ ଦିଗାନ୍ତରୁ ସିଦ୍ଧ ସାଧକ, ସାଧୁସନ୍ଥ ଓ ଭକ୍ତମାନେ ଏହି ଧାମକୁ ଛୁଟି ଆସିଥାନ୍ତି ।

ସମଗ୍ର ଭାରତରେ ଥିବା ଚାରୋଟି ଧାମ ମଧ୍ୟରୁ ଶ୍ରୀକ୍ଷେତ୍ର ଧାମଟି ସର୍ବବ୍ୟାପକ ଓ ସର୍ବଶ୍ରେଷ୍ଠ ଧାମରୂପେ ପ୍ରସିଦ୍ଧି ଲାଭ କରିଛି । କେହି କେହି ଏହି ଧାମକୁ ମଣ୍ଡପ, ମଠ ଓ ମନ୍ଦିରମାଳିନୀ ଧାମ ରୂପେ ବିବେଚନା କରିଥାନ୍ତି । ଗୁପ୍ତ ଯୁଗରେ ହିନ୍ଦୁ ଓ ବୌଦ୍ଧ ଧର୍ମ ମଧ୍ୟରେ ପ୍ରତିଦ୍ୱନ୍ଦିତା ହୋଇ ଶ୍ରୀକ୍ଷେତ୍ରରେ ବହୁ ମନ୍ଦିରମାନ ଗଢ଼ି ଉଠିଥିଲା । କାରଣ ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବଧର୍ମ ସମନ୍ୱୟର ପ୍ରତୀକ । ତେଣୁ ବିଭିନ୍ନ ସମୟରେ ବିଭିନ୍ନ ସମ୍ପ୍ରଦାୟର ଧର୍ମଗୁରୁମାନେ ଶ୍ରୀକ୍ଷେତ୍ରରେ ମଠମାନ ନିର୍ମାଣକରି ସେମାନଙ୍କର ଇଷ୍ଟଦେବଙ୍କୁ ପୂଜାକରିବା ସହ ଶ୍ରୀଜଗନ୍ନାଥଙ୍କୁ ଆରାଧନା କରିବାରେ ପଛାଇ ନାହାଁନ୍ତି । ଅଷ୍ଟମ ଶତାବ୍ଦୀର ଶେଷ ଓ ନବମ ଶତାବ୍ଦୀର ପ୍ରାରମ୍ଭରେ

ହିନ୍ଦୁଧର୍ମର ଶ୍ରେଷ୍ଠଗୁରୁ ଆଚାର୍ଯ୍ୟ ଶଙ୍କର ମଠ ପ୍ରତିଷ୍ଠାକରି ଅଦ୍ୱୈତ ମତବାଦର ପ୍ରଚାର କରିଥିଲେ । ସେହିପରି ବୈଷ୍ଣବ ସମ୍ପ୍ରଦାୟ, ଗୌଡ଼ୀୟ ସମ୍ପ୍ରଦାୟ, ଶିଖ୍ ସମ୍ପ୍ରଦାୟ ଇତ୍ୟାଦି ।

ଧର୍ମଗୁରୁମାନେ ପର୍ଯ୍ୟାୟକ୍ରମେ ଶ୍ରୀକ୍ଷେତ୍ର ଆସି ଶ୍ରୀଜଗନ୍ନାଥଙ୍କ ଭକ୍ତରୂପେ ପ୍ରସିଦ୍ଧି ଲାଭ କରିଛନ୍ତି । ଏହାବ୍ୟତୀତ ଆଉ କେତେକ ଭକ୍ତ ଶ୍ରୀଜଗନ୍ନାଥଙ୍କ ଭକ୍ତି ପ୍ରେମରେ ବିହ୍ୱଳ ହୋଇ କ୍ଷେତ୍ର ଓ ପ୍ରଭୁଙ୍କୁ ଦର୍ଶନ କରିବା ଅବସରରେ କେତେଗୁଡ଼ିଏ କିମ୍ବଦନ୍ତୀର ମୂଳ ଆଧାର ହୋଇଯାଇଛନ୍ତି । ଫଳରେ ଏହି ସବୁ ଯୋଗଜନ୍ମା ମହାପୁରୁଷମାନେ ତାଙ୍କ ଜୀବନ ମଧ୍ୟରେ ଗୋଟିଏ ଗୋଟିଏ ଆଧ୍ୟାତ୍ମିକ ଅଧ୍ୟାୟ ସୃଷ୍ଟିକରିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ହୋଇପାରିଛନ୍ତି । ଏହି ସବୁ ସନ୍ଥମାନଙ୍କ ମଧ୍ୟରୁ କେତେଜଣଙ୍କର ସମ୍ପର୍କରେ ନିମ୍ନରେ ପ୍ରଦତ୍ତ ହୋଇଅଛି :-

## ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ (ସନ୍ଥ)



ବିଭିନ୍ନ ସମୟରେ ବିଭିନ୍ନ ଧର୍ମକୁ ସୁରକ୍ଷା ଦେବା ଓ ମାନବଜାତିକୁ ସୁଗମପଥରେ ପରିଚାଳିତ କରିବାପାଇଁ ସ୍ୱୟଂ ଭଗବାନ ତାଙ୍କ ଧର୍ମ ପ୍ରଚାରକମାନଙ୍କୁ ଜନ୍ମ ଦେଇଥାନ୍ତି । ଠିକ୍ ସେପରି ଅଷ୍ଟମ ଶତାବ୍ଦୀର ଶେଷ ଭାଗରେ ହିନ୍ଦୁଧର୍ମର ପ୍ରଥମଗୁରୁ ତଥା ଶ୍ରେଷ୍ଠ ପ୍ରବର୍ତ୍ତକ ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟ ଜନ୍ମ ଲାଭକରି ହିନ୍ଦୁଧର୍ମକୁ ବିପଦ ବଳୟରୁ ମୁକ୍ତି କରି ସୁରକ୍ଷା ପ୍ରଦାନ କରିଥିଲେ । ସେହି ମହାପୁରୁଷ ଯୁଧିଷ୍ଠିର ସମ୍ବତ୍ ୨୬୩୧ (ଖ୍ରୀ ୭୮୮) ବୈଶାଖ ଶୁକ୍ଳପଞ୍ଚମୀ ତିଥିରେ ଦିବା ୧୨ଘଟିକାରେ କେରଳ ପ୍ରଦେଶର କାଲାଡ଼ି ଗ୍ରାମରେ ଲମ୍ବୁତରୀ ସମ୍ପ୍ରଦାୟର ବ୍ରାହ୍ମଣ ପରିବାରରେ

ପରମଶିବ ଭକ୍ତ ପିତା ଶିବଗୁରୁ ମାତା ଆର୍ଯ୍ୟାମ୍ବାଙ୍କ କୋଳ ମଣ୍ଡନ କରିଥିଲେ । ତାଙ୍କର ଅଗାଧ ମେଧାଶକ୍ତି ବଳରେ ଆଠ ବର୍ଷ ବୟସରେ ୪ଟି ବେଦକୁ ଅକ୍ଳେଶରେ ଆୟତ୍ତ କରିବା ସହ ବାରବର୍ଷ ବୟସରେ ସର୍ବଶ୍ରେଷ୍ଠ ଶାସ୍ତ୍ର ବିଶାରଦ ହୋଇଥିଲେ । ନର୍ମଦା ନଦୀ ତୀରସ୍ଥ ଏକ ଗୁମ୍ଫାରେ ଗୁରୁ ଗୋବିନ୍ଦପାଦଙ୍କୁ ଦର୍ଶନ କରି ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେଠାରେ ଅଷ୍ଟାଙ୍ଗ ଯୋଗ ସାଧନକରି ବ୍ରହ୍ମତତ୍ତ୍ୱର ନିଗୂଢ଼ ରହସ୍ୟ ଭେଦକରି ବ୍ରହ୍ମବିତ୍ ହୋଇଥିଲେ । ଷୋହଳ ବର୍ଷ ବୟସରେ ସେ ଅଗାଧ ପାଣ୍ଡିତ୍ୟ ଓ ଅଲୌକିକ ପ୍ରତିଭାର ଅଧିକାରୀ ହୋଇପାରିଥିଲେ । ତେଣୁ ସେ ଜଗତ୍‌ଗୁରୁ ପଦ ମଣ୍ଡନ କରିଥିଲେ ।

ହିନ୍ଦୁଧର୍ମ ଦର୍ଶନର ମୂଳଉତ୍ସ ହେଉଛି ଚାରୋଟି ବେଦ । ଏହାକୁ ବ୍ରହ୍ମବିଦ୍ୟା ବୋଲି କୁହାଯାଇଥାଏ । ଚାରୋଟି ବେଦର ଚାରୋଟି ମହାକାବ୍ୟ ଉପରେ ସେ ଭାରତରେ ଚାରୋଟି ମଠ ପ୍ରତିଷ୍ଠା କରିଥିଲେ । ଯଥା ଯଜୁର୍ବେଦ ପ୍ରଚାରପାଇଁ ଭାରତର ଦକ୍ଷିଣରେ ଶୃଙ୍ଗେରୀ ମଠ, ସାମବେଦ ପାଇଁ ପଶ୍ଚିମର ଦ୍ୱାରିକାରେ ଶାରଦାମଠ, ଅଥର୍ବବେଦ ପାଇଁ ଉତ୍ତରାଞ୍ଚଳରେ ଜ୍ୟୋତିର୍ମଠ ଓ ଋଗ୍‌ବେଦ ପାଇଁ ପୂର୍ବରେ ଥିବା ପୁରୁଷୋତ୍ତମ କ୍ଷେତ୍ରରେ ଗୋବର୍ଦ୍ଧନ ମଠ । ଗୁରୁ ଗୋବିନ୍ଦପାଦଙ୍କ ନିର୍ଦ୍ଦେଶାନୁସାରେ ହିନ୍ଦୁଧର୍ମର ସୁରକ୍ଷା ଓ ମାନବଜାତିର କଲ୍ୟାଣପାଇଁ ଭାରତର ସମସ୍ତ କ୍ଷେତ୍ରକୁ ପଦଯାତ୍ରା କରି ବ୍ରହ୍ମତତ୍ତ୍ୱର ନିଗୂଢ଼ ରହସ୍ୟ ତଥା ବିଗ୍ରହପୂଜା, ହିନ୍ଦୁତତ୍ତ୍ୱ ବାଣୀମାନ ପ୍ରଚାର ଓ ପ୍ରସାର କରାଇ ପରାକାଷ୍ଠା ପ୍ରଦର୍ଶନ କରିଥିଲେ ।

ଅଦ୍ୱୈତ ମତବାଦର ମହାନ୍ ପ୍ରବକ୍ତା ଆଚାର୍ଯ୍ୟ ଶଙ୍କରଙ୍କ ବିଦ୍ୱତାରେ ମୁଗ୍ଧ ହୋଇ ମହାଭାରତ ପ୍ରଣେତା କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ଶଙ୍କରଙ୍କୁ ବାହ୍ୟଶତ୍ରୁଙ୍କ କବଳରୁ ଶ୍ରୀଜଗନ୍ନାଥଙ୍କୁ ସୁରକ୍ଷା ଦେଇ ଶ୍ରୀମନ୍ଦିରର ରତ୍ନବେଦୀକୁ ପୁନଃଅଭିଷେକ କରିବାକୁ ପରାମର୍ଶ ଦେଇଥିଲେ । ସର୍ବପ୍ରଥମେ ଶ୍ରୀଶଙ୍କରାଚାର୍ଯ୍ୟ ଓଡ଼ିଶାର ଶ୍ରୀକ୍ଷେତ୍ରକୁ ଆସିଥିଲେ । ମାଦଳାପାଞ୍ଜିର ଉଲ୍ଲେଖକ୍ରମେ ସେତେବେଳେ ଶ୍ରୀଜଗନ୍ନାଥ ଏକଶତ ଚଉରାଳିଶ ବର୍ଷ ଶ୍ରୀମନ୍ଦିର ପରିତ୍ୟାଗ କରି ସୁବର୍ଣ୍ଣପୁରରେ ପାତାଳି ହୋଇଥିଲେ । ତତ୍କାଳୀନ କଳିଙ୍ଗର ରାଜାଥିଲେ ଜନ୍ମେଜୟ । ସେ ବୈତରଣୀ ନଦୀ କୂଳରେ ଶଙ୍କରାଚାର୍ଯ୍ୟଙ୍କୁ  ସ୍ୱାଗତ କରିଥିଲେ । ଶଙ୍କରଙ୍କ ନିର୍ଦ୍ଦେଶକ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ କାନ୍ୟକୁବ୍ଜରୁ ଦଶହଜାର ବ୍ରାହ୍ମଣ ଅଣାଇ ଏକ ଦଶାଶ୍ୱମେଧ ଯଜ୍ଞ କରିଥିଲେ । ଯଜ୍ଞପରେ ଶଙ୍କରାଚାର୍ଯ୍ୟ ରାଜାଙ୍କୁ ଯଯାତିକେଶରୀ ଉପାଧି ପ୍ରଦାନ କରିଥିଲେ । ତ୍ରିମୂର୍ତ୍ତିଙ୍କୁ ଯଥା ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା'ସୁଭଦ୍ରାଙ୍କୁ ଶ୍ରୀକ୍ଷେତ୍ର ନେବାକୁ ଆଦେଶ ଦେଇଥିଲେ । ବ୍ରହ୍ମଶିଳା ଆଣିବାପାଇଁ ସେ ଜଣେ ବ୍ରାହ୍ମଣଙ୍କୁ (ସନ୍ନ୍ୟାସୀ) ନେପାଳର ରାଜା ଶଙ୍କରଦେବଙ୍କ ପାଖକୁ ପଠାଇଥିଲେ ।

ନେପାଳର ରାଜା ଗଣ୍ଡକୀ ନଦୀରୁ ଜୀବନ୍ତ ବ୍ରହ୍ମଶିଳା ଓ କସ୍ତୁରୀ ପଠାଇଥିଲେ । ନେପାଳ ରାଜାଙ୍କ ଏହି ମହତ୍ କାର୍ଯ୍ୟପାଇଁ ଶଙ୍କର ତାଙ୍କୁ ପଟ୍ଟମହାନାୟକ ପଦରେ ଭୂଷିତ କରି ଶ୍ରୀମନ୍ଦିରରେ ପ୍ରଭୁଙ୍କ ପୂଜାକରିବା ପାଇଁ ଅଧିକାର ପ୍ରଦାନ କରିଥିଲେ । ଶ୍ରାବଣମାସ ଅମାବାସ୍ୟାରେ ଶଙ୍କରାଚାର୍ଯ୍ୟ ରତ୍ନସିଂହାସନରେ ଶ୍ରୀପ୍ରଭୁଙ୍କୁ ପଟ୍ଟାଭିଷେକ କରାଇ ମସ୍ତକରେ ହୀରା ଓ ଚନ୍ଦନ ଲଗାଇଥିଲେ । ସେ ନିଜେ ଆଳତି କରିଥିଲେ ।

ଦୀର୍ଘଦିନର ବ୍ୟବଧାନ ପରେ ଶ୍ରୀମନ୍ଦିରରେ ପୂଜା ବିଧି ପ୍ରାୟ ବିଲୋପ ହୋଇଯାଇଥିଲା । ଆଚାର୍ଯ୍ୟ ଶଙ୍କର ବୈଦିକ ନୀତିରେ ଠାକୁରଙ୍କର ପୂଜା କରିବାର ବ୍ୟବସ୍ଥାମାନ କରିଥିଲେ । ପ୍ରଥମକରି ସେ ପ୍ରଭୁଙ୍କର ମହାପ୍ରସାଦକୁ ଅନ୍ନବ୍ରହ୍ମ ବୋଲି ପ୍ରଚଳନ କରିଥିଲେ । ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି, ଶ୍ରୀମନ୍ଦିରର ନୀତି ବିଷୟରେ ମତ ଦେବାର ଅଧିକାର ଗୋବର୍ଦ୍ଧନ ମଠର ଅଛି । ଶ୍ରୀମନ୍ଦିରର ସମସ୍ତ ଧାର୍ମିକ କାର୍ଯ୍ୟରେ ଗୋବର୍ଦ୍ଧନ ମଠର ମଠାଧୀଶଙ୍କର ପରାମର୍ଶ ନିଆଯାଏ । ସେ ମୁକ୍ତିମଣ୍ଡପର ନାୟକ ଅଟନ୍ତି । ଅତୀତରେ ସେ ସେବାୟତମାନଙ୍କର ନିପୁଣତାକୁ ପରୀକ୍ଷା କରି ଅନୁମତି ପ୍ରଦାନ କରିଥିଲେ । ଦିବ୍ୟସିଂହଦେବ (ଦ୍ୱିତୀୟ) (୧୭୯୩-୧୭୯୮) ପର୍ଯ୍ୟନ୍ତ ଶ୍ରୀମନ୍ଦିରର ରତ୍ନସିଂହାସନରେ ଶଙ୍କରଙ୍କର ଏକ ବିଗ୍ରହ ପୂଜାପାଉଥିଲା । ବର୍ତ୍ତମାନ ଏହା ଦକ୍ଷିଣଗୃହରେ ରଖାଯାଇଅଛି । ଦଣ୍ଡାଧାରୀ ଶଙ୍କରାଚାର୍ଯ୍ୟ ମନ୍ଦିର ଭିତରକୁ ପ୍ରବେଶ କରି ଓ ଆସନ ପକାଇ ବସିବାର ଅଧିକାର ପାଇଛନ୍ତି । ଗୋବର୍ଦ୍ଧନ ମଠର ମହନ୍ତ ଶ୍ରୀମନ୍ଦିରରୁ ଦୈନିକ ଖେଇ ମହାପ୍ରସାଦ ପାଇବା ସହ ପଡନି ଓ ଚନ୍ଦନ ଖେଇ ପାଇବାର ବ୍ୟବସ୍ଥା ଅଛି । ବାଇଶପାହାଚ ପାଖରେ ଥିବା ସରଘରେ ରଥଯାତ୍ରା ଓ ବାହୁଡ଼ାଯାତ୍ରାର ପହଣ୍ଡି ସମୟରେ ଏହି ମଠ ତରଫରୁ ଶ୍ରୀପ୍ରଭୁଙ୍କୁ ପନ୍ତିଭୋଗ ହୋଇଥାଏ । ରଥଯାତ୍ରାରେ ଗଜପତିଙ୍କ ଛେରାପହଁରା ପୂର୍ବରୁ ଗୋବର୍ଦ୍ଧନ ମଠର ଶଙ୍କରାଚାର୍ଯ୍ୟ ରଥଉପରେ ପ୍ରବେଶ କରି ଦର୍ଶନ ଓ ଉପାସନା କରିବାର ବିଧି ଅଛି । ମା'ମହାଲକ୍ଷ୍ମୀଙ୍କ ମନ୍ଦିରରେ ଥିବା ଶ୍ରୀଲକ୍ଷ୍ମୀନୃସିଂହ ମୂର୍ତ୍ତିତଳେ ଯେଉଁ ଦଣ୍ଡଛତ୍ରଧାରୀ କ୍ଷୁଦ୍ରପାଷାଣ ମୂର୍ତ୍ତି ଅଛି, ତାହାକୁ କେହି କେହି ଶଙ୍କରାଚାର୍ଯ୍ୟଙ୍କ ମୂର୍ତ୍ତି ବୋଲି କୁହନ୍ତି ।

ତତ୍କାଳୀନ ଗମନାଗମନର କୌଣସି ଯାନ୍ତ୍ରିକ ବ୍ୟବସ୍ଥା ନଥିବାବେଳେ ଆଚାର୍ଯ୍ୟ ଶଙ୍କର ପଦବ୍ରଜରେ ସମଗ୍ରଭାରତ ପର୍ଯ୍ୟଟନକରି ଏକେଶ୍ୱରବାଦ ପ୍ରତିଷ୍ଠାକରି ଯୁଗ ଯୁଗକୁ ଏକ ନୂତନ ଧାର୍ମିକ ଅଧ୍ୟାୟ ସୃଷ୍ଟି କରିପାରିଛନ୍ତି । ଏଥିସହିତ ଅଦ୍ୱୈତବାଦ ଜ୍ଞାନର ମହିମା ପ୍ରଚାର ଓ ପ୍ରସାର କରି ଜଗତରେ ଏକ ଅକ୍ଷୟକୀର୍ତ୍ତି ସ୍ଥାପନ କରିପାରିଛନ୍ତି, ଯାହାକୁ କୌଣସି ମାନବ ପକ୍ଷରେ ଏପରି ଧାର୍ମିକ, ସାଂସ୍କୃତିକ, ସାମାଜିକ, ଦାର୍ଶନିକ ଓ ନୈତିକତା ଜ୍ଞାନର ପରିବର୍ତ୍ତନ କରାଇବା ଅବଶ୍ୟମ୍ଭାବୀ ।

# ପଦ୍ମପାଦ (ସନ୍ଥ)



ଆଚାର୍ଯ୍ୟ ପଦ୍ମପାଦ ଆଦି ଶଙ୍କରାଚାର୍ଯ୍ୟଙ୍କର ଥିଲେ ପରମ ଶିଷ୍ୟ । ଶଙ୍କରାଚାର୍ଯ୍ୟ ଭାରତର ଚାରିଦିଗରେ ଚାରୋଟି ମଠ ସ୍ଥାପନ କରିଥିବା ମଧ୍ୟରୁ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠା କରିଥିବା ଶ୍ରୀଗୋବର୍ଦ୍ଧନ ମଠରେ ସେ ଶ୍ରୀପଦ୍ମପାଦଙ୍କୁ ମଠାଧୀଶ ରୂପେ ଦାୟିତ୍ୱ ଅର୍ପଣ କରାଇଥିଲେ । ଶ୍ରୀଶଙ୍କରାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କୁ ସୋନପୁରରୁ ଉଦ୍ଧାର କରିବା ଓ ଶ୍ରୀମନ୍ଦିରରେ ପୁନଃ ପ୍ରାଣପ୍ରତିଷ୍ଠା କରିବା କାର୍ଯ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରାଣପ୍ରତିଷ୍ଠା ସମୟରେ ପ୍ରଥମେ ସେ ପୂଜା କରି ଚନ୍ଦନ ଓ କସ୍ତୁରୀ ଲେପନ କରିଥିଲେ । ଏହି ପବିତ୍ର ଦିନଟି ଥିଲା ଶ୍ରାବଣ ମାସର ଅମାବାସ୍ୟା ତିଥି । ପ୍ରକାଶଥାଉକି, ସେହିଦିନଠାରୁ ଏହି ଅମାବାସ୍ୟାକୁ ଚିତାଲାଗି ବା ଚିତଉ ଅମାବାସ୍ୟା ନାମରେ ବିଦିତ । ବେଦଜ୍ଞ ପଦ୍ମପାଦ ଦେଖିଥିଲେ ଯେ ଶ୍ରୀଜଗନ୍ନାଥଙ୍କ ପାଖରେ ବେଦ ତନ୍ତ୍ରମନ୍ତ୍ରରେ ମହାପ୍ରସାଦ ପୂଜା ହେଉଅଛି । ତାଙ୍କ ମନରେ ଥିବା ଏହି ସଂଶୟକୁ ଦୂରକରିବା ପାଇଁ ସେ ତାଙ୍କର ଗୁରୁ ଶ୍ରୀଶଙ୍କରାଚାର୍ଯ୍ୟଙ୍କୁ ଧ୍ୟାନ କଲେ । ଧ୍ୟାନରେ ସେ ଶ୍ରୀଜଗନ୍ନାଥ ଓ ଶ୍ରୀଶଙ୍କରାଚାର୍ଯ୍ୟଙ୍କ ମୂର୍ତ୍ତି ଦେଖିବାକୁ ପାଇଥିଲେ ବୋଲି ଜନଶ୍ରୁତି ରହିଛି । ଶୂନ୍ୟବାଣୀ ମାଧ୍ୟମରେ ଗୁରୁ ଶ୍ରୀଶଙ୍କରାଚାର୍ଯ୍ୟ ଶ୍ରୀପଦ୍ମପାଦଙ୍କୁ କହିଲେ, ଶ୍ରୀଜଗନ୍ନାଥ ବୈଦିକ ଦେବତା, ଏଣୁ ମହାପ୍ରସାଦ ବେଦ ବିରୁଦ୍ଧ ନୁହେଁ । ମହାପ୍ରସାଦ ସାକ୍ଷାତ୍ ବ୍ରହ୍ମସ୍ୱରୂପ ଏହା ମା'ମହାଲକ୍ଷ୍ମୀଙ୍କ ଦ୍ୱାରା ପାଚନ, ଶଙ୍କରଙ୍କ ଦ୍ୱାରା ପରିବେଷଣ ପରେ ଶ୍ରୀଜଗନ୍ନାଥ (ଶ୍ରୀବିଷ୍ଣୁ) ଭକ୍ଷଣ କରିଥାନ୍ତି । ଅନୁଶାସନ ଅନୁସାରେ ଏହା ମା'ବିମଳାଙ୍କୁ ଅର୍ପଣ ପରେ ମହାପ୍ରସାଦ ହୋଇଥାଏ ।

ପଦ୍ମପାଦ ମଧ୍ୟାହ୍ନ ଧୂପ ସମୟରେ ଶ୍ରୀମନ୍ଦିର ଯାଇ ଶ୍ରୀଜଗନ୍ନାଥଙ୍କୁ ଧ୍ୟାନ କଲେ । ଦେଖିଲେ ଗୋବର୍ଦ୍ଧନ ଗିରି ଉପରେ ଶ୍ରୀକୃଷ୍ଣ ମହାପ୍ରସାଦ ଉପରେ ବସି ଗୋପାଳ ବାଳକ ପରି ମହାପ୍ରସାଦ ଭକ୍ଷଣ କରୁଛନ୍ତି ।

# ଶ୍ରୀରାମାନୁଜାଚାର୍ଯ୍ୟ



ଏକାଦଶ ଶତାବ୍ଦୀରେ ହିନ୍ଦୁଧର୍ମର ପ୍ରବର୍ତ୍ତକ ଓ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତରୂପେ ବିଦ୍ୱାନ ଶ୍ରୀରାମାନୁଜାଚାର୍ଯ୍ୟ ବିଶ୍ୱପ୍ରସିଦ୍ଧି ଲାଭ କରିଥିଲେ । ଦକ୍ଷିଣଭାରତରେ ଜନ୍ମିତ ଏହି ମହାପୁରୁଷ ଏକ ଘଡ଼ିସନ୍ଧି ସମୟରେ ଆବିର୍ଭୂତ ହୋଇଥିଲେ । ତତ୍କାଳୀନ ସର୍ବଭାରତୀୟ ସ୍ତରରେ ଜୈନଧର୍ମର ବହୁଳ ପ୍ରଚାର ଓ ପ୍ରସାର ହୋଇଥିବା ବେଳେ ହିନ୍ଦୁଧର୍ମ କ୍ରମଶଃ ବିଲୋପ ଆଡ଼କୁ ମୁହାଁଇଥିଲା । ବିଦ୍ୱାନ ଶ୍ରୀରାମାନୁଚାର୍ଯ୍ୟଙ୍କ ଆପ୍ରାଣ ଉଦ୍ୟମ ଫଳରେ ଜୈନଧର୍ମକୁ ବିରୋଧ କରି ହିନ୍ଦୁଧର୍ମର ପୂର୍ବସ୍ଥିତିକୁ ବଜାୟ ରଖିଥିଲେ । ବୈଷ୍ଣବ ଧର୍ମରେ ଥିବା ଚାରୋଟି ସମ୍ପ୍ରଦାୟ ଯଥା- ଶ୍ରୀ, ବ୍ରହ୍ମା,ଶଙ୍କର ଓ ସନକ ମଧ୍ୟରେ ପଣ୍ଡିତ ରାମାନୁଜାଚାର୍ଯ୍ୟ ଥିଲେ "ଶ୍ରୀ" ସମ୍ପ୍ରଦାୟର ପ୍ରତିଷ୍ଠାତା ଆଚାର୍ଯ୍ୟ । ସେ ଶ୍ରୀକ୍ଷେତ୍ର ପରିଦର୍ଶନରେ ଆସି ମହାପ୍ରଭୁମାନଙ୍କୁ ଦର୍ଶନ କରିବା ଅବସରେ ହୃଦୟଙ୍ଗମ କରିଲେ ଯେ ଶ୍ରୀଠାକୁରମାନଙ୍କୁ ତନ୍ତ୍ରମନ୍ତ୍ରରେ ପୂଜା କରିବା ବିଧି ସଠିକ୍ ନୁହେଁ । ତେଣୁ ସେ ତତ୍କାଳୀନ ଗଜପତି ମହାରାଜ ଚୋଳଗଙ୍ଗଦେବଙ୍କୁ ପରାମର୍ଶ ଦେଲେ, ଶ୍ରୀଜଗନ୍ନାଥଙ୍କୁ ତନ୍ତ୍ରମନ୍ତ୍ରରେ ପୂଜାକରିବା ବିଧେୟ ନୁହେଁ, ବୈଦିକ ମନ୍ତ୍ରରେ ପୂଜା କରାଯାଉ । ଗୁରୁ ରାମାନୁଜାଚାର୍ଯ୍ୟଙ୍କ ପରାମର୍ଶକୁ ସମ୍ମାନ ଦେଇ ରାଜା ପୂଜାପଣ୍ଡାମାନଙ୍କୁ ନିର୍ଦ୍ଦେଶ ଦେଲେ କାଲିଠାରୁ ଶ୍ରୀପଭୁମାନଙ୍କୁ ତନ୍ତ୍ରମନ୍ତ୍ର ପରିବର୍ତ୍ତେ ବୈଦିକ ମନ୍ତ୍ରରେ ପୂଜାଅର୍ଚ୍ଚନା କରାଯିବ । ସେହି ସମୟରେ ମୁଁ ଓ ରାମାନୁଜାଚାର୍ଯ୍ୟ ଉପସ୍ଥିତ ରହିବୁ । ଏଥିସହିତ ରାମାନୁଜାଚାର୍ଯ୍ୟ ବୈଦିକ ମନ୍ତ୍ରରେ କିପରି ପୂଜା ହେବ ତାହା ପ୍ରଥମେ ପରାମର୍ଶ ଦେବେ । ଏହା ଶୁଣି ଶ୍ରୀମନ୍ଦିରର ସମସ୍ତ ବର୍ଗର ସେବାୟତଙ୍କ ମଧ୍ୟରେ ଭାଳେଣି ପଡ଼ିଗଲା । ଏଥିପାଇଁ ବଡ଼ପଣ୍ଡା ଶ୍ରୀଜଗନ୍ନାଥଙ୍କ ପାଖରେ ଶରଣାପନ୍ନ ହେଲେ ।

ତା'ପରଦିନ ନିର୍ଦ୍ଦିଷ୍ଟ ସମୟରେ ରାଜା ଚୋଳଗଙ୍ଗଦେବ ଶ୍ରୀମନ୍ଦିରରେ ଉପସ୍ଥିତ ହୋଇଥିଲେ ସିନା କିନ୍ତୁ ରାମାନୁଜାଚାର୍ଯ୍ୟ ଉପସ୍ଥିତ ହେଲେ ନାହିଁ । ଆଚାର୍ଯ୍ୟ ମହାଶୟଙ୍କୁ କିଛି ସମୟ ଅପେକ୍ଷା କରାଗଲା କିନ୍ତୁ ସେ ଆସିଲେ ନାହିଁ । ତତ୍‌ପରେ ଦୂତପଠାଇ ଗରୁଙ୍କୁ ଖୋଜା ଚାଲିଲା । ତନ୍ନ ତନ୍ନ କରି ଖୋଜି ସାରିବା ପରେ ଶେଷରେ କୂର୍ମପୀଠ ପାଖରେ ଶୋଇଥିବା ଅବସ୍ଥାରେ ପାଇଥିଲେ । ସେଠାରେ ଏକ ବିରାଟ ପକ୍ଷୀର ପାଦଚିହ୍ନ ଦେଖିବାକୁ ପାଇଥିଲେ । ମହାରାଜ, କୂଳଗୁରୁ ଓ ପୂଜାପଣ୍ଡାମାନେ ସେଠାରେ ଉପସ୍ଥିତ ହୋଇ ନିଦ୍ରାମଗ୍ନ ଥିବା ରାମାନୁଜାଚାର୍ଯ୍ୟଙ୍କୁ ଉଠାଇଥିଲେ । ନିଦ୍ରାଭଗ୍ନ ପରେ ରାମାନୁଜାଚାର୍ଯ୍ୟ ପ୍ରଥମେ ଶ୍ରୀଜଗନ୍ନାଥଙ୍କୁ କ୍ଷମା ପ୍ରାର୍ଥନା ମାଗିଥିଲେ । ଉତ୍ତରରେ କହିଥିଲେ ଯେ ସେ ଭାବିଥିଲେ ଶ୍ରୀଜଗନ୍ନାଥ ହେଉଛନ୍ତି କେବଳ ବୈଷ୍ଣବ ଦେବତା । ତେଣୁ ସେ ବୈଦିକ ନୀତିରେ ଶ୍ରୀଜୀଉଙ୍କୁ ପୂଜାକରିବା ପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ଗରୁଡ଼ରାଜ ତାଙ୍କୁ ଶ୍ରୀକ୍ଷେତ୍ରରୁ ଟେକିଆଣି ଏଠାରେ ଛାଡ଼ି ଦେଲେ, ସେତେବେଳେ ମୁଁ ଜାଣିବାକୁ ପାଇଲି ଶ୍ରୀଜଗନ୍ନାଥ ହେଉଛନ୍ତି ସମସ୍ତଙ୍କର ଦେବତା, ଯଥା ଶୈବ, ଶାକ୍ତ, ଗାଣପତ୍ୟ, ସୌର, ଜୈନ୍ୟ, ବୌଦ୍ଧ ଇତ୍ୟାଦି । ତଥା ସର୍ବଧର୍ମ ସମନ୍ୱୟର ପ୍ରତୀକ ।

ଶ୍ରୀସମ୍ପ୍ରଦାୟର ଏବେ ୧୮ଟି ମଠ ରହିଅଛି । ସେହି ମଠମାନଙ୍କ ମଧ୍ୟରେ ଏମାର ମଠ, ସର୍ବବୃହତ୍ ମଠ ଅଟେ । ଶ୍ରୀଜଗନ୍ନାଥଙ୍କୁ ସେ ଶ୍ରୀନାରାୟଣ ରୂପରେ ଦର୍ଶନ କରୁଥିଲେ । ସେ ବହୁତ ଶିଷ୍ୟ ସୃଷ୍ଟି କରିଥିଲେ । ଏପରିକି ତତ୍କାଳୀନ ଗଜପତି ମହାରାଜା ଚୋଳଗଙ୍ଗଦେବ ଓ ଭଞ୍ଜଦେଓ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ତାଙ୍କର ଶିଷ୍ୟମାନେ ତାଙ୍କୁ ମନ୍ନାଥ ବୋଲି ସମ୍ବୋଧନ କରୁଥିଲେ ।

## ଶ୍ରୀନିମ୍ବାର୍କାଚାର୍ଯ୍ୟ



ସନ୍ଥ ନିମ୍ବାର୍କାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ସେ ଥିଲେ ବୈଷ୍ଣବଧର୍ମର ଉପାସକ ଓ ସନକ ସମ୍ପ୍ରଦାୟର ପ୍ରତିଷ୍ଠାତା ଆଚାର୍ଯ୍ୟ । ଯେଉଁ କେତେଜଣ ଭକ୍ତ ଦ୍ୱାଦଶ ଶତାବ୍ଦୀରେ

ଜନ୍ମଲାଭ କରିଥିଲେ, ସେମାନଙ୍କ ମଧ୍ୟରେ ଶ୍ରୀନିମ୍ବାର୍କାଚାର୍ଯ୍ୟ ଥିଲେ ଅନ୍ୟତମ । ପ୍ରଥମେ ସେ ମଥୁରାରେ ବୈଷ୍ଣବଧର୍ମର ପ୍ରଚାର ଓ ପ୍ରସାର କରି ଜଣେ ପରମଭକ୍ତ ରୂପେ ନିଜର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ତତ୍‌ପରେ ଶ୍ରୀକ୍ଷେତ୍ରକୁ ଆସି ଶ୍ରୀଜଗନ୍ନାଥଙ୍କ ସାନିଧ୍ୟ ଲାଭ କରିଥିଲେ । ସେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମୟରେ ନିଜର ଉପାସ୍ୟ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ଅତ୍ୟନ୍ତ ବିମୋହିତ ହୋଇଯାଇଥିଲେ । ଶ୍ରୀରାଧାକୃଷ୍ଣଙ୍କ ପ୍ରେମରେ ବିହ୍ୱଳ ହୋଇ ନିଜକୁ ହଜାଇ ଦେଉଥିଲେ । ସନକ ସମ୍ପ୍ରଦାୟର ୫ଟି ମଠ ଏବେ ରହିଅଛି ।

## ଶ୍ରୀମଧ୍ୱାଚାର୍ଯ୍ୟ



ଶ୍ରୀମଧ୍ୱାଚାର୍ଯ୍ୟ ଥିଲେ ବୈଷ୍ଣବଧର୍ମ ଦ୍ୱୈତାଦ୍ୱୈତ୍ୟ ସମ୍ପ୍ରଦାୟର ଆଚାର୍ଯ୍ୟ । ଦ୍ୱାଦଶ ଶତାବ୍ଦୀରେ ସେ କର୍ଣ୍ଣାଟକର ଉଡ଼ୁପୀରେ ଜନ୍ମଗ୍ରହଣ କରିଥିଲେ । ପ୍ରସିଦ୍ଧ ସନ୍ଥ ବିଷ୍ଣୁପୁରୀଙ୍କର ସେ ଥିଲେ ପ୍ରଧାନ ଶିଷ୍ୟ । ଶ୍ରୀମନ୍ଦିରରେ ସେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଭାବବିହ୍ୱଳ ହୋଇଥିଲେ । ସେ ଶ୍ରୀକ୍ଷେତ୍ରରେ ଶ୍ରୀବଳଭଦ୍ର ଛତାମଠ ନାମରେ ଏକ ମଠ ପ୍ରତିଷ୍ଠା କରିଥିଲେ । ସେ ସେହି ମଠରେ ରହଣିକାଳ ମଧ୍ୟରେ "ଭକ୍ତ ରତ୍ନାବଳିଃ" ନାମକ ଏକ ପୁସ୍ତକ ରଚନା କରିଥିଲେ ।

## ଶ୍ରୀମାଧବେନ୍ଦ୍ର ପୁରୀ



ଶ୍ରୀମାଧବେନ୍ଦ୍ର ପୁରୀ ସମ୍ଭବତଃ ତ୍ରୟୋଦଶ ଶତାବ୍ଦୀରେ ବଙ୍ଗଳାରେ ଜନ୍ମଗ୍ରହଣ କରିଥିଲେ । ସେ ସନ୍ନ୍ୟାସୀ ବ୍ରତରେ ଦୀକ୍ଷିତ ହୋଇ ବୃନ୍ଦାବନରେ ଗୋପାଳଜୀଉଙ୍କ ପୂଜା ଆରାଧନା କରୁଥିଲେ ।

ପରେ ସେ ଶ୍ରୀକ୍ଷେତ୍ର ଆସି ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କଠାରେ ନିଜର ପ୍ରିୟବୃନ୍ଦାବନ ଚନ୍ଦ୍ରଙ୍କୁ ଦର୍ଶନ କରି ଭାବବିହ୍ୱଳିତ ହୋଇଥିଲେ । ସେ ଶ୍ରୀକ୍ଷେତ୍ରରେ ବଡ଼ଛତା ମଠଟି ପ୍ରତିଷ୍ଠା କରିଥିଲେ । ଏହି ମଠଟି ଗୌଡ଼ୀୟ ସମ୍ପ୍ରଦାୟ ମଠ ଅଟେ । ଏହି ମଠରେ ରହି ସେ ଶ୍ରୀଜଗନ୍ନାଥଙ୍କ ପୂଜାନୀତି ଓ ପରମ୍ପରା ଇତ୍ୟାଦି କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ତାଙ୍କର ଚାରି ଜଣ ପ୍ରଧାନ ଶିଷ୍ୟ ଥିଲେ । ସେମାନେ ହେଲେ (୧) ଇଶ୍ୱରପୁରୀ (୨) କେଶବ ଭାରତୀ (୩) ଅଦ୍ୱୈତ (୪) ନିତ୍ୟାନନ୍ଦ । ଶ୍ରୀଚୈତନ୍ୟ ଇଶ୍ୱରପୁରୀ ଓ କେଶବଭାରତୀଙ୍କ ଠାରୁ ଯଥାକ୍ରମେ ଦୀକ୍ଷା ଓ ସନ୍ନ୍ୟାସ ବ୍ରତ ଗ୍ରହଣ କରିଥିଲେ । ଶ୍ରୀଚୈତନ୍ୟଙ୍କର ସହୋଦର ଥିବା ନିତ୍ୟାନନ୍ଦ ଥିଲେ ମାଧବେନ୍ଦ୍ର ପୁରୀଙ୍କର ପ୍ରଧାନ ଶିଷ୍ୟ ।

## ଶ୍ରୀରାମାନନ୍ଦାଚାର୍ଯ୍ୟ



ଶ୍ରୀରାମାନନ୍ଦାଚାର୍ଯ୍ୟ ୧୨୯୯ ମସିହାରେ ପ୍ରୟାଗଠାରେ ଏକ କାନ୍ୟକୁବ୍ଜ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ପ୍ରଭୁ ଶ୍ରୀରାମଙ୍କ ପରମଭକ୍ତ । ସେ ଆଷାଢ଼ମାସ ଶୁକ୍ଳ ନବମୀ ଦିନ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଶ୍ରୀକ୍ଷେତ୍ର ଆସିଥିଲେ । ସେତେବେଳେ ରଥଯାତ୍ରା ସମୟ । ତେଣୁ ମହାପ୍ରଭୁମାନେ ଗୁଣ୍ଡିଚା ମନ୍ଦିର ରତ୍ନବେଦୀରେ ଥିଲେ । ସେଠାରେ ସେ ଶ୍ରୀଜଗନ୍ନାଥଙ୍କୁ ପ୍ରଭୁ ଶ୍ରୀରାମ ରୂପରେ ଦର୍ଶନ କରି ବିମୋହିତ ହୋଇଯାଇଥିଲେ । ରାମାନନ୍ଦଙ୍କ ପ୍ରଭାବରେ ଶ୍ରୀଜଗନ୍ନାଥଙ୍କ ମସ୍ତକରେ ରାମାନନ୍ଦୀ ଚିତା ଲଗାଯାଇଥିଲା । ଯାହାକି ଆଜିପର୍ଯ୍ୟନ୍ତ ତାହା ଲାଗୁଅଛି । ସେ ଶ୍ରୀକ୍ଷେତ୍ରରେ ବଡ଼ଆଖଡ଼ା ମଠ ଓ ବଳରାମ କୋଟ ସ୍ଥାପନ କରିଥିଲେ ।

# ସନ୍ଥ କବୀର




ସନ୍ଥ କବୀର ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ସେ ୧୩୮୯ ମସିହାରେ ବାରଣସୀର ଲହରତଲଓଠାରେ ଜନ୍ମଗ୍ରହଣ କରିଥିଲେ । ତତ୍କାଳୀନ ଶ୍ରୀକ୍ଷେତ୍ରରେ ଅନଙ୍ଗଭୀମ ଦେବ ରାଜାଥିଲେ । ସେତେବେଳେ ସମୁଦ୍ର କୂଳ ଲଂଘନ କରି ସିଂହଦ୍ୱାର ପର୍ଯ୍ୟନ୍ତ ଜଳ ପଳାଇ ଆସୁଥିଲା । ଏହାର ପ୍ରତିକାର ପାଇଁ ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ ମାଧ୍ୟମରେ ଗଜପତି ମହାରାଜା ଅନଙ୍ଗଭୀମ ଦେବଙ୍କୁ କହିଥିଲେ, ମୋର ପ୍ରିୟଭକ୍ତ କବୀରଙ୍କୁ ଏଠାକୁ ଆଣିଲେ, ସମୁଦ୍ର ଜଳରାଶି ସିଂହଦ୍ୱାରଠାରୁ ଅପସରି ଯିବ । ମହାରାଜ ବିଦ୍ୱାନ ପଣ୍ଡିତଙ୍କୁ ପଠାଇ ବରାଣସୀର କବୀରଙ୍କୁ ସମ୍ମାନସହ ଅଣାଇଥିଲେ । ସନ୍ଥ କବୀର ଶ୍ରୀକ୍ଷେତ୍ର ଆସି ପ୍ରଥମେ ଶ୍ରୀଜଗନ୍ନାଥଙ୍କ ନିକଟରେ ଧ୍ୟାନସ୍ଥ ହୋଇଥିଲେ । ଫଳରେ ସମୁଦ୍ରଜଳ ଅଧକୋଶ ପର୍ଯ୍ୟନ୍ତ ସିଂହଦ୍ୱାରଠାରୁ ଅପସରି ଯାଇଥିଲା । ସମୁଦ୍ର ତଟରେ କବୀର ଆଶାବାଡ଼ି ସ୍ଥାପନ କରି ଅବସ୍ଥାନ କରିଥିଲେ । ଯାହାକୁ ବର୍ତ୍ତମାନ କବୀର ଚଉରାମଠ ବୋଲି କୁହାଯାଉଅଛି । ଏହି ମଠରେ ଟଙ୍କତୋରାଣି ବିଧିଅଛି । ଏହି ତୋରାଣି ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦରୁ ପ୍ରସ୍ତୁତ ହୋଇଥାଏ ।

ଶ୍ରୀକ୍ଷେତ୍ର ବ୍ୟତୀତ କବୀରଙ୍କର ଅନ୍ୟ ଏକ ମଠ ବାରଣସୀଠାରେ ଅଛି । ନିର୍ଗୁଣ ପରଂବ୍ରହ୍ମବାଦୀ କବୀର ଥିଲେ ପ୍ରଭୁ ଶ୍ରୀରାମଙ୍କ ପରମ ଭକ୍ତ । କବୀର ଶ୍ରୀଜଗନ୍ନାଥଙ୍କୁ ପ୍ରଭୁ ଶ୍ରୀରାମ ରୂପରେ ପ୍ରାର୍ଥନା କରୁଥିଲେ ଓ ଦର୍ଶନ କରୁଥିଲେ । ସେ ପ୍ରତିଦିନ ଗୋଲ ଟୋପି ପିନ୍ଧି ମନ୍ଦିରକୁ ଯାଉଥିଲେ । ପ୍ରଥମ ଅବସ୍ଥାରେ ଶ୍ରୀମନ୍ଦିରର ପଣ୍ଡାମାନେ ଏହି ଟୋପି ପିନ୍ଧି ମନ୍ଦିର ଭିତକୁ ଯିବାପାଇଁ ବାରଣ କରିଥିଲେ । ତତ୍‌ପରେ ଦେଖାଗଲା ଯେ ମନ୍ଦିର ଭିତରେ ଥିବା ସମସ୍ତ ଭକ୍ତଙ୍କ ମୁଣ୍ଡରେ ଟୋପି ଲାଗିଅଛି, ଏହାଦେଖି ପଣ୍ଡାମାନେ କବୀରଙ୍କର ଗୂଢ଼ ରହସ୍ୟ ବୁଝି ମନ୍ଦିର ଭିତରକୁ ପ୍ରବେଶ କରାଇଥିଲେ । କବୀରଙ୍କର କେତେଗୁଡ଼ିଏ ଭକ୍ତିପ୍ରେମ ମୂଳକ ଭଜନ ଓ ଜଣାଣ ସମାଜରେ ଆଧ୍ୟାତ୍ମିକ ଚେତନା ଶକ୍ତି ସୃଷ୍ଟି କରିଛି । ଆଜି ମଧ୍ୟ ସେହି ଭଜନ ଓ ଜଣାଣ ପଢ଼ା ହେଉଅଛି ।

# ଶ୍ରୀମନ୍ତ ଶଙ୍କର ଦେବ




ଶ୍ରୀମନ୍ତ ଶଙ୍କରଦେବ ଶ୍ରୀରାମାନୁଜ, ଶ୍ରୀରାମାନନ୍ଦ, ଶ୍ରୀକବୀର, ଗୁରୁ ନାନକଙ୍କ ପରି ଜଣେ ସନ୍ଥ ଓ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ଥିଲେ । ଏକାଧାରରେ ସେ ଥିଲେ ସନ୍ଥ, ସମାଜ ସଂସ୍କାରକ, କବି, ସଂଗୀତଜ୍ଞ, ନାଟ୍ୟକାର, ଅଭିନେତା ତଥା ଚିତ୍ରଶିଳ୍ପୀ । ଏପରି ଜଣେ ବ୍ୟକ୍ତିତ୍ୱଧାରୀ ମହାପୁରୁଷ ୧୪୪୯ ଖ୍ରୀଷ୍ଟାବ୍ଦରେ ଆସାମର ନଗାଓଁ ଜିଲ୍ଲାରେ ବରଦୋୱା ଗ୍ରାମରେ ଆଶ୍ୱିନ ମାସ ଶୁକ୍ଳପକ୍ଷ ଦଶମୀ ତିଥିରେ ଜନ୍ମଗ୍ରହଣ କରିଥିଲେ । ଜନ୍ମର ଅଳ୍ପ କେତେଦିନ ପରେ ତାଙ୍କର ମାତା ସତ୍ୟସିନ୍ଧାଙ୍କର ମୃତ୍ୟୁ ହୋଇଥିଲା । ସେହିପରି ବାଲ୍ୟଅବସ୍ଥାରେ ପିତା କୁସୁମର ଭୂୟାଁଙ୍କୁ ହରାଇ ହୋଇଯାଇଥିଲେ ସେ ଅନାଥ । ତେଣୁ ତାଙ୍କର ବୁଢ଼ୀମା ଲାଳନପାଳନ କରିଥିଲେ । ସେ ସାତ ବର୍ଷଧରି ଗୁରୁ ମହେନ୍ଦ୍ର କନ୍ଦଳିଙ୍କ ଟୋଲରେ ବିଭିନ୍ନ ଶାସ୍ତ୍ର, ବେଦ, ପୁରାଣ, ବ୍ୟାକରଣ, ଜ୍ୟୋତିଷ, ଆୟୁର୍ବେଦ ଆଦି ଅଧ୍ୟୟନ କରି କୃତକାର୍ଯ୍ୟ ହୋଇଥିଲେ । ଶଙ୍କରଙ୍କର ପାଣ୍ଡିତ୍ୟ ଉପରେ ଅତ୍ୟନ୍ତ ପ୍ରୀତହୋଇ ଗୁରୁ ମହେନ୍ଦ୍ର କନ୍ଦଳି ତାଙ୍କ ନାମ ସହିତ "ଦେବ" ଶବ୍ଦ ସଂଯୋଗ କରିଥିଲେ । ତେଣୁ ସେ ଶଙ୍କର ଦେବ ନାମରେ ପରିଚିତ ହେଲେ ।

ସେ ଏକ ନବ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଥିଲେ । ଯାହାଥିଲା ଏକ ନୀତି ଧର୍ମଭିତ୍ତିକ ଉଦାର ବୈଷ୍ଣବ ଧର୍ମ । ଏହାକୁ ଏକ ଶରଣୀୟା ମହାପୁରୁଷୀୟ ଧର୍ମ କୁହାଯାଏ । ଆସାମରେ ଏହି ଧର୍ମ ବହୁଳ ଭାବରେ ପ୍ରଚାର ଓ ପ୍ରସାର ହେବା ଫଳରେ ଅନ୍ୟସବୁ ଧର୍ମ ପତନମୁଖୀ ହୋଇଥିଲା । ଏହି ଧର୍ମକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରି ଶଙ୍କରଦେବ ସରଳ ଭାବରେ ଶିଷ୍ୟମାନଙ୍କୁ ବୁଝାଉଥିଲେ । ଏହି ତିନୋଟି ପର୍ଯ୍ୟାୟ ହେଲା (୧) ସତ୍‌ସଙ୍ଗ (୨) ଏକମାତ୍ର ଶରଣନାମ ଧର୍ମରେ ଶ୍ରୀକୃଷ୍ଣଙ୍କ ପାଖରେ ଶରଣ ବା ଆଶ୍ରୟ (୩) କୀର୍ତ୍ତନ ବା ଭଜନ ମାଧ୍ୟମରେ ଏକ ନାମ ଧର୍ମରେ ଭଗବାନ ଶ୍ରୀକୃଷ୍ଣଙ୍କୁ ବା ଭାଗବତ ପୋଥିକୁ ପୂଜା କରିବା । ଏହା ଫଳରେ ଶ୍ରୀଶଙ୍କରଦେବ ଅଶେଷ ଶିଷ୍ୟ ସୃଷ୍ଟି କରିବା ସହ ଧର୍ମର ପ୍ରଚାର ଓ ପ୍ରସାର ଦ୍ରୁତ ଗତିରେ ବିକଶିତ ହୋଇଥିଲା । ଏହି ଧର୍ମରେ ଜାତି, ବର୍ଣ୍ଣ, ସାନ ଓ ବଡ଼ ଇତ୍ୟାଦିର ବାଛ ବିଚାର ନଥିଲା । ସେ କୁହନ୍ତି 'ଏକ

ଦେବ, ଏକ ସେବ, ଏକା ବିନେ ନାହିଁ ।' ସନ୍ଥକବି ଶଙ୍କର ଦେବ ଥିଲେ ଅହମିୟା ସାହିତ୍ୟର ବୈଷ୍ଣବୀୟ କାବ୍ୟଧାରାର ସ୍ରଷ୍ଟା । ସେ ପ୍ରାୟ ତିରିଶ ଗୋଟି କାବ୍ୟ ପୁସ୍ତକ ରଚନା କରିଥିଲେ । ତାଙ୍କର ପ୍ରମୁଖ ୨ ଜଣ ଶିଷ୍ୟ ଥିଲେ । ସେମାନେ ମଧ ଗୁରୁଙ୍କ ପରି ସୃଷ୍ଟି କରିପାରିଥିଲେ ପ୍ରଭୁ ଶ୍ରୀକୃଷ୍ଣ ପ୍ରେମ ରସାତ୍ମକ ସାହିତ୍ୟ । ଶଙ୍କରଦେବ ନିଜର ଅଗାଧପାଣ୍ଡିତ୍ୟ ଓ ପ୍ରଭୁ ଶ୍ରୀକୃଷ୍ଣଙ୍କ ଆଶୀର୍ବାଦ ବଳରେ ସମଗ୍ର ଭାରତରେ ମହାନ ଆଧ୍ୟାତ୍ମିକ ସନ୍ଥକବି ରୂପେ ଖ୍ୟାତି ଅର୍ଜନ କରିଥିଲେ ।

ଶଙ୍କରଦେବଙ୍କୁ ସାକ୍ଷାତ କରି ଓ ମୂଳ ସଂସ୍କୃତ ଭାଗବତ ବୋଲି ଶୁଣାଇବା ପାଇଁ ମିଥିଳାର ଜଗଦୀଶ ମିଶ୍ର ନାମକ ଜଣେ ପଣ୍ଡିତ ବ୍ରାହ୍ମଣ ଉତ୍ତର ବିହାରର ଶିରହଟରୁ ଆସିଥିଲେ । ସେହି ବ୍ରାହ୍ମଣ ଶଙ୍କରଦେବଙ୍କୁ କହିଥିଲେ, ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ପାଇ ମୁଁ ଆପଣଙ୍କୁ ସଂସ୍କୃତ ଭାଗବତ ପଢ଼ି ଶୁଣାଇବା ପାଇଁ ଆସିଅଛି । ଏହା ଶୁଣି ଶଙ୍କରଦେବ ଭାବବିହ୍ୱଳ ହୋଇ ଯାଇଥିଲେ ଓ ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କର ଭକ୍ତିଭାବ ଜାଗ୍ରତ ହୋଇଥିଲା । ସେ ଜଗଦୀଶ ମିଶ୍ରଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଶ୍ରୀଧର ସ୍ୱାମୀଙ୍କ 'ଭାବାର୍ଥ ଦୀପିକା' ଟୀକା ଅବଲମ୍ବନରେ ସଂସ୍କୃତ ଭାଗବତ ଅଧ୍ୟୟନ କରିଥିବା ଜଣାଯାଏ । ଶ୍ରୀଧର ସ୍ୱାମୀ ଓଡ଼ିଶାର ରେମୁଣା ଅଞ୍ଚଳର ଅଧିବାସୀ ଥିଲେ । ସେ ଶ୍ରୀଧର ସ୍ୱାମୀଙ୍କ ଟୀକା ଅବଲମ୍ବନରେ ଅହମିୟା ଭାଷାରେ ଭାଗବତ ରଚନା କରିବାରେ ସମର୍ଥ ହୋଇଥିଲେ ।

ଶଙ୍କର ଦେବ ୨୧ବର୍ଷ ବୟସରେ ସୂର୍ଯ୍ୟବତୀ ନାମକ ଏକ କନ୍ୟାଙ୍କୁ ବିବାହ କରିଥିଲେ । କିନ୍ତୁ ସୂର୍ଯ୍ୟବତୀ ଗୋଟିଏ କନ୍ୟାକୁ ଜନ୍ମଦେଇ ମୃତ୍ୟୁବରଣ କରିଥିଲେ । ସୂର୍ଯ୍ୟବତୀଙ୍କ ମୃତ୍ୟୁରେ ଶଙ୍କରଦେବଙ୍କ ମନରେ ବୈରାଗ୍ୟ ଭାବ ଜାଗ୍ରତ ହୋଇଥିଲା । ତେଣୁ ସେ ଅଳ୍ପ ବୟସରେ କନ୍ୟାକୁ ବିବାହ କରିଦେଇ ତୀର୍ଥ ଭ୍ରମଣରେ ଯାତ୍ରା କରିଥିଲେ । ଭାରତରେ ଥିବା ଶ୍ରେଷ୍ଠ ତୀର୍ଥସ୍ଥାନ ଯଥା : କାଶୀ, ବୃନ୍ଦାବନ, ମଥୁରା, ବନାରସ, ଶ୍ରୀକ୍ଷେତ୍ର, ଗୟା, ଦ୍ୱାରିକାଧାମ, ଅଯୋଧ୍ୟା, ବଦ୍ରିନାଥ, ପ୍ରୟାଗ, ସୀତାକୁଣ୍ଡ ଇତ୍ୟାଦି । ସବୁଠାରୁ ଅଧିକ ସମୟ ସେ ଶ୍ରୀକ୍ଷେତ୍ରରେ ରହିଥିଲେ । ସେ ଦୁଇଥର ଶ୍ରୀକ୍ଷେତ୍ର ଆସିଥିବାର ଅହମିୟା ଗୁରୁଚରିତ ପୁସ୍ତକରେ ଲେଖାଅଛି । ବିଶିଷ୍ଟ ଲେଖକ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଲିଖିତ ଶଙ୍କର ଦେବଙ୍କର ପୁରୀ ଶ୍ରୀଜଗନ୍ନାଥଙ୍କ ସହିତ ନିବିଡ଼ ସମ୍ପର୍କ ଥିଲା । ସେ ୩୨ବର୍ଷ ବୟସରେ ଶ୍ରୀକ୍ଷେତ୍ର ଆସି ପ୍ରାୟ ୮/୧୦ବର୍ଷ ରହିଥିଲେ । ଆଉଥରେ ୮୦ବର୍ଷ ବୟସରେ ଆସି ପ୍ରାୟ ଅଢ଼େଇମାସ ରହିଥିଲେ । ଆସାମର ଗବେଷକ ସଂଜୀବ କୁମାର କୋରିକ କୋଟିଙ୍କ ଲେଖାରୁ ଜଣାଯାଏ, ଭଗବାନ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ପରେ ଶ୍ରୀମନ୍ଦିରର ପୂଜାପଣ୍ଡାମାନେ ଶଙ୍କରଦେବଙ୍କୁ ଅଠରନଳାଠାରୁ ସମ୍ବର୍ଦ୍ଧନା ସହ ଶ୍ରୀମନ୍ଦିରକୁ ପାଛୋଟି ନେଇଥିଲେ । ସେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପରେ ପରେ ମନରେ

ଶତଗୁଣ ଭକ୍ତିଭାବ ଜାଗ୍ରତ ହେବା ସହ ଜୀବନଟି ମୋକ୍ଷ ହୋଇଗଲା ପରି ଅନୁଭବ କରିଥିଲେ । ତାଙ୍କର ଆଧ୍ୟାତ୍ମିକ ଜ୍ଞାନରେ ମୁଗ୍ଧ ହୋଇ ୧୨ଜଣ ପୂଜାପଣ୍ଡା ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ଶ୍ରୀଶଙ୍କରଦେବ ଶ୍ରୀମନ୍ଦିରରେ ପ୍ରଥମ ରହଣି ମଧ୍ୟରେ 'ଉରେଷା ବର୍ଣ୍ଣନ' (ଓଡ଼ିଶା ବର୍ଣ୍ଣନ) ନାମକ ଏକ ବହି ୨୧ଟି ଅଧ୍ୟାୟକୁ ନେଇ ଲେଖିଥିଲେ । ୨୧ଟି ଅଧ୍ୟାୟରେ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ, ମନ୍ଦିର ଗଠନ, ପରିଚାଳନା, ଭୋଗସାମଗ୍ରୀ, ସେବାନୀତି, ମେଳାମହୋତ୍ସବ, ସଂସ୍କୃତି ଓ ପରମ୍ପରା ଇତ୍ୟାଦି ଉଲ୍ଲେଖ ହୋଇଅଛି । ଏହା ଆଜି ଆସାମ ବୈଷ୍ଣବ ସାହିତ୍ୟରେ ଏକ ଉପାଦେୟ ଗ୍ରନ୍ଥ ଅଟେ । ଆଉ ମଧ୍ୟ ଜଗଦୀଶ ମିଶ୍ରଙ୍କର ଭାଗବତ ଟୀକାଦ୍ୱାରା ପ୍ରଭାବିତ ହୋଇ ଶ୍ରୀଶଙ୍କରଦେବ ଆସାମରେ 'ନାମଘର' ପ୍ରତିଷ୍ଠା କରିଥିଲେ ।

ଶଙ୍କର ଦେବଙ୍କ ମନରେ ଏକ ଭ୍ରାନ୍ତ ଧାରଣା ଥିଲା ଯେ, ଶ୍ରୀକୃଷ୍ଣଙ୍କ ବ୍ୟତୀତ ଅନ୍ୟ ଦେବ ଦେବୀଙ୍କ ପ୍ରସାଦ ସେବନକଲେ ଭକ୍ତିର ଅବମାନନା ହେବ । ତେଣୁ ସେ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସେବନ କରୁନଥିଲେ । କିନ୍ତୁ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ମାଧ୍ୟମରେ ତାଙ୍କର ସେହି ଭ୍ରାନ୍ତ ଧାରଣା ଦୂର ହୋଇଥିଲା ଓ ସେ ମହାପ୍ରସାଦ ସେବନ କରିଥିଲେ । ଯିଏ ଶ୍ରୀକୃଷ୍ଣ, ସେ ଶ୍ରୀଜଗନ୍ନାଥ ଓ ସେ ପ୍ରଭୁ ଶ୍ରୀରାମ ବୋଲି ତାଙ୍କର ବିଶ୍ୱାସ ହେଲା । ଶଙ୍କରଦେବ ଓଡ଼ିଶା ଓ ଆସାମ ମଧ୍ୟରେ ଥିବା ସାଂସ୍କୃତିକ, ସାମାଜିକ, ଓ ଆଧ୍ୟାତ୍ମିକ ପରିବେଶରେ ଏକ ସେତୁ ନିର୍ମାଣ କରି ଚିରସ୍ମରଣୀୟ ହୋଇଛନ୍ତି । ୧୫୬୮ ମସିହାରେ ପ୍ରାୟ ୧୨୦ବର୍ଷ ବୟସରେ ଶ୍ରୀଶଙ୍କରଦେବଙ୍କର ମହାପ୍ରୟାଣ ହୋଇଥିଲା ।

## ଗୁରୁ ନାନକ



ଗୁରୁ ନାନକ ଥିଲେ ଶିଖ ଧର୍ମର ପ୍ରଧାନ ପ୍ରବର୍ତ୍ତକ । ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ତଥା ୧୫୦୮ ମସିହାରେ ସେ ତାଙ୍କର ଦୁଇଜଣ ପ୍ରମୁଖ ହିନ୍ଦୁ ଓ ମୁସଲମାନ ଶିଷ୍ୟ ବଲ ଓ

ମର୍ଦ୍ଦନାଙ୍କ ସହ ଶ୍ରୀକ୍ଷେତ୍ରସ୍ଥିତ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନକରିବାକୁ ଆସିଥିଲେ । ସେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଯିବା ଅବସରରେ ସିଂହଦ୍ୱାରଠାରେ କେତେଜଣ ବେତ୍ରାକାର ପଣ୍ଡା ପ୍ରବେଶ କରିବାକୁ ବିରୋଧ କରିଥିଲେ । କାରଣ ଯଦିଓ ସେ ହିନ୍ଦୁଥିଲେ, କିନ୍ତୁ ତାଙ୍କର ବେଶଭୂଷା ଓ ଚାଲିଚଳନ ମୁସଲମାନ ପରି ଦେଖାଯାଉଥିଲା । ଏଥିରେ ସେ ଅତ୍ୟନ୍ତ ମର୍ମାହତ ହୋଇ ଦୁଇହାତ ପଛକୁ ଆସି ସେଠାରେ ଧ୍ୟାନମଗ୍ନ ହୋଇବସିପଡ଼ିଲେ । ତାଙ୍କର ଧ୍ୟାନମଗ୍ନରେ ଶ୍ରୀଜଗନ୍ନାଥ ରତ୍ନସିଂହାସନରେ ବ୍ୟସ୍ତବିବ୍ରତ ହୋଇପଡ଼ିଲେ । କିଛି ସମୟପରେ ନାନକଙ୍କ ହସ୍ତରେ ଶ୍ରୀମନ୍ଦିର ଚୂଡ଼ାରୁ ଏକ ଦିବ୍ୟ ଜାଜ୍ୱଲ୍ୟମାନ ଜ୍ୟୋତି ଖସି ପଡ଼ିଲା । ସେଠାରେ ଉପସ୍ଥିତ ଥିବା ସମସ୍ତ ସେବାୟତ ଓ ଶ୍ରଦ୍ଧାଳୁ ଭକ୍ତଗଣ ଏହା ଦେଖି ବିସ୍ମିତ ହୋଇପଡ଼ିଲେ । ଅନ୍ୟଗୋଟିଏ କିମ୍ବଦନ୍ତୀରୁ ଜଣାଯାଏ, ଥରେ ନାନକ ସମୁଦ୍ର କୂଳରେ ରହି, ତାଙ୍କ ମୁସଲମାନ ଶିଷ୍ୟ ମର୍ଦ୍ଦନାଙ୍କୁ ଶ୍ରୀମନ୍ଦିରରୁ ମହାପ୍ରସାଦ ଆଣିବାକୁ ଆଦେଶ ଦେଇଥିଲେ । ମର୍ଦ୍ଦନା ଜାତିରେ ମୁସଲମାନ ହୋଇଥିବାରୁ ତାଙ୍କୁ ପଣ୍ଡାମାନେ ଶ୍ରୀମନ୍ଦିର ଭିତରକୁ ଯିବାପାଇଁ ବିରୋଧ କରିଥିଲେ । ଅପମାନିତ ଓ କ୍ଷୁଧାର୍ତ୍ତ ମର୍ଦ୍ଦନା ଏହି କଥା ଗୁରୁ ନାନକଙ୍କୁ ଜଣାଇଥିଲେ, ଶିଷ୍ୟଠାରୁ ଶୁଣି, ନାନକ ସେଠାରେ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା ମାଧ୍ୟମରେ ଜଣାଇଥିଲେ । କିଛି ସମୟପରେ ଶ୍ରୀମନ୍ଦିରରେ ଆଳତୀ ହେଉଥିବା ସମସ୍ତ ଥାଳିସହ ସମସ୍ତ ସାମଗ୍ରୀ ସମୁଦ୍ର କୂଳରେ ଜପରେ ବସିଥିବା ନାନକଙ୍କ ହସ୍ତରେ ବିଦ୍ୟମାନ ହୋଇଥିଲା । ଏହା ଦେଖି ଗଜପତି ମହାରାଜା, ସାଧୁସନ୍ଥ ଓ ପୂଜାପଣ୍ଡାମାନେ ନାନକଙ୍କ ପାଖକୁ ଆସି କ୍ଷମା ପ୍ରାର୍ଥନା ମାଗିବା ସହ ସମ୍ମାନିତ କରିଥିଲେ । ନାନକ ରାଜାଙ୍କୁ କହିଥିଲେ ଶ୍ରୀଜଗନ୍ନାଥ କେବଳ ହିନ୍ଦୁଧର୍ମର ଆରାଧ୍ୟ ଦେବତା ନୁହଁନ୍ତି, ସେ ଅଟନ୍ତି ସର୍ବଧର୍ମର ଦେବତା । ଆଶ୍ଚର୍ଯ୍ୟର କଥା ମହାରାଜା ଓ ପଣ୍ଡାମାନେ ନାନକଙ୍କ ହସ୍ତର ପାପୁଲିରେ ତିନି ଠାକୁରଙ୍କୁ ଦର୍ଶନ କରିଥିଲେ । ନାନକ ଯେଉଁ ସ୍ଥାନରେ ରହୁଥିଲେ, ସେହି ପୀଠଟି ବାଉଳି ମଠ ରୂପେ ପରିଚିତ । ସେଠାରେ ଗୁରୁଗ୍ରନ୍ଥ ସାହେବର ଗାଦି ରହିଅଛି । ଶ୍ରୀବଳଭଦ୍ର ଓ ମା'ଲକ୍ଷ୍ମୀଙ୍କ ସ୍ମୃତି ପାଇଁ ଏଠାରେ ଏକ କୂଅ ପ୍ରତୀୟମାନ । ତାହାକୁ ଭାଇ-ବୋହୂ କୂଅ କୁହାଯାଏ । ସେ ଶ୍ରୀକ୍ଷେତ୍ରରେ ରହଣିକାଳ ମଧ୍ୟରେ ଶ୍ରୀଚୈତନ୍ୟଙ୍କ ସହ ସାକ୍ଷାତ ହୋଇଥିଲା । ସେ ଶ୍ରୀଚୈତନ୍ୟଙ୍କ ସଂକୀର୍ତ୍ତନରେ ମଧ୍ୟ ଯୋଗ ଦେଉଥିଲେ । ସେ ଶ୍ରୀକ୍ଷେତ୍ରର ବିଦ୍ୱାନ ମଣ୍ଡଳୀଙ୍କ ସହ ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତି ସମ୍ପର୍କରେ ଆଲୋଚନା କରୁଥିଲେ ।

## ଶ୍ରୀଗଣପତି ଭଟ୍ଟ

ଅନେକ ଶହ ବର୍ଷ ତଳର କଥା । କର୍ଣ୍ଣାଟ ଦେଶର କାଣିଆରି ଗ୍ରାମରେ ଗଣପତି ଭଟ୍ଟ ନାମରେ ଏକ ବ୍ରାହ୍ମଣ ବାସ କରୁଥିଲେ । ସେ ଥିଲେ ଦାନୀ, ଧର୍ମପରାୟଣ, ସାଧୁ ଓ ସରଳ

ପ୍ରକୃତିର ମାନବ । ସଦା ସର୍ବଦା ସେ ଭଗବାନଙ୍କ ଉପରେ ବିଶ୍ୱାସ ରଖି ଘର ସଂସାର, ଲୋଭ, ମାୟା ଇତ୍ୟାଦି ଭୁଲି ଯାଉଥିଲେ । ଭିକ୍ଷାବୃତ୍ତି କରି ପେଟ ପୋଷିବା ଓ ଭଗବାନଙ୍କୁ ଡାକିବା ବ୍ୟତୀତ ତାଙ୍କର ଅନ୍ୟକିଛି କାର୍ଯ୍ୟ ନଥିଲା । ବେଳେବେଳେ ଉପବାସ ରହନ୍ତି ସିନା କିନ୍ତୁ ଭଗବାନଙ୍କ ନାମ ସ୍ମରଣକୁ ଭୁଲନ୍ତି ନାହିଁ । ଏପରିକି ଶୟନେ, ସ୍ୱପନେ, ଜାଗରଣେ ତାଙ୍କର ଥିଲା ଭଗବାନଙ୍କ ନାମ ସ୍ମରଣ କରିବା । ଏଥି ସହିତ ସେ ବିଭିନ୍ନ ପ୍ରକାର ଧର୍ମପୁରାଣ ଓ ଶାସ୍ତ୍ର ଅଧ୍ୟୟନ କରି ଭଗବାନ (ଶ୍ରୀବିଷ୍ଣୁ)ଙ୍କ ସମ୍ପର୍କରେ ଜ୍ଞାନ ଆହରଣ କରିବାରେ ସମୟ ଅତିବାହିତ କରୁଥିଲେ । ଫଳରେ ସେ ଅଧିକରୁ ଅଧିକ ଭଗବାନଙ୍କ ସମ୍ପର୍କରେ ଜ୍ଞାନ ଆହରଣ କରିବାକୁ ମନ ବଳାଇଲେ । ଥରେ ସେ ବ୍ରହ୍ମ ପୁରାଣ ପଢ଼ିବା ସମୟରେ ପରମ ଜ୍ୟୋତି ପରଂବ୍ରହ୍ମ ସତ୍ତାକୁ ଖୋଜି ପାଇଲେ । ସେଥିରେ ସେ ଦେଖିବାକୁ ପାଇଲେ ଶ୍ରୀକ୍ଷେତ୍ରସ୍ଥିତ ନୀଳାଚଳ ଧାମରେ ଜୀବ ମୁକ୍ତି ପାଏ । କାରଣ ସକଳ ଦେବତାମାନଙ୍କ ମଧ୍ୟରେ ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବଶ୍ରେଷ୍ଠ । ଏକାଧାରରେ ପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ସୃଷ୍ଟି, ସ୍ଥିତି ଓ ପ୍ରଳୟର ମୂଳ ଉତ୍ସ । ସମସ୍ତ ଜୀବଜଗତଠାରୁ ଆରମ୍ଭ କରି ପାହାଡ଼, ପର୍ବତ, ମେରୁ, ପାରାବାର, ବସୁଧା, ସ୍ଥାବର, ଜଙ୍ଗମ ଇତ୍ୟାଦି ତାଙ୍କର ସୃଷ୍ଟି । ଏପରିକି ସ୍ୱର୍ଗର ଦେବତାଗଣ ତାଙ୍କୁ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ଅପେକ୍ଷା ରତ । ତେଣୁ ଭକ୍ତ ଗଣପତି ଭଟ୍ଟ ଇଚ୍ଛାମୟ, ଲୀଳାମୟ, କରୁଣାମୟ, ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ମୋକ୍ଷ ଲାଭ ପାଇଁ ଇଚ୍ଛା ପ୍ରକଟ କଲେ ।

ସେ ସମସ୍ତ ପ୍ରକାର ଲୋଭ, ମାୟା, ଆସକ୍ତି ଓ ମମତାକୁ ତ୍ୟାଗ କରି ଜୀବନକୁ ସାର୍ଥକ କରିବା ଉଦ୍ଦେଶ୍ୟରେ କାଖରେ ବ୍ରହ୍ମ ପୁରାଣକୁ ରଖି ବଣ, ଜଙ୍ଗଲ, ପାହାଡ଼ପର୍ବତ, ନଦୀନାଳ ଓ କଣ୍ଟାବୁଦାକୁ ଭୃକ୍ଷେପ ନକରି ଶ୍ରୀକ୍ଷେତ୍ରକୁ ପଦଯାତ୍ରା କରିଥିଲେ । ଶ୍ରୀଜଗନ୍ନାଥଙ୍କ ନାମ ଜପି ଜପି ଅନେକ ଦିନ ପରେ ପୁରୀର ଅଠରନଳାଠାରେ ପହଞ୍ଚିଥିଲେ । ଏହି ସ୍ଥାନଟି ଏକ ମହାନ ଓ ପବିତ୍ର ଅଟେ । କାରଣ ଏହି ସ୍ଥାନରେ ପାଦ ଦେଲେ ଯମଦଣ୍ଡକୁ ଭୟ ନ'ଥାଏ ବୋଲି ଗଣପତି ପୁରାଣରୁ ପଢ଼ିଥିଲେ । ସେଠାରେ ବସି ଦେଖିଲେ ଯେ ଦଳ ଦଳ ଭକ୍ତ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ସ୍ୱଗୃହକୁ ଫେରୁଛନ୍ତି । ଏହା ଦେଖି ତାଙ୍କ ମନରେ ଶ୍ରୀଜଗନ୍ନାଥଙ୍କ ପ୍ରତି ଭାବାନ୍ତର ସୃଷ୍ଟି ହେଲା । କାରଣ ତାଙ୍କ ମନରେ ଧାରଣା ଥିଲା, ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ପରେ କୌଣସି ଭକ୍ତ ଘରକୁ ଫେରନ୍ତି ନାହିଁ । ତେଣୁ ସେ ବହୁ କଷ୍ଟ ସ୍ୱୀକାର କରି କର୍ଣ୍ଣାଟରୁ ଆସିଥିବାର ଫଳ ବୃଥା ହେଲା । ପୁନରାୟ କର୍ଣ୍ଣାଟକୁ ନ'ଯାଇ ଓ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ନ'କରି ଏଠାରେ ବସି ବସି ଏହି ପ୍ରାଣ ତ୍ୟାଗ କରିବେ ବୋଲି ସ୍ଥିର କଲେ । ଭକ୍ତର ଦୁଃଖରେ ଭଗବାନ ବନ୍ଧା । ଗଣପତିଙ୍କର ଦୁଃଖ ଶ୍ରୀଜଗନ୍ନାଥଙ୍କୁ ଅଛପା ରହିଲା ନାହିଁ । ତେଣୁ ପ୍ରଭୁ ଶ୍ରୀଜଗନ୍ନାଥ ଏକ ବ୍ରାହ୍ମଣ ବେଶ ଧାରଣ କରି ଭକ୍ତ ଗଣପତିଙ୍କ ନିକଟରେ ପହଞ୍ଚିଲେ । ବ୍ରାହ୍ମଣ ବେଶଧାରୀ ପ୍ରଭୁ ଶ୍ରୀଜଗନ୍ନାଥ ଗଣପତିଙ୍କଠାରୁ ସମସ୍ତ ବିଷୟ ଶୁଣି କହିଲେ, ହେ ବତ୍ସ । ତୁମ ମନରେ

ଯେଉଁ ଭ୍ରାନ୍ତ ଧାରଣା ଅଛି ତାହା ସତ୍ୟ ନୁହେଁ । କାରଣ ଭକ୍ତି ଭାବରେ ଭକ୍ତ ଶ୍ରୀଜଗନ୍ନାଥଙ୍କୁ ଯାହା ମାଗେ, ପ୍ରଭୁ ତା'ଙ୍କୁ ତାହା ଦେଇଥାନ୍ତି । ଯେଉଁଭକ୍ତମାନେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଫେରୁଛନ୍ତି, ସେମାନେ ଯାହା ମାଗିଥିଲେ ତାହା ସବୁ ନେଇ ସ୍ୱଗୃହକୁ ଫେରୁଛନ୍ତି । ପ୍ରକାଶ ଥାଉକି କିଏ ପୁଅ ମାଗିଛି ତ କିଏ ଝିଅ ପାଇଁ ଉତ୍ତମ ବର ମାଗିଛି, ସେମାନେ ତାହା ନେଇ ଯାଉଛନ୍ତି । କିନ୍ତୁ ଯିଏ ମୁକ୍ତିକାମନା କରି ଏଠାକୁ ଆସିଥିବେ, ସେମାନେ ମୁକ୍ତି ପାଇ ମୋକ୍ଷ ହୋଇଯିବେ । ଏଥିରେ ସନ୍ଦେହ ନାହିଁ । ହେ ଭକ୍ତ ! ବୃଦ୍ଧ ବ୍ରାହ୍ମଣ, ତୁମ ମନର ଭ୍ରାନ୍ତ ଧାରଣା ଦୂରକରି ଭକ୍ତିପୂତ ଭାବରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଜୀବନଟି ସାର୍ଥକ କର । ବ୍ରହ୍ମପୁରାଣରେ ତୁମେ ଯାହା ପଢ଼ିଛ ତାହା ସତ୍ୟ । ବ୍ରାହ୍ମଣଙ୍କ କଥା ଶୁଣି ଭକ୍ତ ଗଣପତି ପ୍ରକୃତିସ୍ଥ ହୋଇ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରବା ପାଇଁ ମନ ବଳାଇଲେ ।

ଯେଉଁଦିନ ଭକ୍ତ ଗଣପତି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥିଲେ ସେଦିନ ଥିଲା ପବିତ୍ର ଦେବସ୍ନାନ ପୂର୍ଣ୍ଣମୀ । ଏହି ଦିନ ସଂସାରଜନଙ୍କୁ ପାପ ରୂପକ ପଙ୍କରୁ ମୁକ୍ତି କରିବା ପାଇଁ ତିନିଠାକୁର ରତ୍ନସିଂହାସନ ପରିତ୍ୟାଗ କରି ସ୍ନାନମଣ୍ଡପରେ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ଦର୍ଶନାଭିଳାଷୀ ଲକ୍ଷ ଲକ୍ଷ ଭକ୍ତଙ୍କ ଗହଣରେ ସେବାୟତମାନେ ୧୦୮ଗରା ସଂସ୍କାର ପବିତ୍ର ଜଳରେ ଶ୍ରୀଜୀଉମାନଙ୍କୁ ସ୍ନାନ ମଣ୍ଡପରେ ସ୍ନାନ କରାଉଥିବା ବେଳେ ଭକ୍ତ ଗଣପତି ଭଟ୍ଟ ଶ୍ରୀମନ୍ଦିରରେ ପ୍ରବେଶ କରିଥିଲେ । ଶ୍ରୀଜଗନ୍ନାଥଙ୍କୁ ସ୍ନାନ ମଣ୍ଡପରେ ଦର୍ଶନ କରିବା ଅବସରରେ ତାଙ୍କ ମନରେ ପୁନରାୟ ଭାବାନ୍ତର ସୃଷ୍ଟି ହୋଇଥିଲା । କାରଣ ବ୍ରହ୍ମ ପୁରାଣରେ ଲିଖିତ ଥିବା ଅନୁସାରେ ପ୍ରଭୁଙ୍କର ଗଜବଦନ ଦେଖିବାକୁ ପାଇଲେ ନାହିଁ । ତେଣୁ ଶ୍ରୀଜଗନ୍ନାଥ କେବେ ହେଲେ ବ୍ରହ୍ମ ନୁହନ୍ତି । ଏହା ଭାବି ଶ୍ରୀଜଗନ୍ନାଥଙ୍କୁ ପ୍ରଣିପାତ ନ'କରି ଅଭିମାନ କରି ଫେରିଆସିଲେ । ଭକ୍ତ ଗଣପତି ଭଟ୍ଟଙ୍କ ମନର ଦୁଃଖ ଶ୍ରୀଜଗନ୍ନାଥ ଜାଣିପାରି, ମୁଦିରଥ ସେବାୟତଙ୍କୁ ସ୍ୱପ୍ନାଦେଶ ମାଧ୍ୟମରେ କହିଲେ, ମୋର ପରମଭକ୍ତ ଗଣପତି ସୁଦୂର କର୍ଣ୍ଣାଟରୁ ଆସି ଅଭିମାନରେ ପଳାଇ ଯାଉଛି । ତାଙ୍କୁ ତୁରନ୍ତ ଫେରାଇ ଆଣ । ମୁଦିରଥ ଗଣପତିଙ୍କୁ ବୁଝାଇ ପ୍ରଭୁଙ୍କ ଦର୍ଶନ କରିବା ପାଇଁ କୁହନ୍ତେ, ଗଣପତି ରାଗ ଜର୍ଜରିତ ହୋଇ ଉଚ୍ଚ ସ୍ୱରରେ କହିଲେ, ବ୍ରହ୍ମ, ବ୍ରହ୍ମ ସବୁ ମିଛ । ଯାହାର ଗଜବଦନ ଓ ଶୁଣ୍ଢ ନାହିଁ, ସେ କି'ବ୍ରହ୍ମ ? ତାହା ସବୁ ତୁଚ୍ଛ ମିଥ୍ୟା ମିଥ୍ୟା ମିଥ୍ୟା । ମୁଦିରଥ କହିଲେ, ହେ ! ଭକ୍ତଶ୍ରେଷ୍ଠ ଗଣପତି, ସେ ସବୁଠାରେ ଓ ସବୁପ୍ରକାରରେ ଅଛନ୍ତି । କିନ୍ତୁ ତୁମେ ମାୟାରେ ତାଙ୍କୁ ଦେଖିପାରୁନାହିଁ । ମାୟାଜାଲରେ ଛନ୍ଦିହୋଇ ତୁମର ମତିଭ୍ରମ ହେଲାଣି । ଆଉଥରେ ଯାଇ ତାଙ୍କୁ ଦର୍ଶନ କର, ତାଙ୍କର ଗଜବଦନ ମୁଖ ଦର୍ଶନ କରିବ । ମୁଦିରଥ କଥାକୁ ସମ୍ମାନ ଜଣାଇ ଅଶ୍ରୁଭରା ନୟନରେ ଖୋଲା ମନରେ ପ୍ରଭୁଙ୍କୁ ଦର୍ଶନ କରିବା ଅବସରରେ, ସେ ପ୍ରଭୁଙ୍କୁ ଗଜବଦନ ବେଶରେ ଦର୍ଶନ କରିଥିଲେ । ଶ୍ରୀଜଗନ୍ନାଥଙ୍କୁ କଟୁବାକ୍ୟରେ ତାଚ୍ଛଲ୍ୟକରି କହିଥିବା ଭାବି, ନିଜକୁ ଏକ ମହାପାପୀ ବୋଲି ଭାବିଥିଲେ । ପ୍ରଭୁଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ଶତ ସହସ୍ର ଥର କ୍ଷମା ମାଗିଥିଲେ ।

ସମ୍ବୋଧନ କରି ପ୍ରଭୁଙ୍କୁ କହିଥିଲେ, ହେ ବାଞ୍ଛାନିଧି, ବଳିଆରଭୂଜ, ଚକାଡୋଳା ଜଗତରନାଥ ଶ୍ରୀଜଗନ୍ନାଥ । ମୁଁ ମାୟାରେ ପଡ଼ି ଅନ୍ଧହୋଇ ତୁମକୁ ଜାଣିପାରିଲି ନାହିଁ । ମୋ ପରି ଜଣେ ଗଣ୍ଡମୂର୍ଖ, ମହାପାପୀ ଓ ପାଷାଣ ହୃଦୟକୁ ମୋକ୍ଷ କରି ଆପଣଙ୍କ ହୃଦୟରେ ସ୍ଥାନ ଦିଅ । ମୁଁ ଯେପରି ଏପରି ଭୁଲ ନ'କରିବି ଓ ଅନ୍ୟକେହି ଯେପରି ଏପରି ଭୁଲ ନ'କରନ୍ତି, ଏଥିପାଇଁ କ୍ଷମାପ୍ରାର୍ଥନା ମାଗୁଅଛି ।

ଏହା କହୁ କହୁ ଭକ୍ତ ଗଣପତି ବ୍ରହ୍ମ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । ସେଠାରେ ଉପସ୍ଥିତ ଥିବା ସମସ୍ତ ଭକ୍ତ, ସାଧୁ ସନ୍ଥ ସେବାୟତ ଏପରିକି ଗଜପତି ମହାରାଜା ଗଣପତିଙ୍କୁ ଧନ୍ୟ ଧନ୍ୟ କହିବା ସହ ଜୟଗାନ କଲେ । ସେହିଦିନଠାରୁ ପ୍ରତିବର୍ଷ ଦେବସ୍ନାନ ପୂର୍ଣ୍ଣମୀରେ ସ୍ନାନ ମଣ୍ଡପରେ ଶ୍ରୀଜଗନ୍ନାଥଙ୍କୁ ଗଜବେଶ କରାଯାଉଅଛି । ଭକ୍ତର ଭାବରେ ବନ୍ଧା ପ୍ରଭୁ ଭାବଗ୍ରାହୀ । ଭାଗବତରେ ଉଲ୍ଲେଖ :- "ଭକ୍ତ ହିଁ ଭଗବାନ" ।

## ଶ୍ରୀ ଚୈତନ୍ୟ ଦେବ



ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କ ପୀଠରେ ଯେଉଁ ବୈଷ୍ଣବ ଧର୍ମାବଲମ୍ବୀମାନଙ୍କର ମିଳନ ସଙ୍ଗେ ସଙ୍ଗେ ଉତ୍କଳରେ ସଂକୀର୍ତ୍ତନ ମାଧ୍ୟମରେ ଭକ୍ତି ଆନ୍ଦୋଳନର ସୂତ୍ରପାତ ହୋଇଥିଲା, ତା'ର ପୃଷ୍ଠପୋଷକ ଥିଲେ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଶ୍ରୀଚୈତନ୍ୟ ଦେବ । ଶ୍ରୀଜଗନ୍ନାଥଙ୍କ ଭକ୍ତମାନଙ୍କ ମଧ୍ୟରେ ସେ ଥିଲେ ସ୍ୱତନ୍ତ୍ର । ଦେବପୁରୀ ଶ୍ରୀପୁରୁଷୋତ୍ତମ ଧାମ ତାଙ୍କର ଥିଲା ଭକ୍ତିଭାବ ପ୍ରବର୍ତ୍ତନର ଶ୍ରେଷ୍ଠପୀଠ । ସେ ୧୪୮୬ ମସିହା ଦୋଳପୂର୍ଣ୍ଣମୀରେ ପଶ୍ଚିମବଙ୍ଗର ନଦିଆ ମାୟାପୁରୀଠାରେ ଜନ୍ମଗ୍ରହଣ କରିଥିଲେ । ଭଗବତ୍ ପାଦ ଥିଲେ ତାଙ୍କର ଗୁରୁ । ତାଙ୍କଠାରୁ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିବା ପରେ ୧୫୦୯ ମସିହାରେ ସଚୀ ମାତାଙ୍କ ନିର୍ଦ୍ଦେଶରେ ସେ ଶ୍ରୀକ୍ଷେତ୍ର ଆଗମନ କରିଥିଲେ । ସେ ତାଙ୍କର ସାଥି ଅଦ୍ୱୈତାଚାର୍ଯ୍ୟ, ନିତ୍ୟାନନ୍ଦ, ଶ୍ରୀନିବାସ, ଗଦାଧର, ଦାମୋଦର, ମୁରାରି, ହରିଦାସ, ଶ୍ରୀବତ୍ସ ଓ ଭଟ୍ଟ ରଘୁନାଥ ଇତ୍ୟାଦିଙ୍କ ସହିତ ଶ୍ରୀକ୍ଷେତ୍ର ଆସିଥିଲେ । ଶ୍ରୀକ୍ଷେତ୍ରରେ

ଶ୍ରୀଜଗନ୍ନାଥଙ୍କୁ ପ୍ରଥମ ଦର୍ଶନରେ ସେ ଭକ୍ତି ପ୍ରେମରେ ବିହ୍ୱଳହୋଇ ମୂର୍ଚ୍ଛା ହୋଇ ଯାଇଥିଲେ । ସେ ଶ୍ରୀଜଗନ୍ନାଥଙ୍କ ଭିତରେ ଶ୍ରୀକୃଷ୍ଣଙ୍କୁ ମଧ୍ୟ ଦର୍ଶନ କରୁଥିଲେ । ଶ୍ରୀଜୀଉମାନଙ୍କ ସମ୍ମୁଖରେ ଏପରି ଭାବରେ ସଂକୀର୍ତ୍ତନ କରୁଥିଲେ ଯେ, ଅନ୍ୟଭକ୍ତ ଓ ଦର୍ଶକମାନେ ଏହା ଦେଖି ବିସ୍ମିତ ହୋଇଯାଉଥିଲେ । ତତ୍କାଳୀନ ଶ୍ରୀକ୍ଷେତ୍ରବାସୀ ଓ ଶ୍ରଦ୍ଧାଳୁ ଭକ୍ତମାନେ ଶ୍ରୀଚୈତନ୍ୟଙ୍କୁ ଶ୍ରୀଜଗନ୍ନାଥଙ୍କର ଶ୍ରେଷ୍ଠ ଭକ୍ତରୂପେ ବିବେଚନା କରି ସମ୍ମାନ ପ୍ରଦର୍ଶନ କରୁଥିଲେ ।

କୃଷ୍ଣଦାସ କବିରାଜ ଗୋସ୍ୱାମୀ ଶ୍ରୀଚୈତନ୍ୟ ଚରିତାମୃତରେ ଲେଖିଛନ୍ତି, ଶ୍ରୀଜଗନ୍ନାଥ ସ୍ୱୟଂ ପରିଂବ୍ରହ୍ମ, ତାଙ୍କଠାରୁ ସବୁ ଅବତାର ସୃଷ୍ଟି । ଶ୍ରୀଚୈତନ୍ୟ ହେଉଛନ୍ତି କୃଷ୍ଣଙ୍କର ଅବତାର ସ୍ୱରୂପ । ତାଙ୍କରି ପାଇଁ ଶ୍ରୀଚୈତନ୍ୟ କୃଷ୍ଣ ଅବତାର ହେଲେ ଓ ନିତ୍ୟ ତାଙ୍କଠାରେ ଶ୍ରୀରାଧାକୃଷ୍ଣ ଲୀଳା ସଂଦର୍ଶନ କଲେ । ସେ ପ୍ରତିଦିନ ଗରୁଡ଼ସ୍ତମ୍ଭରେ ଅଙ୍ଗୁଳି ସ୍ପର୍ଶକରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରୁଥିଲେ । ଯାହାକି ଆଜିବି ଗରୁଡ଼ ସ୍ତମ୍ଭରେ ଶ୍ରୀଚୈତନ୍ୟଙ୍କ ଅଙ୍ଗୁଳି ଚିହ୍ନ ଦେଖିବାକୁ ମିଳେ । ମହାପ୍ରଭୁମାନେ ଅଣସର ଘରେ ରହିବା ପରେ ଶ୍ରୀଚୈତନ୍ୟ ପ୍ରଭୁଙ୍କୁ ନ'ଦେଖି ଭାରି ବ୍ୟସ୍ତ ବିବ୍ରତ ହେଉଥିଲେ । ତେଣୁ ସେ ପଦଯାତ୍ରାରେ ଶ୍ରୀଅଲାରନାଥ ଯାଇ ପ୍ରଭୁଙ୍କୁ ଦର୍ଶନକରି ଆନନ୍ଦ ଅନୁଭବ କରୁଥିଲେ । ନିଜ ବସ୍ତ୍ରଦ୍ୱାରା ଗୁଣ୍ଡିଚ୍ଛାମନ୍ଦିରର ପରିଷ୍କାର କରିବା ତାଙ୍କର ଏକ ଅଭ୍ୟାସରେ ପରିଣତ ହୋଇଯାଇଥିଲା । ଆଜି ବି ଶ୍ରୀଚୈତନ୍ୟଙ୍କର ଶ୍ରୀକୃଷ୍ଣ ଭକ୍ତମାନେ ସେହି ପରମ୍ପରା ଅକ୍ଷୁର୍ଣ୍ଣ ରଖିଛନ୍ତି । ସେ ନିଜକୁ ଶ୍ରୀରାଧା ରୂପେ ଆହ୍ଲାଦିତ କରି ଶ୍ରୀକୃଷ୍ଣଙ୍କୁ ଦର୍ଶନ କରୁଥିଲେ ।

ଶ୍ରୀଚୈତନ୍ୟ ଦେବଙ୍କ ଓଡ଼ିଶା ଆଗମନ ସମୟରୁ ବୈଷ୍ଣବ ଧର୍ମ ଦ୍ରୁତ ଗତିରେ ପ୍ରଚାର ଓ ପ୍ରସାର ହୋଇଥିଲା । ସେ ଓଡ଼ିଶାର ପ୍ରତ୍ୟେକ ସ୍ଥାନରେ ବୈଷ୍ଣବ ଧର୍ମାବଲମ୍ବୀ ଶିଷ୍ୟ ସୃଷ୍ଟି କରିଥିଲେ । ତାଙ୍କର ଆବାସସ୍ଥଳୀ ଥିଲା ବାଲିସାହିସ୍ଥିତ ଶ୍ରୀରାଧାକୃଷ୍ଣ ମଠର ପଶ୍ଚାତ୍ ଭାଗରେ ଥିବା ସିଦ୍ଧବକୁଳ ମଠ । ଅତୀତରେ ଏହା କାଶୀ ମିଶ୍ରଙ୍କର ପୁଷ୍ପ ଉଦ୍ୟାନ ଥିଲା । ଶ୍ରୀଚୈତନ୍ୟଙ୍କ ନିର୍ଦ୍ଦେଶରେ କାଶୀ ମିଶ୍ର ସେଠାରେ ଏକ ଭଜନ କୁଟୀର ନିର୍ମାଣ କରିଥିଲେ । ଆଜି ବି ସେହି ମଠରେ ତାଙ୍କର କନ୍ଥା, କାଠ ପାଦୁକା ଓ କମଣ୍ଡଳୁ ଇତ୍ୟାଦି ଦେଖିବାକୁ ମିଳେ । ଏହା ତାଙ୍କର ସ୍ମୃତିରୂପେ ବିରାଜିତ । ତାଙ୍କର ଘନିଷ୍ଠ ସହଚର ଥିଲେ ରାୟରାମାନନ୍ଦ ଓ ଓଡ଼ିଆ ଭାଗବତର ରଚୟିତା ଶ୍ରୀଜଗନ୍ନାଥ ଦାସ । ସେ ଜଗନ୍ନାଥ ଦାସଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇ ତାଙ୍କୁ "ଅତିବଡ଼ୀ" ସମ୍ମାନ ପ୍ରଦାନ କରିଥିଲେ ।

ରଥଯାତ୍ରା ଓ ବାହୁଡ଼ାଯାତ୍ରା ସମୟରେ ଶ୍ରୀଚୈତନ୍ୟ ତାଙ୍କ ସଂକୀର୍ତ୍ତନ ମଣ୍ଡଳୀଙ୍କୁ ଛରୋଟି ଭାଗରେ ବିଭକ୍ତ କରି ବଡ଼ଦାଣ୍ଡରେ ସଂକୀର୍ତ୍ତନ କରିବାର ଦୃଶ୍ୟ ସମଗ୍ର ପରିବେଶକୁ ଭାବବିହ୍ୱଳ କରି ପକାଉଥିଲା । ଏକଦା ଏହି ପ୍ରେମରସ ପୂର୍ଣ୍ଣ ସଂକୀର୍ତ୍ତନରେ ମଜ୍ଜିଯାଇ ଶ୍ରୀଜଗନ୍ନାଥଙ୍କର ନନ୍ଦିଘୋଷ ରଥ ବଡ଼ଦାଣ୍ଡରେ ଆଗକୁ ନ'ଯାଇ ରହିଗଲା । ଏହା ଦେଖି ଗଜପତି ମହାରାଜା

ବ୍ୟସ୍ତ ଓ ବିବ୍ରତ ହୋଇଗଲେ । ପଣ୍ଡିତ କାଶୀ ମିଶ୍ର ଏହାର ଗୂଢ଼ ରହସ୍ୟ ମହାରାଜାଙ୍କୁ ବୁଝାଇ କହିଲେ, ଭକ୍ତର ଇଚ୍ଛା ଜାଣି ମହାପ୍ରଭୁ ଶ୍ରୀଜଗନ୍ନାଥ ଭକ୍ତ ଚୈତନ୍ୟଙ୍କ ନୃତ୍ୟ ଓ କୀର୍ତ୍ତନ ଶୁଣିବା ପାଇଁ ବଡ଼ଦାଣ୍ଡରେ ରହିଯାଉଛନ୍ତି । ଏହିପରି ଭକ୍ତ ଚୈତନ୍ୟ ଓ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ଅନେକ କିମ୍ବଦନ୍ତୀ ରହିଅଛି । ତାଙ୍କ ସମୟରୁ ଶ୍ରୀମନ୍ଦିରରେ ଭକ୍ତିରସ ମୂଳକ ସଂକୀର୍ତ୍ତନ ବହୁଳ ଭାବରେ ହୋଇଆସୁଅଛି । ଆଉ ମଧ୍ୟ ତାଙ୍କ ସମୟରୁ ଶ୍ରୀଜଗନ୍ନାଥଙ୍କର ପରମ୍ପରା ଓ ପର୍ବପର୍ବାଣି ସୃଷ୍ଟି ହୋଇଅଛି- ଯଥା ଷଡ଼ଭୂଜ ଗୌରାଙ୍ଗ ଗୋବର୍ଦ୍ଧନ ପୂଜା, କାଳୀୟଦଳନ ବେଶ ଓ ରାସଲୀଳା ଇତ୍ୟାଦି । ୪୮ ବର୍ଷ ବୟସରେ ୧୫୩୩ ମସିହାରେ ଶ୍ରୀଚୈତନ୍ୟ ଶ୍ରୀଜୀଉଙ୍କ ଶରୀରରେ ମିଶି ଯାଇଥିଲେ ବୋଲି ଜନଶ୍ରୁତି ରହିଅଛି ।

## ସନ୍ଥକବି ତୁଳସୀ ଦାସ




ସନ୍ଥକବି ତୁଳସୀ ଦାସ ଥିଲେ ଭାରତୀୟ କାବ୍ୟ ସାହିତ୍ୟ ଜଗତର ଶ୍ରେଷ୍ଠ କବି ଓ ଏକାନ୍ତ ପ୍ରଭୁ ଶ୍ରୀରାମଙ୍କ ଭକ୍ତ । ତଥାପି ସେ ଶ୍ରୀଜଗନ୍ନାଥଙ୍କର ଥିଲେ ପରମ ଭକ୍ତ । ଯେ ପ୍ରଭୁ ଶ୍ରୀରାମ, ସେ ପ୍ରଭୁ ଶ୍ରୀଜଗନ୍ନାଥ ଏହା ପ୍ରତ୍ୟକ୍ଷ ରୂପେ ସେ ଅନୁଭବ କରିଥିଲେ । ସମ୍ଭବତଃ ସେ ଉତ୍ତରପ୍ରଦେଶର ରାଜପୁର ଅନ୍ତର୍ଗତ ପ୍ରୟାଗରାଜ ତୀର୍ଥ ନିକଟବର୍ତ୍ତୀ ଦୁବେପୁର ଗ୍ରାମରେ ୧୫୩୨ ଖ୍ରୀଷ୍ଟାବ୍ଦରେ ଶ୍ରାବଣମାସ ଶୁକ୍ଳ ସପ୍ତମୀ ତିଥିରେ ଅଭୁକ୍ତ ମୂଳା ନକ୍ଷତ୍ରରେ ବ୍ରାହ୍ମଣ ବଂଶୋଦ୍ଭବ ପିତା ଆତ୍ମାରାମ ଦୁବେଙ୍କ ଔରଷରୁ ମାତା ହୁଲଶୀ ଦେବୀଙ୍କ ଗର୍ଭରୁ ଜନ୍ମଲାଭ କରିଥିଲେ । ସେ ଜନ୍ମ ସମୟରେ କ୍ରନ୍ଦନ ନ'କରି ରାମ ରାମ ଶବ୍ଦ ଉଚ୍ଚାରଣ କରିଥିଲେ । ଜ୍ୟୋତିଷ ଗଣକ ଓ ଶାସ୍ତ୍ରକାରମାନେ ଜନ୍ମପୂର୍ବରୁ ସ୍ଥିର କରିଥିଲେ ଯେ ଶିଶୁ ଜନ୍ମହେବାର ତିନିଦିନ ଭିତରେ ମୃତ୍ୟୁବରଣ କରିବ । ତାହା ନ'ହୋଇ ମାତାଙ୍କର ମୃତ୍ୟୁ ହୋଇଥିଲା । ତେଣୁ ପିତା ଆତ୍ମାରାମ ଦାସୀ ମୁନିଆଙ୍କୁ ପୁଅ ପାଳିବାକୁ ଦାୟିତ୍ୱ ଦେଇଥିଲେ । କିନ୍ତୁ ତୁଳସୀ ଦାସଙ୍କୁ ପାଞ୍ଚ ବର୍ଷବେଳେ ଦାସୀ ମୃତ୍ୟୁବରଣ କରିବାରୁ, ପିତା ଆତ୍ମାରାମ ଅଶୁଭ ସନ୍ତାନ ମନରେ ଭାବି ତ୍ୟାଗ କରିଥିଲେ ।

ସେ ସମୟରେ ଜଣେ ବ୍ରାହ୍ମଣୀ ତୁଳସୀଙ୍କୁ ଆଦରରେ ଷଡ଼ରସରେ ଖାଦ୍ୟ ଦେଇ ଲାଳନପାଳନ କରିଥିଲେ ।

ଏହି ସମୟରେ ଭଗବାନ ଶଙ୍କରଙ୍କ ଦ୍ୱାରା ସ୍ୱପ୍ନାଦେଶ ପାଇ ଗୋସ୍ୱାମୀ ନରହରି ଦାସ ବାଳକ ତୁଳସୀଙ୍କୁ ଖୋଜି ଖୋଜି ପାଇଥିଲେ ଓ ରାମମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ଶେଷରେ ଗୋସ୍ୱାମୀ ନରହରି ଦାସ ତୁଳସୀଙ୍କୁ କାଶୀ କ୍ଷେତ୍ରକୁ ନେଇଯାଇଥିଲେ । ସେଠାରେ ବିଦ୍ୱାନ ମହାତ୍ମା ସ୍ୱାମୀ ରାମାନନ୍ଦଙ୍କଠାରୁ ବେଦ, ବେଦାନ୍ତ, ଦର୍ଶନ, ଇତିହାସ, ପୁରାଣ ଅଧ୍ୟୟନ କରିଥିଲେ । ୧୫୬୪ମସିହାରେ ସେ ରତ୍ନାବଳୀଙ୍କ ପାଣିଗ୍ରହଣ କରିଥିଲେ । ପରିବାର କହିଲେ ସେ, ତାଙ୍କ ସ୍ତ୍ରୀ, ଗୋଟିଏ ପୁଅ ଓ ଗୋଟିଏ ଝିଅ ।

ତୁଳସୀ ଦୁଇ ପତ୍ରରୁ ବାସିଲା ପରି, ସେ ବାଲ୍ୟକାଳରୁ ଜଣେ ବିଶିଷ୍ଟ ଭକ୍ତ ଓ କବି ହେବାର ଆଭାସ ଜଣାପଡ଼ିଥିଲା । ସେ ଥିଲେ ଅତ୍ୟନ୍ତ ଶାନ୍ତ, ଶିଷ୍ଟ, ସୁଶୀଳ, ସତ୍ୟବାଦୀ ଓ ଧର୍ମପରାୟଣ । ଗରିବଗୁରୁବା, ସାଧୁସନ୍ଥମାନଙ୍କୁ ଦାନ କରିବା ଥିଲା ତାଙ୍କର ଦୈନନ୍ଦିନ କାର୍ଯ୍ୟ । ଏପରିକି ଖାଲି ହାତରେ ତାଙ୍କ ଦ୍ୱାରରୁ କେହି ଫେରନ୍ତି ନାହିଁ ।

ଗ୍ରାମ ଓ ଆଖପାଖ ଗ୍ରାମରେ ପ୍ରତିଦିନ ପୁରାଣପାଠ ଓ ସଂକୀର୍ତ୍ତନ ଇତ୍ୟାଦି ଧର୍ମକାର୍ଯ୍ୟ ହୁଏ । ତୁଳସୀ ଦାସ ପ୍ରତିଦିନ ରାମାୟଣ, ମହାଭାରତ ଶୁଣିବା ସହ ପ୍ରତ୍ୟେକ ଧର୍ମ କାର୍ଯ୍ୟରେ ନିଜକୁ ସାମିଲ କରୁଥିଲେ । ଏପରିକି ନିଜର ଖାଇବା, ଶୋଇବା, କାର୍ଯ୍ୟକୁ ଭ୍ରୁକ୍ଷେପ ନ'କରି ଦିନରାତି ନାମଯଜ୍ଞରେ ଯୋଗ ଦେଇ ସମୟ ଅତିବାହିତ କରୁଥିଲେ । ଦିନକର କଥା ଥରେ ପୁରାଣକାର ରାମାୟଣର 'ସୀତାହରଣ' ପାଠ କରୁଥିଲେ । ଲଙ୍କାର ରାଜା ରାବଣ ଛଦ୍ମବେଶରେ ଆସି ପଞ୍ଚବଟୀ ବନରୁ ମା'ସୀତାଙ୍କୁ ହରଣ କରି ନେବା ସମୟର ଦୁଃଖଦ ଘଟଣା । ଏହି ସମୟରେ ମା'ସୀତା ବିକଳରେ କ୍ରନ୍ଦନ କରୁଥିବା ବେଳେ ସମଗ୍ର ପଞ୍ଚବଟୀ ବନରେ ଥିବା ବୃକ୍ଷଲତା, ପଶୁପକ୍ଷୀ, ଧରା, ନଦନଦୀ, ସମୁଦ୍ର ଦୁଃଖରେ ମିୟମାଣ ହୋଇ କାନ୍ଦୁଥାନ୍ତି । ପୁରାଣ କାରଙ୍କଠାରୁ ଏହା ଶୁଣି ତୁଳସୀ ଦାସ ପ୍ରଭୁ ଶ୍ରୀରାମ ଓ ମା'ସୀତାଙ୍କ ପ୍ରେମରେ ବିହ୍ୱଳ ହୋଇ କାନ୍ଦିବା ସହ ନିଜର ଅସ୍ତିତ୍ୱ ହରାଇ ଦେଲେ । ସତୀ ସୀତାଙ୍କ କ୍ରନ୍ଦନଧ୍ୱନି ତାଙ୍କ ହୃଦୟକୁ ବାରମ୍ବାର ଆନ୍ଦୋଳିତ କରି ପକାଉଥାଏ । କ୍ରମଶଃ ସେ ତାଙ୍କର ଆତ୍ମଜ୍ଞାନ ହରାଇ ବର୍ତ୍ତମାନ ଘଟଣାଟି ଘଟିଛି ବୋଲି ଭାବି ହଠାତ୍ ଏକ ଘୋଡ଼ାରେ ବସି ମା'ସୀତାଙ୍କୁ ରକ୍ଷା କରି ରାବଣକୁ ମାରିବାପାଇଁ ଦ୍ରୁତଗତିରେ ଛୁଟି ଚାଲିଲେ । ପବନ ବେଗରେ ଅଶ୍ୱଟି ଶ୍ରୀଲଙ୍କା ଅଭିମୁଖେ ଯାତ୍ରା କଲା । ତୁଳସୀ ଶ୍ରୀରାମଙ୍କ ପ୍ରେମରେ ଏପରି ପାଗଳ ଥିଲେ ଯେ ସେ ସମୁଦ୍ର ଭିତରକୁ ଘୋଡ଼ା ସହ ପଶିଗଲେ । ଏକଥା ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଙ୍କୁ ଅଛପା ରହିଲା ନାହିଁ । କାରଣ ଭକ୍ତର ଦୁଃଖରେ ପ୍ରଭୁ ବନ୍ଧା ।

ସୀତାଙ୍କୁ ଉଦ୍ଧାର କରିବାକୁ ଯାଇ, ତାଙ୍କର ପରମ ଭକ୍ତ ତୁଳସୀ ସମୁଦ୍ରରେ ପ୍ରାଣଟି ହରାଇଦେବେ ବୋଲି ଭାବି ପ୍ରଭୁ ରଘୁପତି ଜଣେ ବ୍ରାହ୍ମଣ ବେଶରେ ସେଠାରେ ଉପସ୍ଥିତ ହୋଇଗଲେ ।

ପ୍ରଥମେ ଶ୍ରୀରାମ ସମୁଦ୍ରକୁ ସାତପାଦ ଘୁଞ୍ଚିଯିବାପାଇଁ ଆଦେଶ ଦେଲେ । ସମୁଦ୍ର ସାତପାଦ ଘୁଞ୍ଚିଗଲା । ଏହି ସମୟରେ ବ୍ରାହ୍ମଣ ବେଶଧାରୀ ଶ୍ରୀରାମ ଭକ୍ତ ତୁଳସୀଙ୍କ ହାତ ଧରି ପକାଇଲେ । ପୂର୍ବପରି ରାଗରେ ଜର୍ଜରିତ ହୋଇ ତୁଳସୀ ବ୍ରାହ୍ମଣକୁ କହିଲେ, ହେ ବ୍ରାହ୍ମଣ ମହାଶୟ ! ମୋତେ ଛାଡ଼ିଦିଅ । ମୁଁ ମୋର ମାତା ସୀତାଙ୍କୁ ଉଦ୍ଧାର କରି ରାବଣଙ୍କୁ ବଧ କରିବି । ମୋତେ ଯାହା କହିଲେ ମୁଁ କିଛି ଶୁଣିବି ନାହିଁ । ମୁଁ ମୋ ସଂକଳ୍ପରେ ଅଟଳ । ବ୍ରାହ୍ମଣ ତାଙ୍କୁ ବୁଝାଇ କହିଲେ ହେ ବତ୍ସ ! ଏହା ସବୁ ଅତୀତର ଘଟଣା । କିନ୍ତୁ ବର୍ତ୍ତମାନର ଘଟଣା ନୁହେଁ । ତୁମେ ଯାହା ସବୁ ଶୁଣିଲ ତାହା ସବୁ ରାମାୟଣରେ ଲିଖିତ । ତୁମେ ଏହା ସବୁ ଶୁଣିକରି ଏପରି ଭାବବିହ୍ୱଳ ହୁଅ ନାହିଁ । ଫଳରେ ତୁମର ମୂଲ୍ୟବାନ ଜୀବନଟି ସମୁଦ୍ର ଜଳରେ ନଷ୍ଟ ହେବ ସିନା, କିନ୍ତୁ କିଛି ଲାଭ ହେବ ନାହିଁ । ତୁଳସୀ ବ୍ରାହ୍ମଣଙ୍କ ଠାରୁ ଶୁଣି ପ୍ରକୃତିସ୍ଥ ହୋଇ କହିଲେ, ମୋର ଗୋଟିଏ ସର୍ତ୍ତ ରକ୍ଷାକଲେ, ମୁଁ ଆପଣଙ୍କ କଥାରେ ରାଜି ହେବି । ସର୍ତ୍ତଟି ଥିଲା ପ୍ରଭୁ ଶ୍ରୀରାମ, ମାତା ସୀତା, ଓ ଅନୁଜ ଲକ୍ଷ୍ମଣ ଧନୁର୍ବାଣ ଧରି ପ୍ରତ୍ୟକ୍ଷ ମୋତେ ଦର୍ଶନ ଦେଲେ, ମୁଁ ତୁମ କଥାରେ ରାଜି ହୋଇ ଫେରିଯିବି । ନ'ହେଲେ ଏହି ସମୁଦ୍ରରେ ଝାସ ଦେଇ ମୋ ଜୀବନକୁ ହରାଇଦେବି ସିନା ଫେରିବି ନାହିଁ । ଭକ୍ତଭାବରେ ବନ୍ଧା ପ୍ରଭୁ, ବ୍ରାହ୍ମଣବେଶ ପରିତ୍ୟାଗ କରି ତୁଳସୀଙ୍କୁ ଦର୍ଶନ ଦେଲେ । ଧନୁର୍ବାଣ ଧାରଣକାରୀ ତ୍ରିମୂର୍ତ୍ତିଙ୍କୁ ସ୍ୱଚକ୍ଷୁରେ ଦର୍ଶନକରି ତୁଳସୀ ଜୀବନଟିକୁ ସାର୍ଥକ କରିଥିଲେ ।

ତତ୍‌ପରେ ତୁଳସୀଙ୍କ ଜୀବନଧାରା ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇଯାଇଥିଲା । ଏକଦା ରାମାୟଣ ପଢ଼ି ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟର ଗୂଢ଼ରହସ୍ୟ ଜାଣିବାକୁ ପାଇଥିଲେ । ତେଣୁ ସେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ଆଶା ପ୍ରକଟ କରିଥିଲେ । ସେ ଭାରତର ବିଭିନ୍ନ ତୀର୍ଥସ୍ଥାନ ଭ୍ରମଣ କରି ଶେଷରେ ଶ୍ରୀକ୍ଷେତ୍ରରେ ପହଞ୍ଚିଥିଲେ । ଶ୍ରୀଜଗନ୍ନାଥଙ୍କୁ ପ୍ରଥମ ଦର୍ଶନରେ ସେ ଦୁଃଖରେ ମ୍ରିୟମାଣ ହୋଇଥିଲେ । କାରଣ ଯାହାର ହାତ, ଗୋଡ଼ ନାହିଁ, ଚକାନୟନ, କାଷ୍ଠରମୂର୍ତ୍ତି, ସେ କ'ଣ ଶାନ୍ତ, ଶ୍ୟାମଳ ମୂର୍ତ୍ତି ଶ୍ରୀରାମ ହୋଇପାରନ୍ତି । ତାଙ୍କର ଶ୍ରୀକ୍ଷେତ୍ର ଯାତ୍ରା ବୃଥା ହୋଇଗଲା ବୋଲି ଭାବି ଶ୍ରୀରାମଙ୍କୁ ସ୍ମରଣକରି କାନ୍ଦି ପକାଇଥିଲେ । ଶ୍ରୀରାମଙ୍କ ସହ ଶ୍ରୀଜଗନ୍ନାଥ ସମାନ ନୁହଁନ୍ତି । ଏହା ଭାବି ସେଠାରୁ ପଳାଇ ଆସି ତୁଳସୀ ଚଉରା ପଠାରେ ରାତ୍ରିଯାପନ କରିଥିଲେ । ସେହି ରାତ୍ରିରେ ସେ ଶ୍ରୀରାମଙ୍କୁ ଦର୍ଶନ କରିଥିଲେ । ତୁଳସୀଙ୍କ ମନର ଭାବନା ଦୂର କରିବାପାଇଁ ପ୍ରଭୁ ଶ୍ରୀରାମ କହିଥିଲେ, ହେ ବତ୍ସ ! ଯେ ରାମ ସେ ହିଁ ପ୍ରଭୁ ଶ୍ରୀଜଗନ୍ନାଥ । ଆମମାନଙ୍କ ଭିତରେ କିଛି ଭେଦଭାବ ବା ସାନବଡ଼ ନାହିଁ । ଆମ୍ଭେ ସମାନ । ତେବେ ତୁମେ ଆଉଥରେ ଯାଇ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କର, ସେଠାରେ ମତେ (ଶ୍ରୀରାମ) ଦେଖିବ ।

ତା'ପରଦିନ ପ୍ରଭାତରୁ ତୁଳସୀଦାସ ଶ୍ରୀମନ୍ଦିରକୁ ଯାଇ ରତ୍ନସିଂହାସନରେ ଦେଖିବାକୁ ପାଇଲେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଓ ମା'ସୁଭଦ୍ରାଙ୍କ ପରିବର୍ତ୍ତେ, ଶ୍ରୀରାମ, ମା'ସୀତା ଓ ଶ୍ରୀଲକ୍ଷ୍ମଣ ବିରାଜିତ । ଭାବବିହ୍ୱଳ ହୋଇ ତାଙ୍କ ଚକ୍ଷୁଦ୍ୱୟରୁ ଆନନ୍ଦାଶ୍ରୁ ଝରିପଡ଼ିଲା ଓ ଜୀବନଟି ସାର୍ଥକ ହୋଇଗଲା ବୋଲି ଆତ୍ମବିଶ୍ୱାସ ସୃଷ୍ଟି ହେଲା । ଶ୍ରୀଜଗନ୍ନାଥଙ୍କ ପ୍ରତି ମନରେ ଥିବା ଭ୍ରାନ୍ତ ଧାରଣା ଦୂର ହେବା ସହ ଅଗାଧ ବିଶ୍ୱାସ ଜ୍ଞାପନ କଲେ । ଆନନ୍ଦରେ ସେଠାରେ ଗାଇଥିଲେ :-

ପୁରୁଷୋତ୍ତମ ପ୍ରଭୁ ! ତ୍ରିଭୁବନ ଦେବା
ମଣିବା ଜୟ ଜଗନ୍ନାଥ ଜଗଦେବା ॥ ଘୋଷା ॥
'ଜୟ ଜୟ ଜଗନ୍ନାଥ ନିଖିଳ ବିହାରୀ
ସାଧୁ ସନ୍ଥଙ୍କ ଜନହିତ କାରୀ ।'

ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ପ୍ରତିଦିନ ଶ୍ରୀଜଗନ୍ନାଥଙ୍କ ସକାଳ ଧୂପରେ ବଡ଼ଛତା ମଠର ମହନ୍ତ ଓ ସାଧୁସନ୍ଥମାନେ ଗିନି ଓ ଖୋଳର ତାଳେ ତାଳେ ଆଳତୀ କରିଆସୁଛନ୍ତି । ଶ୍ରୀରାମ ସମ୍ପ୍ରଦାୟ ସାଧୁ ରାମାନନ୍ଦଙ୍କ ଉପରେ ଏହାର ପ୍ରଭାବ ପଡ଼ିଥିଲା । ତା'ରି ସ୍ମୃତି ସ୍ୱରୂପ ଏବେ ମଧ୍ୟ ରାମାନୁଜ ପନ୍ଥୀମାନେ ଶ୍ରୀଜଗନ୍ନାଥଙ୍କ ଦାରୁ ବିଗ୍ରହ ମଧ୍ୟରେ ଶ୍ରୀରାମଙ୍କୁ ଦର୍ଶନ କରିଥାନ୍ତି । ଯଥା :-

ଯୋହି ରାମ ସୋହି ଜଗଦିଶା
ଦିନହି କେ ଅନନ୍ତ ପବତ ଶେଷା ॥

ତୁଳସୀଦାସ ଯେ କେବଳ ଶ୍ରୀରାମ ଓ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଥିଲେ, ତାହା ନହେଁ, ସେ ଥିଲେ ଭାରତୀୟ କାବ୍ୟ ଜଗତର ଶ୍ରେଷ୍ଠ କବି । ୧୫୭୪ ମସିହାରେ ତାଙ୍କ ରଚିତ "ଶ୍ରୀରାମ ଚରିତ ମାନସ" ନାମକ ଏକ କାବ୍ୟ ମାନବ ସମାଜପାଇଁ ପ୍ରଧାନ ଉପାଦେୟ ହୋଇପାରିଛି । ଆଜି ବି ଏହି କାବ୍ୟରେ ଅନେକ ନୀତି, ଉପଦେଶ, ଆଧ୍ୟାତ୍ମିକ ବାଣୀ ଓ ସାମାଜିକ ଚଳଣିମାନ ପରିପୂର୍ଣ୍ଣରୂପେ ସ୍ଥାନ ପାଇ ଭକ୍ତ, ପାଠକ ପାଠିକାମାନଙ୍କର ଆଦରଣୀୟ ହୋଇପାରିଛି ।

# ସନ୍ଥକବି ହାଡ଼ିଦାସ

ଯେତେବେଳେ ନିଷ୍ଠୁର, ନିର୍ମମ ରାଜାମହାରାଜା, ପ୍ରଭାବଶାଳୀ ଓ ଖଳ ପ୍ରକୃତିର ଲୋକମାନଙ୍କ ଦ୍ୱାରା ସମାଜ ଅବହେଳିତ, ନିଷ୍ପେଷିତ, ଅତ୍ୟାଚରିତ ହୋଇଥାଏ, ସେତେବେଳେ ସାଧୁ, ସନ୍ଥମାନେ ଜନ୍ମ ଲାଭ କରି ନିଜର ସାଧନା ଓ ସିଦ୍ଧିଦ୍ୱାରା ଆଧ୍ୟାତ୍ମିକ ସଚେତନା ବିତରଣ କରିଥାନ୍ତି । ଅଷ୍ଟାଦଶ ଶତାବ୍ଦୀରେ ମରହଟ୍ଟା ଶାସନର ପତନ ପରେ ଓଡ଼ିଶାର ସାମଜିକ ଅବସ୍ଥା

ଥିଲା ବିପର୍ଯ୍ୟୟ । ସାଧାରଣ ଜନତା ଅବହେଳିତ, ଲାଞ୍ଛିତ, ଅପମାନିତ ଓ କଳୁଷିତ ଜୀବନ ଯାପନ କରୁଥିଲେ । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ସନ୍ଥକବି ହାଡ଼ିଦାସ ଜନ୍ମଲାଭ କରି ତାଙ୍କର ଆଧ୍ୟାତ୍ମିକ ସଚେତନାରେ ଓଡ଼ିଶାର କଳୁଷିତ ଅବସ୍ଥାକୁ ପରିବର୍ତ୍ତନ କରିଥିଲେ । ସେ ୧୭୭୨ ମସିହା ପବିତ୍ର ମକର ସଂକ୍ରାନ୍ତରେ ପ୍ରତ୍ୟୁଷରୁ ଅବିଭକ୍ତ କଟକ ଜିଲ୍ଲାର ଛତିଆ ଅନ୍ତର୍ଗତ ଚମ୍ପାପୁର ଗ୍ରାମରେ ପିତା ଚେମେଇ ଓଝା ଓ ମାତା ଦେବକୀଙ୍କ କୋଳ ମଣ୍ଡନ କରିଥିଲେ । ଛତିଆ ଥିଲା ତାଙ୍କର ସାଧନା ପୀଠ । ପିତା ଥିଲେ ଅତ୍ୟନ୍ତ ଦରିଦ୍ର । କମାରଶାଳରୁ ଯାହା ରୋଜଗାର କରନ୍ତି, ସେଥିରେ ପରିବାର ଚଳାଇବା ଥିଲା କଷ୍ଟସାଧ । ପିତାଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ'ଥିବାରୁ ଗ୍ରାମ ବିଦ୍ୟାଳୟ ଶିକ୍ଷାପରେ ପାଠପଢ଼ାରେ ଡୋରି ବାନ୍ଧିଥିଲେ । ତତ୍‌ପରେ ଘରେ ପିତାଙ୍କୁ କୌଳିକ ବୃତ୍ତିରେ ସାହାଯ୍ୟ କରିବା ବ୍ୟତୀତ ଅନ୍ୟ କିଛି ଉପାୟ ନ'ଥିଲା ।

ତୁଳସୀ ଦୁଇ ପତ୍ରରୁ ବାସିଲାପରି, ବାଲ୍ୟଜୀବନରୁ ସେ ଜଣେ ସିଦ୍ଧ ମହାପୁରୁଷ ହେବାର ଆଶଙ୍କା ଜଣାପଡୁଥିଲା । ବାଲ୍ୟଜୀବନରେ ଗ୍ରାମରେ ସମସ୍ତ ପିଲାଙ୍କ ମଧ୍ୟରେ ସେ ଥିଲେ ସ୍ୱତନ୍ତ । କାରଣ ସେ ବିଭୁ ଚିନ୍ତାରେ ନିଜକୁ ନିୟୋଜିତ କରୁଥିଲେ । ବାଲ୍ୟ ଜୀବନରେ ସେ ଥିଲେ ଅତ୍ୟନ୍ତ ସରଳ, ଶାନ୍ତ, ଧୀରସ୍ଥିର । ପିତାମାତା, ଗୁରୁଜନ ଓ ସାହିପଡ଼ିଶାକୁ ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଅମାୟିକ ଜୀବନ ଯାପନ କରୁଥିଲେ । କିଶୋର ଅବସ୍ଥାରେ ସେ ତାଙ୍କର ପିତାମାତା ଓ ଭଗ୍ନୀକୁ ହରାଇ ଅତ୍ୟନ୍ତ ଦୁଃଖରେ ଥିଲେ ସିନା କିନ୍ତୁ ବିଭୁ ପ୍ରେମରେ ନିମଗ୍ନ ରହୁଥିଲେ । ଆର୍ଥିକ ତାଡ଼ନା ଯୋଗୁଁ ସେ ଗ୍ରାମ ଛାଡ଼ି ଆସି ଛତିଆଠାରେ ରହିଥିଲେ । ଚମ୍ପାପୁରଠାରେ ରହଣି ସମୟରେ ତାଙ୍କର ବିବାହ ହୋଇଥିଲା । କିନ୍ତୁ ଅଳ୍ପଦିନରେ ସ୍ତ୍ରୀଙ୍କର ମୃତ୍ୟୁ ହେବାରୁ ସେ ଗ୍ରାମକୁ ଯାଇଥିଲେ । ପୁନରାୟ ୩୦ବର୍ଷ ବୟସରେ ସେ ଚମ୍ପାପୁର ନିବାସୀ ଦାମୋଦର ମହାରଣାଙ୍କ ଝିଅ ପଦ୍ମାବତୀଙ୍କୁ ବିବାହ କରିଥିଲେ । କୌଣସି ପ୍ରକାର ରୋଜଗାର ନ'କରି ସଦାସର୍ବଦା ବିଭୁ ପ୍ରେମରେ ନିମଗ୍ନ ରହୁଥିଲେ । ଫଳରେ ଅଭାବ ଅନଟନ ଓ ନିଃସହାୟ ହୋଇ ପଡ଼ିଲେ । ତାଙ୍କ ସ୍ତ୍ରୀ ତାଙ୍କୁ ପରିତ୍ୟାଗ କରି ବାପ ଘରକୁ ପଳାଇଗଲେ । ବେଳେ ଖାଇ ବେଳେ ଉପାସ ରହୁଥିଲେ ସିନା କିନ୍ତୁ ବିଭୁ ପ୍ରେମ, ସାଧନା ଥିଲା ତାଙ୍କର ଚିର ସହଚର ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆଶୀର୍ବାଦ ଓ ନିଜର ଅସୀମ ତ୍ୟାଗ, ସାଧନା ଫଳରେ ସେ ଦିବ୍ୟଶକ୍ତି ଲାଭ କରିଥିଲେ । ତତ୍‌ପରେ ଶ୍ରୀକ୍ଷେତ୍ରର ମସ୍ତରାମ ନାମଧାରୀ ଜଣେ ସିଦ୍ଧ ସନ୍ନ୍ୟାସୀଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ସନ୍ନ୍ୟାସୀ ହୋଇଥିଲେ । ଦୀକ୍ଷାଗ୍ରହଣ ପରେ ସେ ତାଙ୍କ କୁଳର ସଂଜ୍ଞା ଓଝା ପରିବର୍ତ୍ତେ ଦାସ କରିଥିଲେ । ଯେତେ ଘାତ ପ୍ରତିଘାତ ଆସିଲେ ସୁଦ୍ଧା ସେ ସାଧନା କାର୍ଯ୍ୟରୁ ନିବୃତ୍ତ ରହୁନଥିଲେ । ଏପରିକି ବହୁବାର ରୋଗ ବ୍ୟାଧିରେ ଆକ୍ରାନ୍ତ ହୋଇ ମଧ୍ୟ ସାଧନା ନିୟମିତ କରୁଥିଲେ । ପର୍ଯ୍ୟାୟକ୍ରମେ ସେ ବହୁ ଅଲୌକିକ ଶକ୍ତି ଆହରଣ କରି ଜନସମାଜକୁ ନୂତନ ଆଲୋକ ପ୍ରଦର୍ଶନ କରିଥିଲେ ।

ସନ୍ଥ ହାଡ଼ିଦାସ ଥିଲେ ଉତ୍କଳୀୟ ବୈଷ୍ଣବ ଓ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମ ଉପାସକ । ତାଙ୍କର ମହାମନ୍ତ୍ର ଥିଲା :- "ହରେ ରାମ ହରେ କୃଷ୍ଣ" । ସେ ପଞ୍ଚସଖାଙ୍କ ନୀତି ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ପଞ୍ଚସଖା ମଧ୍ୟରୁ ତାଙ୍କର ଅଧିକ ଆଦର୍ଶ ଥିଲେ ଶ୍ରୀଅଚ୍ୟୁତାନନ୍ଦ । ତତ୍କାଳୀନ ସମାଜରେ ଥିବା ଜାତିପ୍ରଥାର ସେ ଥିଲେ ଘୋର ବିରୋଧୀ । ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସେ ସମସ୍ତଙ୍କୁ ସମାନ ଭାବରେ ଦେଖୁଥିଲେ । ଜାତିପ୍ରଥା ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରି ବହୁତ ଅସୁବିଧାର ସମ୍ମୁଖୀନ ହେଉଥିଲେ ମଧ୍ୟ ତଥାପି ସେ ତାଙ୍କ ନୀତିରେ ଅଟଳ ରହୁଥିଲେ । ପ୍ରକାଶଥାଉକି, ଜାତିପ୍ରଥାକୁ ବିରୋଧ କରି କେତେକ ରକ୍ଷଣଶୀଳ ବ୍ରାହ୍ମଣ ତତ୍କାଳୀନ ଦର୍ପଣୀଗଡ଼ର ଯବନରାଜା ଗୁଲ୍‌ଜାର ହୋସେନଙ୍କ ନିକଟରେ ଅଭିଯୋଗ କରିଥିଲେ । ରାଜା ଗୁଲ୍‌ଜାର ହାଡ଼ିଦାସଙ୍କୁ ଦଣ୍ଡିତ କରାଇବା ପାଇଁ ଡକାଇଥିଲେ । ହାଡ଼ିଦାସ ରାଜା ଗୁଲ୍‌ଜାରଙ୍କ ଆଦେଶ ପାଇ ସେଠାକୁ ଯାଇ ତାଙ୍କ ନିକଟରେ ସମସ୍ତ ପ୍ରକାର ଜାତି ଏକାକାର ବୋଲି ଯୁକ୍ତି ବାଢ଼ିଲେ । ସେ କହିଲେ ଆମେ ଓଡ଼ିଆ । ଓଡ଼ିଆ ଜାତିର ଇଷ୍ଟଦେବତା ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସମସ୍ତେ ଏକାଠି ବସି ସେବନ କରନ୍ତି । ତାଙ୍କ ପାଖରେ ଆମେ ସମସ୍ତେ ସମାନ ବା ଏକାକାର । ତେବେ ଜାତି କହିଲେ ଗୋଟିଏ ଯଥା ମାନବ ଜାତି । ବ୍ରାହ୍ମଣ, କରଣ, ବୈଶ୍ୟ, ଶୂଦ୍ର ଇତ୍ୟାଦି ଜାତିରେ କିଛି ଭେଦଭାବ ନାହିଁ । ମହାରାଜ କହିଲେ କେବଳ ଶ୍ରୀକ୍ଷେତ୍ର ବ୍ୟତୀତ ଅନ୍ୟ ସବୁ ସ୍ଥାନରେ ମହାପ୍ରସାଦ ମିଳେ ନାହିଁ । ତେଣୁ ଜାତିପ୍ରଥା ବିଲୋପ ହେବା ଅସମ୍ଭବ ଅଟେ । ରାଜାଙ୍କ ଉତ୍ତରରେ ହାଡ଼ିଦାସ ତାଙ୍କ ଅଲୌକିକ ଶକ୍ତି ବଳରେ ନିଜ ହାତରେ ଏକ କାଠ ସରାରେ ମହାପ୍ରସାଦ ଧରି ସେଠାରେ ସମସ୍ତଙ୍କୁ ବିତରଣ କରିଥିଲେ । ଏହା ଦେଖି ରାଜା ହାଡ଼ିଦାସଙ୍କ ଉପରେ ପ୍ରୀତ ହୋଇ ତାଙ୍କୁ କିଛି ଦାନ ଦେବାପାଇଁ କହିଥିଲେ । କିଛି ଧନ ସମ୍ପତ୍ତି ନ'ମାଗି ଛତିଆ ପାହାଡ଼ ଉପରେ ଏକ ବଟବୃକ୍ଷ ମୂଳରେ ସାଧନା ପୀଠ କରିବାକୁ ମାଗିଥିଲେ । ଏହି ପୀଠରେ ସେ ତାଙ୍କ ସମଗ୍ର ଜୀବନଟି ସାଧନା କରି ସମାଧିସ୍ଥ ହୋଇଥିଲେ । ଯାହାକି ଆଜି ସେହି ସ୍ଥାନକୁ ଛତିଆ ବଟ ବୋଲି କୁହାଯାଉଅଛି ।

ସେ ତାଙ୍କର ଅଲୌକିକ ସାଧନା ଦ୍ୱାରା ବହୁ ବିଭୁକୃପା ପ୍ରାପ୍ତ ହୋଇଥିଲେ । କ୍ରମଶଃ ତାଙ୍କର ସେହି ମହିମା ଚାରିଆଡ଼େ ପ୍ରଚାର ଓ ପ୍ରସାର ହେଲା । ବହୁ ସାଧୁସନ୍ଥ ଓ ଧର୍ମପରାୟଣ ବ୍ୟକ୍ତି ଛତିଆ ସ୍ଥିତ ତାଙ୍କ ସାଧନା ପୀଠକୁ ଆସି ସାନ୍ନିଧ୍ୟ ଲାଭ କରିଥିଲେ । ତାଙ୍କୁ ଧନ୍ୟ-ଧନ୍ୟ କହିଥିଲେ । ସେ ଥିଲେ ପିଣ୍ଡ ବ୍ରହ୍ମାଣ୍ଡବାଦୀ ଓ ହଠଯୋଗୀ । ପ୍ରଭୁ ଶ୍ରୀଜଗନ୍ନାଥ ଥିଲେ ତାଙ୍କର ଶ୍ରେଷ୍ଠ ଆରାଧ୍ୟ ଠାକୁର । ସେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ପରଂବ୍ରହ୍ମ, ପରମାତ୍ମା, ଓଁକାର ସ୍ୱରୂପୀ ପ୍ରଣବ, ଯୋଗସାଧକ, ଓ ଷଟ୍‌ଚକ୍ର ସାଧନାର ଶ୍ରେଷ୍ଠ ବୋଲି ସମ୍ବୋଧନ କରିଛନ୍ତି । ଏତଦ୍‌ବ୍ୟତୀତ ସେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ବିଶ୍ୱର ଶ୍ରେଷ୍ଠ ଠାକୁର ଓ ସମସ୍ତଙ୍କ ପିତା ବୋଲି ତାଙ୍କ ଶିଷ୍ୟ ଓ ଭକ୍ତମାନଙ୍କୁ ବୁଝାଉଥିଲେ ।

ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦ ଓ ତାଙ୍କର ନିଷ୍ଠା ସାଧନା ବଳରେ ସେ ଓଡ଼ିଆଭାଷା ଓ ସାହିତ୍ୟକୁ ସମୃଦ୍ଧଶାଳୀ କରାଇ ପାରିଥିଲେ । ସମାଜରୁ କଳୁଷିତ ପ୍ରଥାକୁ ବିଲୋପ କରି ସତ୍‌ପଥ ପ୍ରଦର୍ଶନ କରିବାପାଇଁ କେତେଗୁଡ଼ିଏ ଉପଦେଶମୂଳକ ବହି ରଚନା କରିଛନ୍ତି । ଏଥିସହିତ ଦାର୍ଶନିକ ଚିନ୍ତାଧାରା, ଭବିଷ୍ୟତ ବାଣୀ, ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ଆଖ୍ୟା ଦେଇ ଓ ଶ୍ରେୟରୂପେ ସ୍ଥାନ ଦେଇ ବହିଗୁଡ଼ିକ ଲେଖିଛନ୍ତି । ସେହି ପୁସ୍ତକ ମାନଙ୍କ ମଧ୍ୟରେ ଅଛି :- ଭାବନାବର, ଶଙ୍ଖନାଭି, ବ୍ୟସବିଷେ, କ୍ଷେତ୍ରମାହାତ୍ମ୍ୟ, ଭୈରବସ୍ତୁତି, ଲକ୍ଷ୍ମୀଧର ବିଳାସ, ଅନନ୍ତଗୁପ୍ତ ଟୀକା, ହନୁମନ୍ତ ଗୀତା, ନିଶ୍ଚଳଜ୍ଞାନ ଗୀତା, ନୀଳମାଧବ ଗୀତା, ଅନନ୍ତପୋଇ, ଗୃହସମ, ସ୍ୱରଶାସ୍ତ୍ର, ବହୁଭଜନ, ଜଣାଣ, ଚଉତିଶା ଓ ମାଳିକା ଅନ୍ତର୍ଭୁକ୍ତ । ସର୍ବୋପରି ସେ ଶ୍ରୀଜଗନ୍ନାଥଙ୍କୁ ସକଳଶକ୍ତିର ଆଧାର ତଥା ସେ ହେଉଛନ୍ତି ଆଦି, ଅନାଦି, ଅନନ୍ତ, ସାକାର, ନିରାକାର, ସଚ୍ଚିଦାନନ୍ଦ ବିଗ୍ରହ । ତାଙ୍କଦ୍ୱାରା ରଚିତ ଭବିଷ୍ୟତ ମାଳିକାରେ ଶ୍ରୀଜଗନ୍ନାଥଙ୍କୁ ଗଣଦେବତା ଓ ପତିତପାବନ ବୋଲି ସମ୍ବୋଧନ କରିଛନ୍ତି । ଯଥା :-

"ଜୟଜଗନ୍ନାଥ ପତିତପାବନ ଓଡ଼ିଶା ବଡ଼ଠାକୁର ।
କଳ୍ପବଟବାସୀ ପ୍ରଭୁ ବ୍ରହ୍ମରାଶି କଳିକଳୁଷ ନିସ୍ତାର ॥"

ତାଙ୍କଦ୍ୱାରା ଲିଖିତ ମାଳିକାରେ କଳିଯୁଗରେ କଳୁଷିତ ମାନବର ପାପ ଦୂର କରିବାପାଇଁ ଶ୍ରୀକ୍ଷେତ୍ରର ପରଂବ୍ରହ୍ମ ପ୍ରଭୁ ଶ୍ରୀଜଗନ୍ନାଥ ଏକ ମାତ୍ର ହିଁ ଠାକୁର । ସେହି ମାଳିକାରୁ ଗୋଟିଏ ପଦ ଏଠାରେ ଉଲ୍ଲେଖ ହୋଇଅଛି ।

"ଆକାଶୁ ବଜ୍ର ପଡ଼ିବ ଲୋ ବଉଳ, ଜାଳିଦେବ ଭୂମଣ୍ଡଳ,
ଶ୍ରୀଜଗନ୍ନାଥଙ୍କ ରତ୍ନରନ୍ଧୁଆରେ ଲାଗିବ ଯେ ଅନଳ ।"

ଅନ୍ୟ ଏକ ଚଉତିଶାରେ ସଂସାରର ଦୁଃଖ ମୋଚନ କରି, ସମସ୍ତଙ୍କୁ ସମାନ ପରିମାଣର ସୁଖ ପ୍ରଦାନ କରିବାକୁ କହିଛନ୍ତି । ଅନ୍ୟ ଏକ ଚଉତିଶାରେ ଶ୍ରୀକ୍ଷେତ୍ରର ପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମାତା ସୁଭଦ୍ରାଙ୍କୁ ଛତିଆବଟ ନେଇଯିବା ପାଇଁ କହିଛନ୍ତି । ସନ୍ଥକବି ହାଡ଼ିଦାସ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଜଣେ ପରମଭକ୍ତ, ଯାହାକି ତାଙ୍କଦ୍ୱାରା ଲିଖିତ ଚଉତିଶା, ମାଳିକା, ଭଜନ ଓ ଜଣାଣ ବହିରେ ପ୍ରତିଫଳିତ ହୋଇଅଛି, ଏହା ନିଃସନ୍ଦେହ ।

* * * * * * *



## ଶ୍ରୀନିବାସ ଆଚାର୍ଯ୍ୟ

ଜନ୍ମ : ତା୨୧.୧୧.୧୯୫୨
ପିତା : ୰ ନୀଳମଣି ଆଚାର୍ଯ୍ୟ
ମାତା : ୰ ହାରାମଣୀ ଦେବୀ
ଜନ୍ମସ୍ଥାନ : ସା/ପୋ-ରଟିଲୋ, ନିମାପଡ଼ା, ପୁରୀ

ଶ୍ରୀଯୁକ୍ତ ଆଚାର୍ଯ୍ୟ ଏକାଧାରାରେ ଜଣେ ସୁଲେଖକ, ସଂଗଠକ ଓ ସମାଜସେବକ । ସେ ପିଲାଦିନରୁ ଗ୍ରାମ୍ୟ ସଂଗଠନରେ ଜଣେ ସକ୍ରିୟ କର୍ମୀରୂପେ କାର୍ଯ୍ୟକରି କଳା, ସଂସ୍କୃତି, ଶିକ୍ଷା, ସ୍ୱାସ୍ଥ୍ୟ ଓ ପରିବେଶର ସର୍ବାଙ୍ଗୀନ ଉନ୍ନତି ପାଇଁ ମନ ପ୍ରାଣ ଉତ୍ସର୍ଗ କରିଥିଲେ । ସେ ଭୁବନେଶ୍ୱର ସ୍ଥିତ ଏକ ସରକାରୀ ହାଇସ୍କୁଲ୍‌ରେ ବୃତ୍ତିଗତ ଜୀବନରୁ ଅବସର ଗ୍ରହଣ କରିଛନ୍ତି । ବୃତ୍ତିରେ ସରକାରୀ ଚାକିରି, ପ୍ରବୃତ୍ତିରେ ଜଣେ ଅଦମ୍ୟ ଅନିସନ୍ଧିତ୍ସୁ ।

ଓଡ଼ିଶା ସରକାରଙ୍କ ମାସିକ ପତ୍ରିକା 'ଉତ୍କଳ ପ୍ରସଙ୍ଗ' ଓ ଅନ୍ୟାନ୍ୟ ପତ୍ରପତ୍ରିକାରେ ଧାରାବାହିକ ଭାବରେ ଓଡ଼ିଶାର ସହିଦ୍, ଶ୍ରୀଜଗନ୍ନାଥ ସଂସ୍କୃତି, ଦେବଦେବୀ, ମହାପୁରୁଷ, ସଂସ୍କାରକ ତଥା ସ୍ୱାଧୀନତା ସଂଗ୍ରାମୀମାନଙ୍କ ସମ୍ପର୍କରେ ତାଙ୍କ ଲେଖାମାନ ପ୍ରକାଶିତ ହୋଇ ପାଠକୀୟ ଶ୍ରଦ୍ଧା ଓ ଆଦର ଲାଭ କରିପାରିଛି । ନିମାପଡ଼ାର କଳା, ସଂସ୍କୃତି, ବରପୁତ୍ର, ସ୍ୱାଧୀନତା ସଂଗ୍ରାମୀ, କୃଷି ଓ ସ୍ୱାସ୍ଥ୍ୟକୁ ନେଇ ତାଙ୍କ ରଚିତ 'ନିମାପଡ଼ା ସୌରଭ' ନାମକ ପୁସ୍ତକ ଯଥେଷ୍ଟ ପାଠକୀୟ ସ୍ୱୀକୃତି ଲାଭ କରିଛି । ତାଙ୍କ ପ୍ରତିଭା ପାଇଁ ସେ ପାଇଛନ୍ତି ମା' ଚର୍ଚ୍ଚିକା ସମ୍ମାନ-୨୦୦୮, ଶିକ୍ଷାବିତ୍ ସମ୍ମାନ-୨୦୧୦, ବରିଷ୍ଠ ନାଗରିକ ସମ୍ମାନ-୨୦୧୩, ଉତ୍କଳ ପ୍ରତିଭା ସମ୍ମାନ-୨୦୧୪, ଶିଶୁସାଥୀ ସମ୍ମାନ-୨୦୧୫, ଅମ୍ଳାନ ପ୍ରତିଭା ସମ୍ମାନ-୨୦୧୭, ଦହିଜଙ୍ଗ ହାଇସ୍କୁଲ ନିମାପଡ଼ା ତରଫରୁ ପ୍ରତିଷ୍ଠାତା ସଦସ୍ୟ ସମ୍ମାନ-୨୦୧୭, ରାଧାକୃଷ୍ଣ ମନ୍ଦିର ଟ୍ରଷ୍ଟ ଓ ନୀଳମଣି ବେହେରା ଫାଉଣ୍ଡେସନ୍, ଶ୍ରୀମୁଖ, ନିମାପଡ଼ା ତରଫରୁ ସାହିତ୍ୟିକ ସମ୍ମାନ-୨୦୧୭ ଓ ନିମାପଡ଼ା ମହୋତ୍ସବ ତରଫରୁ 'ଜଗନ୍ନାଥ ରଥ' ସ୍ମାରକୀ ସମ୍ମାନ-୨୦୧୭ ପାଇଛନ୍ତି । ଏଥି ସହ ବିଭିନ୍ନ ଅନୁଷ୍ଠାନ ତରଫରୁ ସେ ପ୍ରଶଂସାପତ୍ର ପାଇଛନ୍ତି ।

କେବଳ ସାହିତ୍ୟ ସାଧକ ନୁହଁନ୍ତି, ଜଣେ ନିଷ୍ଠାପର ଜନସେବକ ରୂପେ ମଧ୍ୟ ସେ ସୁପରିଚିତ । ସଂପ୍ରତି ସେ ଭୁବନେଶ୍ୱରସ୍ଥିତ ଦୁର୍ଗାମାଧବ ନଗର, ଶ୍ୟାମପୁରଠାରେ ସପରିବାରେ ଅବସ୍ଥାପିତ । ଏହି ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତି ପାଇଁ ଜଣେ ସକ୍ରିୟ କର୍ମୀରୂପେ ସେ ନିଜର ଉଦ୍ୟମ ଜାରି ରଖିଛନ୍ତି ।

-ପ୍ରକାଶିକା